# ଗଳ୍ପ ଓ ଏକାଙ୍କିକା



କଲଚରାଲ ଏକାଡେମୀ
ପ୍ରକାଶିତ

ମୂଲ୍ୟ ୫ ୩୦୯

# ଗଳ୍ପ ଓ ଏକାଙ୍କିକା







କଲଚରାଲ ଏକାଡେମୀ
ପ୍ରକାଶିତ

ମୂଲ୍ୟ ଟ ୩୦୧

# ଗଳ୍ପ ଓ ଏକାଂକିକା

# Galpa O Ekankika

ପ୍ରକାଶକ :
**କଲଚରାଲ୍ ଏକାଡେ଼ମୀ**
ସେକ୍ଟର-୫,
ରାଉରକେଲା-୭୬୯୦୦୨

*Publishers :*
**Cultural Academy**
Sector - 5,
Rourkela - 769002

ପ୍ରଥମ ସଂକଳନ - ୧୯୯୩

First Edition - 1993

ମୁଦ୍ରଣ :
**ରାଇଟର୍ସ ୱାର୍କସପ୍**
ଉଦିତ୍‌ନଗର,
ରାଉରକେଲା-୭୬୯୦୧୨

*Printers :*
**Writer's Workshop**
Uditnagar,
Rourkela - 769012

ସଂପାଦନା :
**ଶ୍ରୀ ରଜନୀକାନ୍ତ ଦାସ**

*Editor :*
**Sri Rajani Kanta Das**

ମୂଲ୍ୟ ଟ ୩୦-୦୦

Price Rs. 30/-

# ॥ ସୂଚୀପତ୍ର ॥

## ଏକାଂଙ୍କିକା





କାହାଣୀ ।। ରଜନୀକାନ୍ତ ଦାସ

# ସରୀସୃପ

ଭାରତବର୍ଷର ସବୁ ଗୁଡ଼ାକ ଫରେଷ୍ଟ ଡାକବଂଗଳା ଭିତର ଓ ଦୃଶ୍ୟ ନୁହନ୍ତି,—ମଇଳା ଗନ୍ଧ କିଂବା ତେଲ-ଚିକଟା ପଲଙ୍କ ଓ ସୋଫାର ।

ସେଠାରେ ମଧ୍ୟ ରୋମାନ୍ସ ଅଛି । ପ୍ରେମ, ଅଭିସାର ଏବଂ ବିରହ ମିଳନର କାହାଣୀରେ ଭରପୂର । ଉତ୍ତାପ ଅଛି । ଝରଣା ରହିଛି । ଜ୍ୟୋତ୍ସ୍ନା ବି ଝରି ପଡ଼ୁଛି । ପୁଣି ରହିଛି କପଟାଗ୍ରଣୀଙ୍କ ହାରକାନ୍ତ ଏବଂ ପଶୁ ଶୀକାର । ସଫେଦଚନ୍ଦ୍ରମା ଏବଂ ଚନ୍ଦ୍ରନ ଫୁଲଙ୍କ ମହକରେ ନାଚୁଣୀ ମାନଙ୍କର ଘୁଂଘୁର ତାନ ବି ମିଶି ଯାଇଛି ।

ସହର ଭିତରେ ଜ୍ଞାନୀମାନୀ, କବି କୋବିଦ, ହାକିମ, ଶିଳ୍ପପତି, ତନ୍ତ୍ରୀ—ମନ୍ତ୍ରୀ, ଦେବ—ଗନ୍ଧର୍ବ—କିନ୍ନର ବିଦ୍ୟାଧର, ଶ୍ରେଷ୍ଠୀ ଏବଂ ଅଭିଜାତମାନେ ଯେଉଁ ଫରେଷ୍ଟପାର୍କ ଇଲାକାରେ ରହୁଛନ୍ତି, ତାର ଇତିହାସ ମଧ୍ୟ ସେହିପରି । ସେଠାରେ ଅଛି ଏକାଧାରରେ ପ୍ରେମ ଏବଂ ଶଠତା, ଅଭିସାର ଏବଂ ଗର୍ଭପାତ, ଜନ୍ତୁ ଓ ଫୁଲ, କାକଟସ ଏବଂ କଦଂବବୃକ୍ଷ ।

ପୋଷାହାଷ୍ଟର ରୋମାଂଚକର କାହାଣୀ ଭିତରେ ପ୍ରଜ୍ଜ୍ୱଳିତ ବହ୍ନିଶିଖା ପାଖରୁ କ୍ଷୁଦ୍ର ପତଙ୍ଗଟିକୁ ଉଦ୍ଧାର କରିବା ପାଇଁ ଯାହା କରୁ ଦାର୍ମିକତା ଥରଟିଏ ପ୍ରକାଶ ପାଇଥିଲା ସେ କଥାକୁ ବି କେହି ଭୁଲି ପାରିବେ ନାହିଁ । ପୁଣି ଭସାଭସା ସ୍ୱପ୍ନରାଜ୍ୟର ବାଦଲ ଭିତରେ ପହଁରୁ-ଛନ୍ତି ସାପ ଓ ସରୀସୃପମାନେ ।

କେଦାର ଥିଲେ ଯେଉଁଠି ଗୌରୀ ବି ସେଇଠି । ପୁଣି ଅଛନ୍ତି କୃଷ୍ଣା ଏବଂ ଫରେଷ୍ଟ କନ୍ତ୍ରରଭେଟର ପ୍ରଣବ ସାମନ୍ତରାୟ । ଅନାବଶ୍ୟକ ମାଛିଙ୍କ ଦାଉରୁ ରକ୍ଷାକରିବା ପାଇଁ ହସମୁଁହା ସିଷ୍ଟରମାନେ କଇଁଚ ଓ ତୁଷାଧରି ଠିଆ ହୋଇଛନ୍ତି । ସେତିକବେଳେ ବି ବୁଧଶିଆ ସାପ ଗୁଡ଼ାକ ପଲଙ୍କ ତଳକୁ ଖସି ପଡ଼ୁଛନ୍ତି ଅନେକ ଥର ।

କଏ ସେ କୃଷ୍ଣା ? କଏ ସେ ଦ୍ରୌପଦୀ ? କଏ ସେଇ ପାଠୋଇ ଯୁବତୀଗଣ ? କାହାର ଝିଅ, କାହାର ଭଉଣୀ ? ଫରେଷ୍ଟ ପାର୍କ ଏରିଆ ଭିତରେ ଝୀନବସନକୁ ଖସେଇ ଦେଇ ଆପେ ଆପେ ଉଲଗ୍ନ ହୋଇ ପଡ଼ୁଥିବା ଗୋଟିଏ ନୂଆ ଶତାବ୍ଦୀରେ କପଟାଗ୍ରସ୍ତ ଦୁର୍ଯୋଧନଙ୍କର ଅଭିବା ଲେଡ଼ା କ'ଣ, ଯେଉଁଠି ନକଲି ଦାନ୍ତ ଲଗେଇ ସାରିଥିବା ଧର୍ମରାଜ ଯୁଧିଷ୍ଠିର ବି ଦ୍ୟୂତ କ୍ରୀଡ଼ାରେ ମସ୍ତ ରହୁଛନ୍ତି ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ !

ଫରେଷ୍ଟ ପାର୍କ ଏରିଆ ମଝିରେ କୃଷ୍ଣାଙ୍କର ତ୍ରୈହଦୀ ବିଶାଳପ୍ସାତନ । ବଡ଼ବଡ଼ ସହର ଭିତରେ ବଗିଚା ଏବଂ ପାର୍କକୁ ଲାଗି ରହିଥିବା କଣାଶୁଣା ମହଲ ଗୁଡ଼ିକ ପରି ସେଇ ଘରର ବି ପ୍ରସିଦ୍ଧି ପୁରାତନ । ଶରୀରରେ ଇନ୍ଦ୍ରଧନୁଷର ରଂଗବିଭବ ଏବଂ କବିକଳ୍ପନାର ଆଲଙ୍କାରିକ ରୂପଛନ୍ଦରେ କୃଷ୍ଣାଥିଲା ଗୋଟିଏ ବିଉଟିଗାର୍ଲ ନିଜ କଲେଜ ସ୍ତରରେ କେବଳ ନୁହେଁ, ଆମ ସହର ମଧ୍ୟରେ ।

କୃଷ୍ଣା ଶରୀରର ମାନଚିତ୍ର ମଧ୍ୟରେ ଯାହା କିଛି ରହିଥିଲା ତାହା ଉଣା ଅଧିକେ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟର ଗୋଟାଏ ଗୋଟାଏ ନୂଆ ଇସ୍ତାହାର । ଏବଂ ସେଇଥି ଲାଗି ହୁଏତ ଅନେକ ଗୁଡ଼ାଏ ପତଙ୍ଗ ତା' ଉପରେ ଉଡ଼ୁଥିଲେ— ସରୀସୃପ ଗୁଡ଼ାକ ଆକର୍ଷିତ ହେଉଥିଲେ ।

କୃଷ୍ଣା ଏକୁଟିଆ ନୁହେଁ, ଏଇ ଶତାବ୍ଦୀର ଆଧୁନିକ ଯୁବତୀମାନେ ପାର୍କ ଏବଂ ବିପଣୀକୁ ବାହାରି ପଡ଼ିଲେ ଅନେକ ଗୁଡାଏ ସୌନ୍ଦର୍ଯ୍ୟଲେଖା ବନ୍ୟ ଛିଂଚୁଣ ଉଡ଼ିଲା ଭଳି ଲାଗନ୍ତି । ସମସ୍ତଙ୍କର ଦୃଷ୍ଟି ବହୁଳ ଆଖିଡୋଳା ସେମାନଙ୍କ ଉପରେ ଘୂରି ବୁଲୁଥାଏ ଏବଂ ଅନେକ ମହୁମାଛି କାହିଁ କୁଆଡ଼ୁ ଉଡ଼ି ଆସନ୍ତି ।

ଆଧୁନିକ ଶତାବ୍ଦୀରେ କୃଷ୍ଣା ଏକାକିନୀ ନହେଲେ ବି ସେ ଅନନ୍ୟା । ଯେତେବେଳକୁ ଯୁବତୀମାନଙ୍କର ସ୍ୱପ୍ନ ଦେଖିବା ପାଇଁ ସ୍ୱଚ୍ଛ ହ୍ରଦ ଏବଂ ଝରଣାର ପାଣିକୁ ଫିଟକିରି ମିଶାଇ ସଫା କରାଯାଉଥିଲା ଏବଂ ଭିଂଗାକାନ୍ଥ ଗୁଡ଼ାକୁ ସହର ଭିତରୁ ନିଶ୍ଚିହ୍ନ ହୋଇ ଯାଇଥିଲେ ଏକାବେଳେକେ, ସେତିକି ବେଳକୁ ନିଜ ଶତାବ୍ଦୀ ପାଖରେ ଅନ୍ୟମାନଙ୍କୁ ଧାରୁଆ କରିଦେଇ କୃଷ୍ଣା ଦେଖୁଥିଲା ନୂଆ ନୂଆ ସ୍ୱପ୍ନ ଆଧୁନିକ ଆଭିଜାତ୍ୟର ।

ସ୍ୱପ୍ନ ରାଜ୍ୟରେ ଆତ୍ମହରା ହୁଅନ୍ତି ଯୁବତୀମାନେ । ସ୍ୱପ୍ନ ରାଜ୍ୟରେ ଯୁବକ ଯୁବତୀ ଭେଟାଭେଟି ହୁଅନ୍ତି ଆକସ୍ମିକ ଏବଂ ଅପ୍ରତ୍ୟାଶିତ । ସ୍ୱପ୍ନରେ ହସଖୁସି ଗୁଲେ ଏବଂ ବିରହରେ କାନ୍ଦି କାନ୍ଦି ସ୍ୱପ୍ନଟି ସରିଯାଏ ।

କୃଷ୍ଣାର ଶତାବ୍ଦୀ ଭିତରେ ଏ'ତ କିଛି ନୂଆକଥା ନୁହେଁ ଯେ ଅର୍ଦ୍ଧରାତ୍ର ବେଳକୁ ଗାଢ଼ ନିଦ୍ରାରେ ମୂର୍ଚ୍ଛିତା ଯୁବତୀମାନଙ୍କ ଶେଯ ଉପରେ ଉତ୍ପୀନ

ଟାଣେନ୍ତି ବିଛଣା ଭିତରୁ ସାପମାନେ ବାହାରି ଆସି । ପିଲାଦିନର ମିଛିମିଛିକିଆ ଖେଳ ଭଳିଆ ଦେହକୁ ସଳସଳ ଲାଗେ । ସେ ଯେମିତି ଗୋଟାଏ ମହୁଜିଆ ଖେଳ ଭିତରେ ମଜ୍ଜି ରହିଯାଏ ।

କେବେ ବି କାହିଁକି ସାପଟାକୁ ଫିଙ୍ଗିଦେଇ ନଥିଲା କୃଷ୍ଣା ନିଜର ଶେଯ ପାଖରୁ । ଶରୀରର ମାନଚିତ୍ର ଉପରକୁ ସରୀସୃପ ଚଢ଼ୁଥିଲା ଏବଂ ଖସି ଯାଉଥିଲା । କୃଷ୍ଣା ନିଜର ଲୁଗାପଟା ଝାଡ଼ିଦେଇ ବାଡ଼ିଖଣ୍ଡେ ଧରି ଦମ୍ଭରେ ଠିଆ ହୋଇ ପାରୁନଥିଲା କେତେବେଳେ ବି । ଏହାରି ଭିତରେ ତା' ନିଜ ପାଇଁ ଶତାବ୍ଦୀର ଏକ ଚତୁର୍ଥାଂଶ ଶେଷ ହୋଇ ଗଲା । ସାପ ଗୁଡ଼ାକ ଉଡ଼ୁଥିଲେ ଏବଂ ଘୁରୁଥିଲେ ମେଘ ଭିତରେ ।

ସାପମାନେ ଥିଲେ ସ୍ତନ୍ୟପାୟୀ । ନାରୀର ବକ୍ଷରୁ କ୍ଷୀରପାନ କରୁଥିବା ସାପମାନେ ବିଷଧର ନୁହନ୍ତି । ସେମାନେ ଗୋଟାଏ ପ୍ରକାର ମାଇଚିଆ ଏବଂ ଅଲାଜୁକ ହେଲେ ବି ସୌଖୀନ ପ୍ରାଣୀ ଜଗତରେ ସେମାନଙ୍କୁ କୁହାଯାଏ ରେଶମୀ ସାପ !!

ସେମାନେ ରହନ୍ତି ତକିଆ ଖୋଳ ଭିତରେ । ଲୁଚି ଯାଆନ୍ତି ବିଛଣା ଗୁଦୁରିର ଭଙ୍ଗ ମଧ୍ୟରେ । ଖଟପଲଙ୍କ ସନ୍ଧିରେ ଲଟକି ରହନ୍ତି ।

କୃଷ୍ଣା ଦେଖିଲା ଗୋଟାଏ ସ୍ୱପ୍ନ । ଲନ୍ ପାଖ କଦମ୍ବ ଗଛରେ ଫୁଲ ଫୁଟିଛି । ଝିଅଟାଏ ହାତ ବଢ଼ାଇ ଫୁଲ ତୋଳୁଥିଲା । ସାପଟି ଚଢ଼ିଗଲା ଅଂଚଳ ଉପରେ । ଯୁବତୀ ଜଣକ ଚିତ୍ର ପ୍ରତିମାପରି ଠିଆ ହୋଇଥିଲା ।

କୃଷ୍ଣ ଦେଖୁଥିଲା ସ୍ୱପ୍ନରେ ଯେ ସାପର ଗରଳ ବୋଳି ହୋଇ ଯାଇଛି ଯୁବତୀର ଓଠରେ । ତଥାପି ତାହାର ଉଦ୍‌ବେଗ ନଥିଲା । କୌଣସି ପ୍ରକାର ପ୍ରତିକ୍ରିୟା ଜଣାଗଲା ନାହିଁ । ତାହାପରେ ସାପଟି ଗୁଡ଼ାଇ ହୋଇଗଲା ଉଦ୍ୟାନର ଲତା ସାଥିରେ ।

କୃଷ୍ଣାର ଆଖିରେ ଜମି ରହିଥିଲା ନିଦର କୁହୁକ ଏବଂ ସେଇ କାରଣରୁ ସେ ଦୃଶ୍ୟଟିକୁ ଭଲରୂପେ ନିରେଖି ପାରୁନଥିଲା । ଅବଚେତନ ମନଭିତରେ କେଜାଣି କେମିତି ଗୋଟାଏ ପ୍ରକାର ଝଡ ସୃଷ୍ଟି ହୋଇଥିଲା ପ୍ରଥମ ଥର । ବାଡ଼ିଖଣ୍ଡେ ଉଠାଇଥିଲା ପାହରଟିଏ ପିଟି ଦେବାକୁ । କିଛି ବି କରି ପାରିଲା ନାହିଁ । ସାପଟି ଖସି ପଡ଼ିଲା ଶେଯ ଉପରୁ ।

ଏତିକି ବେଳେ ନିଦ ଭାଙ୍ଗିଗଲା । ସଂଗୀନୀମାନେ ପରିହାସରେ କହିଲେ ଯେ ଅନାବଶ୍ୟକ ମାତୃତ୍ୱର ଉଦୟ ପୂର୍ବରୁ ଏମିତି ସବୁ ଉଦ୍ଭଟ ସ୍ୱପ୍ନ ଦେଖାଯାଏ । ଅନେକ ପ୍ରକାର ଆଶଙ୍କା ଗ୍ରନ୍ଥି ଉପରେ ବଜ୍ରସୂଚୀ ଭଳିଆ ବିନ୍ଧି ପକାଏ ।

ଚମକି ପଡ଼ିଲା କୃଷ୍ଣା । କଦମ୍ବ ଗଛରେ ଫୁଲ ଗୁଡ଼ାକ ଭଲଭାବେ ଫୁଟି ନଥିଲା । ଜୀବନଟାକୁ ଏକୁଟିଆ ଉପଭୋଗ କରିବା ଲାଗି ଆଉରି ଅନେକ ସମୟ ବାକି ରହିଛି । ଗୋଲୁ ଗୁହାଳ ଭିତରେ ଲୁଚି ରହିଥିବା ସ୍ତନ୍ୟପାୟୀ ସାପଟି ଘର ଭିତରକୁ ଚମକି ଆସିଲା କିପରି ?

ମମି ବାରଂବାର ସତର୍କ କରି କହୁଥିଲେ ଯେ ଯୌବନ ଗୋଟାଏ କୁମ୍ଭୀରିଆ ନଦୀ । ସେ ପାଖରେ ପ୍ରେମିକ ବସିଛନ୍ତି ଏବଂ ଏପାଖରେ ତମେ ଥିବୁ । ପୂର୍ବକାଳରେ କାମିନୀମାନେ ମନ୍ତ୍ର ଶିଖିଥିଲେ କୁଆଁରିଆ ନଦୀ ସ୍ରୋତକୁ ପାରି ହେବା ନିମନ୍ତେ । ଦେହ ଉପରେ ହରିଦ୍ରା ଲେପନକରି ନଦୀ ପାରି ହେଲାବେଳେ କୁମ୍ଭୀର ଓ ମଗର ମାନେ ଆଡ଼େଇ ହୋଇ ଯାଉଥିଲେ । ଆଜିକାଲି ହରିଦ୍ରା ବଦଳରେ ପାଉଡର ଏବଂ କ୍ରିମର ବହୁଳ ପ୍ରଲେପ ବୋଳି ହେଉଛନ୍ତି କାମିନୀଗଣ ଯୌବନର କୁମ୍ଭୀରିଆ ନଦୀସ୍ରୋତକୁ ପାରିହେବା ନିମନ୍ତେ ।

କୃଷ୍ଣା ଖୋଲି ବସିଲା ଆଲବମ୍ ନିଜ ପାଖରେ ଥିବା ଫଟୋ ବନସ୍ତର ଦୁର୍ଜୟ ବୀରମାନଙ୍କୁ ଖୋଜିବା ନିମନ୍ତେ । ସେଠାରେ ଥିଲେ କାର୍ତ୍ତିକ, କାର୍ତ୍ତବୀର୍ଯ୍ୟ, ଦ୍ୱିତୀୟ ଅର୍ଜୁନ ସାତ୍ୟକୀ, କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ଏବଂ ଅନ୍ୟାନ୍ୟ ଯୋଦ୍ଧାଗଣ ।

ବାପାଙ୍କ ମନଲାଖି ସବୁ ନୂଆ ନୂଆ ଆଇ. ଏ. ଏସ୍. ଯୁବକମାନଙ୍କର ଫଟୋସବୁ ସାଇତା ହୋଇ ରହିଥିଲା । କାହାର କେମିତି ଏନଗେଜମେଣ୍ଟ ପକ୍କା ହୋଇଗଲେ ବି ଫଟୋ ସବୁ ରଖାଯାଇଛି । ଅନେକ ଦରକାରୀ ଫଟୋ ପ୍ରତି ଏବେ ବି ଆସକ୍ତି ପୂର୍ବବତ ।

ମମିଙ୍କର ବସ୍ତୁର ଥିଲା ଭିନ୍ନ ପ୍ରକାର । ସ୍ୱରୁଣା ଡ଼. ଏସ୍. ପିଙ୍କ ଝିଅ ଭାବରେ ସେ ଖୋଜୁଥିଲେ ଆଇ. ପି. ଏସ୍. ଜାମାତାଙ୍କୁ । ତାରି ଭିତରେ ଆଲାଏଡ଼ ସର୍ଭିସ, ବ୍ୟାଙ୍କ ମ୍ୟାନେଜର, ଯନ୍ତ୍ରୀ ଏବଂ ଡ଼ାକ୍ତରଙ୍କ ଠାରୁ ଫରେଷ୍ଟ କନ୍ଜରଭେଟର ପର୍ଯ୍ୟନ୍ତ ଅନେକ ଗୁଡ଼ାଏ ଅବିବାହିତ ଏବଂ ସଦ୍ୟ ବିବାହିତ ଯୁବକଙ୍କର ଫଟୋ ସାଇତା ହୋଇ ରହିଥିଲା ଆଲବମ ଭିତରେ ।

ଅନେକ ଗୁଡ଼ାଏ ସ୍ମୃତି ଏବଂ ଆବେଗକୁ ବର୍ଷ ବର୍ଷଧରି ସାଇତି ରଖିଥିବା ଆଲବମ ଭିତରୁ ବାହାରି ପଡ଼ିଲା ପ୍ରଣବର ଛବି ଖଣ୍ଡିକ ହଠାତ୍ କେମିତି । କୃଷ୍ଣାବି ଚାହିଁଥିଲା ପ୍ରଣବକୁ । ନିଜ ଦେହଉପରେ ଉତୁରି ପଡ଼ୁଥିଲା ଅମାନିଆ ଯୌବନର ଜ୍ୱାଳା । ମନ ଭିତରେ ଅନେକ ସ୍ମୃତିର ସଂକ୍ରମଣ । ସତେ ଯେମିତି ଚକଚକିଆ ବ୍ଲାକବୋର୍ଡ ଉପରେ ଅନେକ ନାମ ଲେଖାହୋଇ ଡଷ୍ଟର ଘସି ସଫା କରାଗଲେ ବି କିଛି କିଛି ଚିହ୍ନ ଲିଭି ନଥାଏ । ଆଲବମ

ଭିତରେ ସାଇତା ହୋଇଥିବା ହବୁଛବି ପ୍ରଣବର ନହେଲେବି ମନ ଭିତରର ଅନେକ ଛବିକୁ ଆଜି ହଠାତ୍ କେମିତି ଗୋଟାଏ ମାତ୍ର ଛବି ଆକୃଷ୍ଟ କରି ଦେଇଛି ।

ଅନେକ ଦିନରୁ ପ୍ରଣବ ସହିତ ଦେଖା ହୋଇ ନାହିଁ । ଗାଢ ସବୁଜ ରଂଗର ପୋଷାକ ପିନ୍ଧିଛନ୍ତି ଫରେଷ୍ଟ ବିଭାଗର କନ୍ଜରଭେଟର । ହାତୀ ପିଠିରେ ଶୀକାର ଖେଳି ଯାଉଥିଲାବେଳେ ପାଣି ମୁହାଁ ଝରର ଇନ୍ଦ୍ରଧନୁପରି ଦେଖାଯାଉଛନ୍ତି । କୃଷ୍ଣାର ମନ ଭିତରେ ଗୋଟାଏ ପ୍ରକାର ଆରଣ୍ୟକ ଅସ୍ତ୍ର କେମିତି କେଜାଣି ପ୍ରଣବର ଦେହ ଗନ୍ଧରେ ତାକୁ ସେତେବେଳେ ଆକୃଷ୍ଟ କରି ଦେଇଥିଲା । ଜୈବିକ ବସ୍ତୁରେ ଧାରଣ ହୋଇଥିବା ପ୍ରଣବର ଫଟୋକୁ ଥରେ ଚୁମ୍ବନ କରି ସେ ତାହା ପୁଣି ଥରେ ସାଇତି ରଖିଲା ପ୍ରଥମ ଖୋପ ଭିତରେ ।

କୃଷ୍ଣା ଖୋଜିଥିଲା ପ୍ରଣବକୁ ଯାହାର ଅନେକ ଖିଆଲ ଏବଂ ଖିଟିମିଟିକୁ ସେ ଏକଦା ତୁଳନା କରୁଥିଲା କୌଣସି କୌଣସି ଦୁରଭ୍ୟାସ ସାଥିରେ । ତଥାପି ସେ'ତ ଅନେକ ଥର ତାହାର ଶରୀରକୁ ଭଲ ପାଇଛି । ପ୍ରଣବର ପୁରୁଣା ସ୍ମୃତି ଗୁଡାକ ମନଭିତରେ ଜୀବନ୍ତତର ହୋଇ ଯାଉଥିଲା ଭଲ ପାଇବାର ଆବେଗ ମଧ୍ୟରେ ।

ପଶୁପକ୍ଷୀ ଏବଂ ବଣ ଜଙ୍ଗଲର ଆକର୍ଷଣ ମଧ୍ୟରେ ଯୁବକ ପ୍ରଣବ ତନ୍ମୟ ହୋଇ ରହୁଥିଲା ଅନେକ ଦିନରୁ । ମଣିଷ ଅପେକ୍ଷା ଜୀବଜନ୍ତୁ ତାହାର ପ୍ରିୟତମ । ସେଇ କାରଣରୁ ଜୀବନର ଗତିପଥକୁ ବଦଳାଇ ଦେଇଥିଲା ଦୋଛକ ମୋଡ ଉପରେ ।

ପ୍ରଣବ ପାଖକୁ କୃଷ୍ଣା ଚିଠି ଲେଖିଚି ଅନେକ ଦିନପରେ । ସେ ସେତେ-ବେଳକୁ ଫରେଷ୍ଟ ବିଭାଗର କନ୍ଜରଭେଟର ଭାବେ ବିପୁଳ ବନାନୀର ଅଧିକାରୀ । ପ୍ରଣବ ପହଂଚିଗଲା ହାତୀ ପିଠିରେ ବସି ଫରେଷ୍ଟ ପାର୍କର ବଂଗଳା ପାଖରେ । ମା ଯାହାକୁ କହୁଥିଲେ କହ୍ନୀରଆ ନଦୀ ତାହାକୁ ହିଁ ପହଁରି ଆସିଥିଲା ବନସ୍ତର ଦନ୍ତାହାତୀ ।

କଦମ୍ବ ଗଛ ମୂଳେ ପୋଷାହାତୀଟି ଆଣ୍ଠେଇ ପଡ଼ିଲା ବେଳେ ଦୌଲତ-ପୂର୍ଣ୍ଣ ଆଭିଜାତ୍ୟର ପୁରୁଣା ଜୁଲୁସ ସତେ ଯେମିତି କୃଷ୍ଣା ମା'ଙ୍କର ସ୍ମୃତି କୋଷ ଭିତରୁ ଚହଲି ପଡ଼ୁଥିଲା ଏବଂ ଯୁବତୀ କୃଷ୍ଣାର ନିଜ ଆଖିକୁ ମୋହାଭିଭୂତ କରି ଦେଇଥିଲା କାମନାର ଇନ୍ଦ୍ରଧନୁଷ । କଦମ୍ବ ଗଛର ଶାଖା ଉପରୁ ସତେ ଯେମିତି ଓହ୍ଲାଇ ଆସିଲେ ସ୍ଵପ୍ନର ରାଜକୁମାର ।

ତାଙ୍କର ଟୋପି ଉପରେ ଅନେକ ଫୁଲ ପାଖୁଡ଼ା ଝରି ପଡ଼ୁଥାଏ । କୃଷ୍ଣା ହାତ ବଢ଼ାଇ ସ୍ୱାଗତ କରି ଆଣିଥିଲା ଏବଂ ମମି ମଧ୍ୟ କୋଳକୁ ନେଇ କୁଣ୍ଢାଇ ପକାଇଥିଲେ ଅନେକ ଦିନର ଉଚ୍ଛୁଳା ସ୍ମୃତିକୁ ।

କୃଷ୍ଣା ପ୍ରଣବକୁ ପରିହାସରେ କହିଲା- "ଫରେଷ୍ଟପାର୍କ ଏଣିକି ଶୀକାର ଖେଳିବା ବନସ୍ତ ନୁହେଁ ସାହେବ ! ଏଠି ତମ ପାଇଁ ସାପ ଓ ସରୀସୃପଙ୍କ ଡର ନଥିଲା । ହାତୀ ଚଢ଼ି ଆସିଲ କାହିଁକି ?"

ପ୍ରଣବ ହସିଲା ତା ମୁହଁକୁ ଚାହିଁ । ସେ ହସ ଭିତରେ ଥିଲା ଗୋଟାଏ ପ୍ରକାର ସଂଯମର ଆଭିଜାତ୍ୟ । ବଡ଼ ବଡ଼ ଅଫିସରମାନେ ଶିଖିଥିବା ଖାନଦାନୀଗତ ଅଭ୍ୟାସ ମଧ୍ୟରେ ପ୍ରଣବ ସବୁଠାରେ ଯେତିକି ହସିଥାଏ, ଏ ହସ ମଧ୍ୟ ସେତିକି ପ୍ରାପ୍ୟ । ତା'ର ଭିତରେ ସତେଅବା ଫୁଟି ପଡ଼ୁଥିଲା ଆତ୍ମୀୟତାର ସଂକ୍ରମଣ କୃଷ୍ଣା ନିମନ୍ତେ କେଉଁଠି ଚେନାଏ ପ୍ରଚ୍ଛନ୍ନ ଭାବେ ।

ଫରେଷ୍ଟ ବିଭାଗର ଶୀର୍ଷ ଅଫିସର ପଦବୀରେ ଯୁବକବନ୍ଧୁ ପ୍ରଣବ ସାମନ୍ତରାୟଙ୍କୁ ନିଜ ଘରକୁ ନିମନ୍ତ୍ରଣ କରି ଆଣିଥିଲା କୃଷ୍ଣା ଏଇ ମାତ୍ର ପ୍ରଥମଥର । ତାହା ପୂର୍ବରୁ ଫୋର୍ଥଇୟର ପର୍ଯ୍ୟନ୍ତ ସେମାନେ ଥିଲେ ସହପାଠୀ । ପ୍ରଣବ ଯେତେଥର ଆସୁଥିଲା ସବୁଥର ତା ମୁହଁରୁ ଜୀବଜନ୍ତୁଙ୍କର କାହାଣୀ ଶୁଣାଯାଏ । ହତା ଭିତରେ ବୁଲି ବୁଲି ଗଛ ଗୁଡ଼ାକର ଚେହେରା ପରୀକ୍ଷା କରିବା ବେଳେ ଅନେକ ସମୟ ବିତି ଯାଉଥିଲା ।

କୃଷ୍ଣାର ମନ ଭିତରେ ପୁରୁଣା ଅନୁଭୂତ ସବୁ ନାଚ ଉଠିଲା । ସେଇଥିଲାଗି ସେଦିନ ସେ ନିଜର ବୈଠକ ଖାନାକୁ ସଜାଇଥିଲା ଅପରୂପ ଭଙ୍ଗୀରେ । ଘରର ଚତୁର୍ଦ୍ଦିଗରେ ବହୁଳ ଫୁଲ ପତ୍ରର ମୋଟାମୋଟା ଗାଲିଚ୍ଚ ଗୁଡ଼ାକ ବିଛେଇ ଦିଆଯାଇଥିଲା । ଆସବାବ ପତ୍ରଗୁଡ଼ାକ ସତେ ଯେମିତି ଗୋଟାଏ ପ୍ରକାର କୃତ୍ରିମ ଉଦ୍ୟାନ ମଧ୍ୟରେ ସଜା ହୋଇଥିଲେ ।

ସବୁଜ ରଙ୍ଗର ଝାପସା ବିଜୁଳି ଆଲୁଅରେ ପ୍ରଣବ ପିନ୍ଧିଥିବା ପୋଷାକ ଗୁଡ଼ାକ ଦିଶୁଥିଲା ଆହୁରି ଘୂମନ୍ତ ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ । କୃଷ୍ଣାର ମନ ଭିତରେ ବି ସାମାନ୍ୟ ଟିକିଏ ଆଘାତ ଲାଗିଥିଲା ବନ୍ଧୁ, ପ୍ରଣବର ହାକିମି ମିଜାଜକୁ ଅନୁଭବ କରି ।

ବହୁତ ବର୍ଷପରେ ପ୍ରଣବକୁ ଭେଟିଛି କୃଷ୍ଣା ପ୍ରଥମଥର । ସେ ଯେ ତାକୁ ମନେ ରଖିଛି, ଏଥିରେ କୃଷ୍ଣା ଆପ୍ୟାୟିତ । ନିଜ ଦେହର ସମସ୍ତ ଅବୟବରେ ଭରି ଯୌବନର ସଂକ୍ରମଣ । ତରଙ୍ଗାୟିତ ହେଉଥିଲା ଆଖିର ଚାହାଣୀ । ଶରୀର ଭିତରେ ସତେ ଯେମିତି ଗୋଟାଏ ପ୍ରକାର ଆରଣ୍ୟକ ଜ୍ୱାଳା ଉତୁରି ଉଠୁଥିଲା ପ୍ରତ୍ୟକ୍ଷ ଭାବେ ।

କିନ୍ତୁ ବନ ବିଭାଗର ଉଚ୍ଚ ଅଫିସରଭାବେ ହେଉ କିମ୍ବା ନିଜ ଜୀବନର ସ୍ୱାଭାବିକ ଅଭିରୁଚି ମଧ୍ୟରେ ପ୍ରଣବ ସାମନ୍ତରାୟଙ୍କୁ ଦେଖିଲେ ମନେହେଉ-ଥିଲା ଯେ ସେ ସତେଯେମିତି ସଂପୂର୍ଣ ଭାବେ ନିର୍ବିକାର ଏବଂ ଆବେଗ ଶୂନ୍ୟ ପୁରୁଷଟିଏ । କୃଷ୍ଣା ମନର ଆଲୋଡ଼ନକୁ ଲକ୍ଷ୍ୟକରି ପାରୁଥିଲେ କି ନାହିଁ ଅଥବା ଲକ୍ଷ୍ୟ କରିକରି ସତର୍କ ହୋଇ ଯାଉଥିଲେ ତାହା ମଧ୍ୟ ସ୍ପଷ୍ଟରୂପେ ଜଣା ପଡୁନଥିଲା । ପ୍ରଜ୍ୱଳିତ ବହ୍ନି ପାଖରେ ଗୋଟାଏ ପ୍ରକାର ଗୋଟଛିଡ଼ା ପତଙ୍ଗ ଭଳିଆ ହୁଏତ ସେ ଯେମିତି ଦୂରକୁ ଡେଇଁ ପଡ଼ୁଥିଲେ ଲକ୍ଷ୍ୟ ଭ୍ରଷ୍ଟ ଭାବେ ।

ପ୍ରସଙ୍ଗ ବଦଳାଇ ପ୍ରଣବ କହିଲେ—"ଚାଲ ଏବେ ଚଢ଼ଇଖାନା ଅଡେ ବୁଲି ଆସିବା !"

କୃଷ୍ଣାର ମନଥିଲା ପ୍ରଣବଙ୍କୁ ଅନୁରୋଧ କରିବାକୁ ପୋଷାକପତ୍ର ବଦଳାଇବା ନିମନ୍ତେ । ସେ ତାହା ସହିତ ଆନ୍ତରିକ ଭାବେ ଘରୋଇ ବାତା-ବରଣ ମଧ୍ୟରେ କଥାଭାଷା ଏବଂ ହସଖୁସି ହେବାପାଇଁ ଜଙ୍ଗଲ ବିଭାଗର ପୋଷାକ ଗୁଡ଼ାକ ବଦଳାଇ ପକାଇବା ଦରକାର । ବାପାଙ୍କ ଟ୍ରଂକ ଭିତରୁ ନୂଆ ଯୋଡ଼ିଟିଏ କାଢ଼ି ଆଣିଲେ ପ୍ରଣବ ତାହାକୁ ଦେହ ଉପରେ ବେଢାଇ ପକାଇ ବିଶ୍ରାମ କରି ପାରିବ । କୃଷ୍ଣା ନିଜର ବେଡରୁମ ଭିତରେ ପ୍ରଣବ ସହିତ ଏକାନ୍ତ ନିର୍ଜନରେ କଥାବାର୍ତ୍ତା ହେବାଲାଗି ଅନେକ ପ୍ରକାର ବାହାନା କରୁଥିଲା ।

କେବଳ ମାତ୍ର ବୈଠକଖାନା ଭିତରୁ ପ୍ରଣବ ଫେରିଯିବ କେମିତି ? ଯାହା ହେଲେ ବି ଅନେକ ଦିନପରେ ପାଖରେ ପାଇଥିବା ବନ୍ଧୁଙ୍କୁ ହାତଛଡ଼ା କରିବା ପାଇଁ ସେ କଦାପି ପ୍ରସ୍ତୁତ ନଥିଲା ।

ଇଚ୍ଛାକୃତ ଭାବେ ନହେଲେ ବି କୃଷ୍ଣା ସେତେବେଳକୁ ଗ୍ରହଣ କରି ସାରିଥିଲା ପ୍ରଣବର ପ୍ରସ୍ତାବକୁ ଚଢ଼ଇଖାନା ଆଡ଼େ ବୁଲିଯିବା ନିମନ୍ତେ । ଏଇ ମାତ୍ର ପାଞ୍ଚଟା ବାଜିଛି । ଯାହା ହେଲେ ବି ସେମାନେ ଦୁହେଁ ସଂଧ୍ୟାବେଳକୁ ଫେରି ଆସିବେ । ପ୍ରଣବକୁ ଡ଼ିନର ନଖୁଆଇ ମମି କଦାପି ଛାଡ଼ି ଦେବେ ନାହିଁ ।

ପ୍ରଣବ ଶୁଣାଉଥିଲା ଦୁଃସାହସିକ କାହାଣୀ ଗୁଡ଼ିକ ନିଜ ଜୀବନ କାଳର । ଫୁଲବାଣୀ ଜଂଗଲରୁ ଧରା ହୋଇ ଆସିଥିଲେ ସଂପୂର୍ଣ ଗୋଟାଏ ମହାବଳ ବାଘର ପରିବାର ଅନେକ କୌଶଳରେ ଜନ୍ତା ଭିତରେ । ସଦ୍ୟ ଧରା ହୋଇ ଆସିଥିବା ପଶୁ ଗୁଡ଼ିକର ଆବରଣ ବଦଳି ନଥାଏ । ଜନ୍ତା ଭିତରେ ସେମାନେ

ନିଜ ଆଡ଼ୁ ଘୋର ପ୍ରତିବାଦ କରି ଥରେ ଥରେ ଚିଡ଼ିଆଖାନାକୁ ଅଣାଇ ଦେଉଥିଲେ ।

ଯେମିତି ପରିବେଶ ହେଲେ ବି ପ୍ରଣବ ସହିତ ଅଧିକରୁ ଅଧିକ ସମୟ ରହିବା ପାଇଁ କୃଷ୍ଣାର ମନ ଭିତରେ ଅଦମ୍ୟ ଲାଳସା ବଳବତ୍ତର । ହାତୀ ଉପରେ ଏକାଠି ଗଲାବେଳେ ଦେହକୁ ଦେହ ଲାଗି ଅନେକ ପ୍ରକାର ଆନନ୍ଦ ମିଳିବ । ଫରେଷ୍ଟ କନ୍ଜରଭେଟରଙ୍କ ପୋଷାକ ସହିତ ମିଶିଯିବା ପାଇଁ ସେ ବାହାରକଲା ଗ୍ରୁପିଗ୍ରୁପିକିଆ ସବୁଜଶାଢ଼ୀ । ମେକଅପ-ରୁମ୍ ଭିତରୁ ବାହାରି ଆସିଲା ବେଳେ ମା' ସେଠାରେ ଜଳଖିଆ ପର୍ବର ଆୟୋଜନ ଆରମ୍ଭ କରି ସାରିଛନ୍ତି ।

"ସୁଗର ଅର ନୋ' ସୁଗର ?" କୃଷ୍ଣା ପଚାରିଲା ପ୍ରଣବକୁ ପରିହାସରେ ।

"ହ୍ୱାଇଟ" କହି ପ୍ରଣବ ହସିଲା । ସେତେବେଳକୁ ତାହାର ବ୍ୟବହାର କିଛିଟା ସ୍ୱାଭାବିକ ହୋଇ ଯାଇଛି । ସଂପୂର୍ଣ୍ଣ ହସ ଭିତରେ ବର୍ତ୍ତୁଳାକାର ମୁହଁଟା ଅନେକ ସୁନ୍ଦର ଅନେକ ଲୋଭନୀୟ । ବୋଧହୁଏ ମମିଙ୍କ ସହିତ କଥାବାର୍ତ୍ତା ହେଲାବେଳେ ପ୍ରଣବର ବ୍ୟବହାର ବଦଳି ଯାଇଚି ।

ତାହାପରେ ସେମାନେ ଘର ଭିତରୁ ବାହାରି ଆସିଲେ କଦମ୍ବ ମୂଳକୁ । ମାହୁନ୍ତର ଆଦେଶରେ ହାତୀଟି ଆଣ୍ଠେଇ ପଡ଼ିଲା ଗଛ ତଳରେ । କିନ୍ତୁ ସବୁଦିନର ଅଭ୍ୟସ୍ତ ରୀତିରେ କନ୍ଜରଭେଟର ସାହେବ ଗଦି ଉପରେ ବସିଯିବା ମାତ୍ରେ ଆଖିପିଛୁଳାକ ଭିତରେ ଠିଆ ହୋଇଗଲା ପୋଷା ହାତୀଟି । କୃଷ୍ଣା ରହିଥିଲା ଧରଣୀ ଉପରେ । ତାହାର ହାତକୁ ଧରି ଉପରକୁ ଉଠାଇ ଆଣିବା ନିମନ୍ତେ ପ୍ରଣବ ଚାହୁଁଥିଲାବେଳେ ହାତୀଟି ପ୍ରକୃତରେ କଦମ୍ବ ଗଛର ଫୁଲ ଡାଳ ପାଖରେ ଲାଗି ଯାଇଥିଲା ଅତର୍କିତ ଭାବେ ।

ସଂଗେ ସଂଗେ ଶୁଣ୍ଢ ଉପରକୁ ଟେକି ଗର୍ଜନ ଛାଡ଼ିଲା ପୋଷାହାତୀ । ମାହୁନ୍ତର ଆଦେଶ ନଶୁଣିଲା ଭଳି ଆଗେଇ ଯାଇଥିଲା କେତେ ପାହୁଣ୍ଡ ।

କୃଷ୍ଣା ତଳେ ଠିଆ ହୋଇ ବିସ୍ମିତ ବିହ୍ୱଳ ଦୃଷ୍ଟିରେ ପ୍ରଣବକୁ ଚାହିଁ ଥାଏ । ପ୍ରଣବ ମଧ୍ୟ ପଛକୁ ଫେରି ଚାହିଁଥିଲା କୃଷ୍ଣା ଆଡକୁ । ଗୃହପାଳିତ ପଶୁଟି ସେଦିନ କାହିଁକି କେଜାଣି କୌଣସି ପ୍ରକାର ସଂକେତ ମାନିଲା ନାହିଁ ପ୍ରଣବ ଏବଂ ମାହୁନ୍ତ ଉଭୟଙ୍କର ଚେଷ୍ଟା ସତ୍ତ୍ୱେ ବି । ହାତୀର ବେକରଶି ପାଖରେ ଅନେକ ଥର ବୁଟ କୋଡାକୁ କଚୁଡ଼ି କଚୁଡ଼ି ପ୍ରଣବ ଅତ୍ୟନ୍ତ ବିଫଳ ହୋଇ ଯାଇଥିଲା । କୌଣସି ଉଦ୍ୟମରେ ବି ହାତୀ ଥରେ ପଛକୁ ଫେରିବା ଲାଗି ସମ୍ମତ ହେଲା ନାହିଁ ।

ବଡ଼ବଡ଼ ପାହୁଣ୍ଡ ପକାଇ ଆଗେଇ ଗ୍ଲଲେ ଆଗକୁ ଆଗକୁ । ଭିତରୁ ମାହୁନ୍ତ ଅସ୍ତବ୍ୟସ୍ତ ହୋଇ ଧପାଇ ଥାଏ ହାତୀ ପଛରେ । ତା ମୁହଁରୁ କିଛୁକିଛୁ ଅବୋଧ ଆଦେଶ ବାହାରୁଥିଲେ ବି ଅମାନିଆ ହାତୀଟା ସେଦିନ ଆଉ କିଛୁ ଶୁଣିଲା ନାହିଁ ।

ଫରେଷ୍ଟ ପାର୍କ ଭିତରେ ସୃଷ୍ଟି ହୋଇଥିଲା କୌତୁହଳ । ହାତୀର କ୍ରିୟା କାଣ୍ଡକୁ ଲକ୍ଷ୍ୟ କରୁଥିବା ପରିବାରର ପୁରୁଷ ସ୍ତ୍ରୀମାନେ ପୋର୍ଟିକୋ ଓ ଲନ ଭିତରକୁ ଗ୍ଲଲି ଆସିଥିଲେ । କେହି କେହି ଉପର ବାରଣ୍ଡାରେ ଠିଆ ହୋଇ ଦେଖୁଥିଲେ । ଲନ ସରମରେ ହଟାହଟା ହୋଇ କୃଷ୍ଣା ପଶିଗଲା ଘର ଭିତରେ । ମମି ମଧ୍ୟ ସେଠାରେ ନଥିଲେ ।

କଞ୍ଜରଭେଟର ସାହେବଙ୍କ ବଂଗଳା ସାମନାରେ ହାତୀ ଆସି ଠିଆହେଲା ମହା ଦମ୍ଭରେ । ଗୋଟାଏ ପ୍ରକାର ବିକଟାଳ ଗର୍ଜନ ଶୁଭିବା ପରେ ତଳେ ଆଣ୍ଠୁମାଡ଼ି ବସିପଡ଼ିଲା । ପ୍ରଣବ ସାମନ୍ତରାୟ ଓହ୍ଲାଇ ଆସିଲେ ହାତୀଉପରୁ । ପୁରୁଣା ପୋଷାହାତୀର ବ୍ୟବହାରରେ ଅସ୍ୱାଭାବିକ ପରିବର୍ତ୍ତନର କୌଣସି କାରଣ ସେ ହଠାତ୍ ବୁଝି ପାରିଲେ ନାହିଁ । ହାତୀର ମାହୁନ୍ତ ସଙ୍ଗେ ଆଲୋଚନା କଲାବେଳେ ସେ ତାହାକୁ କୌଣସି ପ୍ରକାର ଶାସ୍ତି ନଦେବା ପାଇଁ ତାଗିଦ କରି ଦେଇଥିଲେ ।

ଏହି ଘଟଣା ପରେ ପରେ ଆଉ କେବେ ହେଲେ ବି ହାତୀ ଚଢ଼ି କୌଣସି ବାନ୍ଧବୀଙ୍କ ଘରକୁ ସେ ଯାଇ ନାହାନ୍ତି । ଆବାଲ୍ୟରୁ ପଶୁପକ୍ଷୀଙ୍କ ଆଚରଣ ଏବଂ କ୍ରିୟାକଳାପ ସଂପର୍କରେ ଅଧ୍ୟୟନରତ ଅରଣ୍ୟ-ବିଜ୍ଞାନୀ ପ୍ରଣବ ସାମନ୍ତରାୟଙ୍କ ପାଖରେ ସେଦିନର ଅନୁଭୂତିରୁ ଆପାତତଃ ଗୋଟିଏ କାରଣ ସୁସ୍ପଷ୍ଟତର ହୋଇଯାଇଥିଲା ଯେ ବଡ ବଡ଼ ସହରରେ ଅନେକ ଘରର ତରୁଣୀ-ମାନେ ଯେଉଁ ପ୍ରକାର ଦୁର୍ବଳତାର ବଶବର୍ତ୍ତୀ ହୋଇ ସରୀସୃପ ମାନଙ୍କ ମେଳ ଭିତରେ ଚଳପ୍ରଚଳ ହେଉଛନ୍ତି, ହାତୀଭଳି ବନ୍ୟ ଜୀବମାନେ କଦାପି ତାହାକୁ ସହ୍ୟକରି ପାରିବେ ନାହିଁ । ●



ଗୋଟିଏ
ହ୍ରନ୍ଦି କାହାଣୀ

# ମୋ ଗାଁର ମର୍ମକଥା

• ମିଥିଲେଶ୍ୱର

ଗୋଟିଏ ଗାଁର ଅନ୍ତର୍କଥା ପ୍ରସ୍ତୁତ କରିବା ପାଇଁ ମୁଁ ଆସି ମୋ ନିଜ ଗାଁରେ ପହଂଚି ଗଲି । ମୋ ଗାଆଁ ଓ ଗାଁ ଲୋକଙ୍କ ପ୍ରତି ମୋ ମନରେ ଅତୀବ ଶ୍ରଦ୍ଧା, ଏବଂ ପ୍ରଚୁର ଆକର୍ଷଣ ରହିଛି । ଛୁଟିରେ ଗାଁକୁ ଆସିଲେ ଶୈଶବ ଓ ଗାଁର ବିଗତ ଦିନର ସ୍ମୃତି ମୋ ମନପ୍ରାଣରେ ସଜୀବ ହୋଇ ଉଠେ । ଚାକିରି ପାଇଁ ମୋତେ ଗାଁରୁ ଅଲଗା ହେବାକୁ ପଡ଼ିଛି । ଏଥିପାଇଁ ମୋ ମନରେ ଅନେକ ଦୁଃଖ । ଯଦିଓ ଗାଁ ଅପେକ୍ଷା ସହରରେ ମୁଁ ବହୁ ସୁବିଧା, ସୁଯୋଗ ଉପଭୋଗ କରୁଛି, ତଥାପି ଏଥିରୁ ମୋତେ ତୃପ୍ତି ମିଳେ ନାହିଁ । ମୋ ମନ ପ୍ରାଣରେ ତ ମୂଳରୁ ଗାଁର ମାଟି, ଗାଁର ପରିବେଶ ନିଜର ଆସ୍ଥାନ ଜମାଇ ବସିଛି । ସହରର ପ୍ରଦୂଷଣରେ ମୋର ଶ୍ୱାସରୁଦ୍ଧ ହୋଇ ଯାଏ । ଏହାଛଡ଼ା ସହରରେ ମୁଁ ଅଜ୍ଞାତ ଅପରିଚିତ । ଆରାମ ଓ ଆଧୁନିକ ସୁବିଧା ସୁଯୋଗ ଉପଭୋଗ କରିବା ଛଡ଼ା ସହରବାସୀ ମାନଙ୍କର ଅନ୍ୟ କୌଣସି ମତଲବ ନାହିଁ । କିନ୍ତୁ ଗାଁକୁ ଆସିଲେ ମୁଁ ମୋ ପରିଚୟ ଫେରିପାଏ । ସହରର ଲୋକ ଗହଳର ମୁଁ ଏଠି ଏକ ଅଂଶ ନୁହେଁ, ମୁଁ ଏକ ବ୍ୟକ୍ତି । ମୁଁ ଏଠି କାହାର ଭାଇ, କାହାର ପୁଅ, କକା, କାହାର ଦିଅର, ଓ ନାତି ହୋଇ ଜୀଇ ରହିଛି । ମୋ ଜାଣିବାରେ ମଣିଷର ପୃଥକ୍ ଅସ୍ତିତ୍ୱ ନିର୍ମାଣ ଓ ପରିଚୟ ପାଇଁ ଏପରି ଜୀଇ ରହିବା ଅତି ଜରୁରୀ । ଚାକିରିରୁ ଅବସର ଗ୍ରହଣ ପରେ ଗାଁରେ ଶେଷ ଜୀବନ କଟାଇବାକୁ ମୁଁ ନିଷ୍ପତ୍ତି ନେଇ ସାରିଛି ।

ପ୍ରାୟ ଦଶ ମାସପରେ ମୁଁ ଗାଁକୁ ଆସିଛି । ସକାଳେ ପରିଚିତ ଦିନସାରା ଲୋକଙ୍କ ସହିତ ଦେଖା ସାକ୍ଷାତ ହେଲା । ଗାଁର ପରିବର୍ତ୍ତିତ ଅବସ୍ଥା ବିଷୟରେ ମୁଁ ଅନୁମାନ ଲଗାଇଲି । କେତୋଟି ଘଣ୍ଟା ମଧ୍ୟରେ ଦଶମାସର ଅନ୍ତରାଳ ସମାପ୍ତ ହୋଇଗଲା ଏବଂ ମୋ ଗାଁର ସାମଗ୍ରିକ ରୂପ ମୋ ଆଖିଆଗରେ ଉଦ୍‌ଭାସିତ ହୋଇ ଉଠିଲା ।

ଗାଁ ଚାରିପଟେ ଗହଳ ବଗିଚା ଓ କ୍ଷେତ ଘେରି ରହିଛି । ଗାରେ ପକ୍‌କା ଓ କଚ୍ଚାଘର ଉଭୟେ ରହିଛନ୍ତି । ଗାଁଟି ଭୋଜପୁର ଜିଲ୍ଲାରେ ଅବସ୍ଥିତ । ଏହା ବଡ଼ ନୁହେଁ କି ଅତିଛୋଟ ନୁହେଁ । ଗାଁର ଘର ସଂଖ୍ୟା ନବେ କି ପଞ୍ଚାନବେ ହେବ ।

ମୋ ଗାଁକୁ ଯିବାଲାଗି ପ୍ରଥମେ ମାର୍ଟିନ୍ସ କଂପାନୀ ଦ୍ୱାରା ଛୋଟ ରେଳଗାଡ଼ି ଚାଲୁଥିଲା । ଏହି ରେଳଗାଡ଼ିର ନାଁ ଥିଲା — ଆରା ସାସାରାମ ଲାଇଟ ରେଲୱେ । ଏହି ରେଳ ଗାଡ଼ିରେ ଆମେ ବାହାରକୁ ଯାଉଥିଲୁ ଏବଂ ଗାଁକୁ ଫେରୁଥିଲୁ । ମୋ ଗାଁଟା ରେଳଲାଇନ୍ କଡ଼ରେ ନୁହେଁ । ତେଣୁ ଷ୍ଟେସନରୁ ଓହ୍ଲାଇ ଚାଲି ହିଡ଼ରେ ଦୁଇ ତିନି କିଲୋମିଟର ଚାଲିବାକୁ ପଡ଼ୁଥିଲା । ବର୍ଷା ଦିନରେ ଆମ ଗାଁ ବାହାର ଜଗତରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଯାଉଥିଲା । ଛୋଟ ରେଳଗାଡ଼ି ଧରିବାକୁ ବେଳେ ବେଳେ ବେକେ ପର୍ଯ୍ୟନ୍ତ ପାଣି ଦେଇ ଅତିକ୍ରମ କରିବାକୁ ପଡ଼ୁଥିଲା । କିନ୍ତୁ ଏବେ ସେହି ଛୋଟ ରେଳଗାଡ଼ି ଆଉ ନାହିଁ । ତା' ବଦଳରେ ସରକାରୀ ଓ ବେସରକାରୀ ବସ୍ ଚଳାଚଳ କରୁଛି । ଏହା ଫଳରେ ଗାଁର ଭାଗ୍ୟୋଦୟ ହୋଇଛି । ଦୁଇଟି ପ୍ରାଇଭେଟ ବସ୍ ଏବେ ଆମ ଗାଁ ଦେଇ ଯାତାୟତ କରେ । ଏଥିପାଇଁ ନୂଆ ସଡ଼କ ତିଆରି ହୋଇ ନାହିଁ । ଗାଁର ମୃତପ୍ରାୟ ସଡ଼କ ଉପରେ ମାଟି ପକାଇ ପୁନର୍ଜୀବିତ କରାଯାଇଛି ।

ଏହି ସଡ଼କକୁ ଚାଲୁ କରିବା ପାଇଁ ମୋ ଗାଁ ବାଲାଙ୍କୁ ଅନେକ ସଂଘର୍ଷ କରିବାକୁ ପଡ଼ିଛି । ଥରେ ମୋ ଗାଁ ଲୋକେ ନିର୍ବାଚନ ବହିଷ୍କାର କରିଥିଲେ । ଯେତେ ଦିନ ପର୍ଯ୍ୟନ୍ତ ଏହି ସଡ଼କ ତିଆରି ନହୋଇଛି, ସେତେଦିନ ପର୍ଯ୍ୟନ୍ତ ଭୋଟ ନଦେବାକୁ ଗାଁ ଲୋକେ ସ୍ଥିର କରିଥିଲେ । ଗାଁର ସକଳ ଲୋକେ ଯାହା ବିଚାର କରି ଭୋଟ ଦେଇ ନଥିଲେ, ସେମାନଙ୍କର ସେହି ବିଚାର ଅସିଦ୍ଧ ପ୍ରମାଣିତ ହେଲା । ସେମାନେ ଭୋଟ ନଦେଇଥିଲେ ବି ରାଜ୍ୟରେ ସରକାର ଗଠିତ ହେଲା । ତେଣୁ ନିର୍ବାଚନ ବହିଷ୍କାର କାର୍ଯ୍ୟକ୍ରମ ପରିତ୍ୟାଗ କରି ଦାବୀ ହାସଲ ପାଇଁ ସେମାନେ ବ୍ଲକ ଅଫିସ ସାମନାରେ ଧାରଣା ଦେଲେ । ଏହା ଦ୍ୱାରା ମଧ୍ୟ କିଛି ଲାଭ ହେଲା ନାହିଁ । ଦିନେ ଗାଁ ବାଲା ଯାଇ ଏମ୍. ଏଲ୍. ଏଙ୍କୁ ଘେରାଉ କଲେ । ଏହି ଘେରାଉ ଯୋଗୁ ସଡ଼କ ହେଲା ବୋଲି ଗାଁ ଲୋକେ କହିଲେ । କିନ୍ତୁ ମୁଁ ଯେତେଦୂର ଜାଣେ, ଏମ୍. ଏଲ୍. ଏ ସାହେବ ନିଜର ନିର୍ବାଚନ ପ୍ରଚାର ଅଭିଯାନର ସୁବିଧା ଦୃଷ୍ଟିରୁ ଏହି ସଡ଼କ ମରାମତି କରାଇଲେ । ଏହି ଅଂଚଳରୁ ହିଁ ସେ ନିର୍ବାଚନ ଲଢ଼ି ବିଜୟ ହାସଲ କରିଛନ୍ତି । ତାଂକ ଅଂଚଳର ବିଭିନ୍ନ ଗ୍ରାମକୁ ଏହି ସଡ଼କ ହିଁ ସଂଯୁକ୍ତ କରି-ଥାଏ । ଏହି ସଡ଼କ ମରାମତି ନହେଲେ ତାଙ୍କ ନିର୍ବାଚନ-ଜିପ୍ ବିଭିନ୍ନ ଗ୍ରାମକୁ ଯିବ କିମିତି ? ଯେପରି ହେଉ ସଡ଼କ ମରାମତ ହୋଇ ଚାଲୁ ହୋଇ ଗଲା । ଏହା ଦ୍ୱାରା ଆମର ଏକ ମହତ୍ତ୍ୱପୂର୍ଣ୍ଣ ଦାବୀ ହାସଲ ହୋଇଗଲା ବୋଲି ଅନୁଭବ କଲୁ ।

କ୍ରମେ ସଡ଼କର ଅବସ୍ଥା ଖରାପ ହେବାକୁ ଲାଗିଲା । ଅଳ୍ପ ବହୁତ ମାଟି ପକାଇ ସେହି ଗାତଗୁଡ଼ିକୁ ବନ୍ଦ କରାଯାଇଛି । ବସ୍ ତା' ଉପରେ ଯାତାୟାତ କରିବା ଫଳରେ ସେହିସବୁ ଏଣେ ତେଣେ ଫାଟି ଫୋପାଡ଼ି ହୋଇ ପଡ଼ୁଛି । ବର୍ଷବର୍ଷ ଧରି ସଡ଼କ ନିର୍ମାଣ ହେବ ବୋଲି ଗାଁ ଲୋକେ ବର୍ଷେ ବର୍ଷେ ହେଲା ଶୁଣି ଆସୁଛନ୍ତି । ଆଉ ବର୍ଷେ ଭିତରେ ଏହାର ଯଦି ନିର୍ମାଣ ନହୁଏ, ତେବେ ଏତେବଡ଼ ଚୌଡ଼ା ସଡ଼କଟା ହାତେ ଓସାରର ଚାଲିବାଟରେ ପରିଣତ ହୋଇଯିବ । ଗାଁ ଲୋକେ ସେଇ ଚାଲିବାଟରେ ଚାଲି ଚାଲି ପୁରୁଣା ବସ୍ ଷ୍ଟାଣ୍ଡକୁ ଯିବା ଆସିବା କରିବେ—ବସ୍ ଧରିବା ପାଇଁ ।

ମୋର ଏଇ ଗାଁରେ ସବୁ ଜାତିର ଲୋକେ ନାହାନ୍ତି, କିନ୍ତୁ କେତେକ ମୁଖ୍ୟ ଜାତିର ଲୋକ ଏଠାରେ ବାସ କରନ୍ତି । ଏଇ ମୁଖ୍ୟମାନଙ୍କ ଭିତରେ ସବର୍ଣ୍ଣ ଓ ଅସବର୍ଣ୍ଣ ରହିଛନ୍ତି । ବଡ଼ ଜାତିଙ୍କ ସଂଖ୍ୟା ଏଠାରେ ବେଶୀ । ଯୁଗ ଯୁଗ ଧରି ଜାତିଗତ ପ୍ରଥାକୁ ଆଧାର କରି ଏଠାରେ ସମସ୍ତ କର୍ମକାଣ୍ଡ ଅନୁଷ୍ଠିତ ହୁଏ । ପୁରୋହିତ ପୂଜାପାଠ ଓ ବିବାହ ବ୍ରତ ଆଦି କାର୍ଯ୍ୟ ସମ୍ପନ୍ନ କରନ୍ତି । ଧୋବାମାନେ ଲୁଗା କାଚନ୍ତି । ଭଣ୍ଡାରୀ କ୍ଷୌରକର୍ମ କରେ । ମୋଚି ଜୋତା ସିଲେଇ କରେ । ଡମ କୁଲା, ଟୋକେଇ, କମାର ଲୁହା ଲସକର; ବଢ଼େଇ କାଠ କାମ ଓ କୁମ୍ଭାର ହାଣ୍ଡି ମାଠିଆ ଗଢ଼େ । ଏହା ଛଡ଼ା, ତେଲି ତେଲ ପେଡ଼େ । ଶୁଣ୍ଢି ତାଡ଼ି ବିକେ ।

କିନ୍ତୁ ପାରଂପାରିକ ଏଇ ଜାତିଗତ ପେଶାରେ ବର୍ତ୍ତମାନ ବହୁ ପରିବର୍ତ୍ତନ ଦୃଷ୍ଟିଗୋଚର ହେଉଛି । ଝଗଡ଼ୁ ଭଣ୍ଡାରୀର ପୁଅ କେଦାର ଏବେ ପୋଲିସ ଚାକିରୀରେ ଭର୍ତ୍ତି ହୋଇଛି । ତାକୁ ଆଉ କ୍ଷୁର କାମଭଲ ଲାଗୁନାହିଁ । ଗୁରୁଂଦା ମୋଚି ଜୋତା ସିଲେଇ ଛାଡ଼ି ଚାଷ କାମ କଲାଣି । ତା' ପୁଅ ଭଲ ଦି ପଇସା ଅର୍ଜନ କରି ଜାଗା ଜମି କିଣିଲାଣି । ରତନ ଧୋବା ଲୁଗା କାଚିବା ଛାଡ଼ି ଏବେ ଗାଈ ମଇଁଷି ବେପାର କରୁଛି । ଲୁଗା କାଚିବା ପେଶା ତା'ର ଆର୍ଥିକଅବସ୍ଥାକୁ ଅତି ଜଟିଳ କରି ପକାଉଥିଲା । ତଥାକଥିତ ଉଚ୍ଚ ଜାତିର ନବକିଶୋର ସିଂହ ଜଣେ ବଡ଼ ଗୃହୀଥିଲେ । ଏବେ ସେ ଭୂମିହୀନ ମୂଲିଆ । ପୂର୍ବେ ତାଙ୍କ ଘରେ ହଳିଆ ମୂଲିଆ କାମ କରୁଥିଲେ, ଏବେ ସେ ଅନ୍ୟ ଘରର ହଳିଆ, ମୂଲିଆ ।

ମୋ ଗାଁର ପାରଂପାରିକ ଜାତିଗତ ପ୍ରଥାରେ ଏକ ନୂତନ ଘଟଣା ସୃଷ୍ଟି ହୋଇଛି । ଏଇ ଘଟଣା ଯୁଗଯୁଗ ଧରି ଚାଲି ଆସିଥିବା ଜାତିପ୍ରଥାର ମୂଳଦୁଆକୁ ହଲାଇ ଦେଇଛି । ଏଇ ଜାତି-ନିର୍ମାଣ ଈଶ୍ୱରଙ୍କ ଦ୍ୱାରା ସମ୍ଭବ ହୋଇଛି ନାଁ ମଣିଷ ଏହାକୁ ତିଆରି କରିଛି ? ଏପରି ଏକ ସନ୍ଦେହ ଗାଁ ବାଲାଙ୍କ ମନରେ ଏବେ ଉଙ୍କି ମାରୁଛି ।

ମୋ ଗାଁର ଭଦେଇର ପୂର୍ବପୁରୁଷ ବ୍ରାହ୍ମଣ ପଣ୍ଡିତଥିଲେ । କିନ୍ତୁ ଭଦେଇ ଏବେ ଆଉ ବ୍ରାହ୍ମଣ ଘରର ସନ୍ତାନ ନୁହେଁ । ସେ ଏବେ ମୋଚି । ଏଇ ସଂପର୍କରେ ଗାଁ ବାଲାଙ୍କ ଭିତରେ ଏକ କାହାଣୀ ପ୍ରଚଳିତ ଅଛି । ଭଦେଇର ଜେଜେ ବ୍ରଜମୋହନ ପଣ୍ଡିତ ବଡ଼ ରସିକ ବ୍ୟକ୍ତିଥିଲେ । ଗାଁର ଗୋଟିଏ ମୋଚି ଝିଅକୁ ସେ ଭଲ ପାଉଥିଲେ । ନିଜ ବଂଶ ପରିବାରର କାହାକୁ ଖାତିର ନକରି ବ୍ରଜମୋହନ ସେ ମୋଚି ଝିଅଟିକୁ ରଖି ପକାଇଲେ । ତାଙ୍କର ବିବାହିତା ସ୍ତ୍ରୀ ଥିଲ । କିନ୍ତୁ ତାର ପିଲାଝିଆ ହେଉନଥିଲା । ମୋଚି ଝିଅ ଭାଗ୍ୟବତୀ । ତା' ଗର୍ଭରୁ ଜାତହେଲା ମନୋହର ପଣ୍ଡିତ । ମନୋହର ବର୍ଣ୍ଣ ଶଙ୍କର ରୂପେ ଗାଁରେ ପରିଚିତ । ବ୍ରଜମୋହନଙ୍କ ବେଳରୁ ବଂଶ ପରିବାରର ଲୋକେ ତାଙ୍କ ସହିତ ସମସ୍ତ ସଂପର୍କ ଛିନ୍ନ କରିଥିଲେ । କୁଳ କୁଟୁମ୍ବ ଲୋକେ ମନୋହରକୁ ମୋଚି ଜାତିର ଲୋକ ହିସାବରେ ଗ୍ରହଣ କରୁଥିଲେ । ନିଜ ଜାତି ଗୋଷ୍ଠୀରେ ବିବାହ ହୋଇ ନପାରିବାରୁ ମନୋହର ପଣ୍ଡିତ ବାଧ୍ୟ ହୋଇ ଗୋଟିଏ ଚମାରୁଣୀ ରଖିନେଲେ । ସେଇ ଚମାରୁଣୀ ଔରସରୁ ଭଦେଇ ଜନ୍ମ । ତଥାକଥିତ ବଡ଼ ଜାତିର ଆକ୍ଷେପ ଯୋଗୁ ଭଦେଇ ମୋଚି କୁଳ ଗୋଷ୍ଠୀକୁ ସ୍ୱୀକାର କରିନେଲା । କିଛି ଦଉଡ଼ାଦଉଡ଼ି କରି ଭଦେଇ ମୋଚି ଜାତିରେ ସମ୍ମିଳନ ପାଇଁ ମିଶିଗଲା । ଭଦେଇର ବାହାଘର ମୋଚି ଜାତିର ଝିଅ ସହିତ ବିଧିବଦ୍ଧ ଭାବେ ଅନୁଷ୍ଠିତ ହୋଇଗଲା । ଭଦେଇର ପିଲାମାନଙ୍କୁ ସେମାନଙ୍କର ଜାତି ବିଷୟରେ ପଚାରିଲେ, ସେମାନେ ମୋଚି ଜାତିର ଲୋକ ବୋଲି କହନ୍ତି । ଭଦେଇ ନିଜ ନାଁ ଭଦେଇ ରାମ ବୋଲି ଲେଖୁଛି । ଜମିର ପଟ୍ଟା ପାଉଡରେ ତା ଜେଜେ ଓ ବାପା ନାଁ ଯଥାକ୍ରମେ ବ୍ରଜମୋହନ ପାଣ୍ଡେ ଓ ମନୋହର ପାଣ୍ଡେ ବୋଲି ଲେଖାଯାଇଛି । କିନ୍ତୁ ଭଦେଇ ରାମର ବଂଶଧରଙ୍କ ନିକଟରେ ଏଇସବୁ ଘଟଣା ବିସ୍ମୃତ ହୋଇ ଇତିହାସରେ ପରିଣତ ହୋଇଯାଉଛି ।

ମୋ ଗାଁର ମୁଖ୍ୟ ଜୀବିକା କୃଷି । ଲୋକେ ଖୁବ୍ ଭଲଭାବେ ମନପ୍ରାଣ ଦେଇ ଚାଷବାସ କରନ୍ତି । ଅନ୍ୟ ଗାଁ ଭଳି ଶହଶହ ଏକରର ଜମି ମାଲିକ ମୋ ଗାଁରେ ନାହାନ୍ତି । ଏଥି ପାଇଁ ମୋ ଗାଁକୁ ବହୁ ଅପବାଦ ସହିବାକୁ ପଡ଼େ । ପଚିଶ ଏକରରୁ ଅଧିକ ଜମି କାହା ପାଖରେ ନାହିଁ । ବର୍ତ୍ତମାନ୍ତ୍ରୁ ଜନସଂଖ୍ୟା ଅନୁସାରେ ପ୍ରତ୍ୟେକ ପରିବାର ପିଚ୍ଛୁ ଜମିବାଣ୍ଟି ଦେଲେ, ଏହା ସମସ୍ତଙ୍କର ଆବଶ୍ୟକତା ପୂରଣ କରି ପାରିବ ନାହିଁ । ଜମି କାହା ପାଖରେ ପାଞ୍ଚ ଏକର ଅଛିତ କାହା ପାଖରେ ପଚିଶ ଏକର । ପୁଣି କାହା ପାଖରେ କିଛି ନାହିଁ । ଜମିର ଧରାତଳ ଉପରେ କୌଣସି ସମାନତା ନାହିଁ ।

ଚାଷ କାର୍ଯ୍ୟ ପାଇଁ ଏବେ ବି କଣ ସମର୍ଥ ଚାଷୀ ଟ୍ରାକ୍ଟର କିଣିଛନ୍ତି । କିନ୍ତୁ ଗାଁର ଚାଷୀ ବଳଦ ଦ୍ୱାରହିଁ ଚାଷ କରେ । ତେଣୁ ପ୍ରତ୍ୟେକ ଘରର ଦରଜା ସାମନା ଗୁହାଳରେ ବୋବାଳି ପକାଉଥିବା କିଂବା ନଡ଼ା ପାକୁଳି କରୁଥିବା ବଳଦମାନ ଦୃଷ୍ଟି ଗୋଚର ହୁଏ । ବଳଦ ଛଡ଼ା, ଜଣେ ମଧ୍ୟମ ଚାଷୀ ଜଣେ ହଳିଆ ଓ ଜଣେ ବଳଦ ଚରାଇଲାବାଲା ମଧ୍ୟ ରଖିଥାଏ । ଶ୍ରେଷ୍ଠଚାଷୀ ନିଜେ ଏଇସବୁ କାମକରେ । ହଳିଆ ମୂଲିଆ ରଖିବାକୁ ତା' ପାଖରେ ସଂବଳ କାହିଁ ? ଭୂମିହୀନ ଗରିବ ମୂଲିଆ ବର୍ଷକ ପାଇଁ ବଡ଼ଚାଷୀ ଘରେ ମୋଙ୍ଗ ହୋଇରହେ ।

ମୋ ଗାଁରେ ଜଳ-ସେଚିତ ଓ ଅ-ସେଚିତ ଉଭୟ ପ୍ରକାରର ଜମି ରହିଛି । କେନାଲ୍ ପାଣି ମଡ଼ାଇଲା ବେଳେ ଚାଷୀମାନଙ୍କ ଭିତରେ ମାରାମାରି ଏବଂ ଖୁଣି ଘଟଣା ପ୍ରାୟ ଦେଖା ଦେଇଥାଏ । ଏହି ସଂକ୍ରାନ୍ତୀୟ ମକଦ୍ଦମା-ମାନ ବର୍ଷ ବର୍ଷ ଧରି ଚାଲିଥାଏ । ପ୍ରତିବର୍ଷ ନୂଆ ନୂଆ ଫୌଜଦାରୀ କେସ୍ ପୁରୁଣା କେସ୍ ସହିତ ଯୋଡ଼ ହୋଇ ଚାଲିଥାଏ ! ମୋ ଜାଣିତରେ କେନାଲ୍ ପାଣି ମଡ଼ାଇବା ବେଳେ ଏହିପରି ଗଣ୍ଡଗୋଳ ହୋଇ ପ୍ରତିବର୍ଷ କୋର୍ଟ କଚେରୀରେ କେସ୍ ଡାଏରୀ ହୁଏ ଏବଂ ଚାଷୀମାନେ ନିଜର ଜମି ବିକି ସର୍ବସ୍ୱାନ୍ତ ହୋଇ ଯାଆନ୍ତି । ଏଥିପାଇଁ କୋର୍ଟ କଚେରୀକୁ ନଯାଇ ନିଜ ନିଜ ଭିତରେ ବୁଝାମଣା କରିବାକୁ କେହି ପ୍ରସ୍ତୁତ ନୁହନ୍ତି । ଗଣେଶୀ ମହାପେ ଏ କ୍ଷେତ୍ରରେ ନୂଆ ହେଲେ ବି ସେ ଜଣେ ଧୂରନ୍ଧର ମକଦମାରଖୋର । ତା' ଦୁଆର ମୁହଁରେ ବସି ଦଲେ ମକଦମାର ପେଞ୍ଚ କଷାକଷି କାମରେ ବ୍ୟସ୍ତ ରହିଥାନ୍ତି ।

ଅ-ସେଚିତ ଜମିରେ ପାଣି ମଡ଼ାଇବା ପାଇଁ କେତେକ ଚାଷୀ କୂଅ ଖୋଳିଛନ୍ତି; କେତେକ ବୋରିଂ କରିଛନ୍ତି । ଦି ତିନି ଜଣ ପମ୍ପସେଟ କିଣିଛନ୍ତି । ଏହାସତ୍ତ୍ୱେ, ବର୍ଷା ନହେଲେ ଲୋକେ ହତାଶ ହୋଇ ଶୂନ୍ୟକୁ ଚାହିଁ ରହନ୍ତି ।

ମୋ ଗାଁ ପାଖରେ କୌଣସି ବଡ଼ ନଦୀ ନାହିଁ । ଏଥିପାଇଁ ଏଠାରେ ଜଳ-ସମସ୍ୟା ଅତି ଉତ୍କଟ । ଗାଁ ପାଖରେ ନଦୀ ନଥିବାରୁ ଲୋକେ ଅବଶ୍ୟ ନଈ ବଢ଼ିରୁ ମୁକ୍ତ ପାଇଛନ୍ତି । କିନ୍ତୁ ମରୁଡ଼ିରୁ ମୁକ୍ତ କାହିଁ ? ଗତ ବର୍ଷ ମୋ ଗାଁ ମରୁଡ଼ି କବଳରେ ପଡ଼ିଥିଲା । ଖରିଫ ଓ ରବି ଫସଲ ଉଭୟ ନଷ୍ଟ ହୋଇ ଗଲା । ତଥାପି ଜଳକର ଓ ଖଜଣା ଛାଡ଼ କରାଗଲା ନାହିଁ । ସରକାରୀ କର୍ମଚାରୀମାନେ କହିଲେ—ଆମର ଏଇ ଅଂଚଳକୁ ଅକାଳଗ୍ରସ୍ତ ରୂପେ ସରକାର ଘୋଷଣା କରିନଥିବାରୁ ଜଳକର ଓ ଖଜଣା ମାଫ ହୋଇ ପାରିଲା

ନାହିଁ । ଗୃହୀମାନେ ଖଜଣା, ଜଳକର ଦେଲେ ନାହିଁ । ଦୁଇ ପକ୍ଷରୁ ସଂଘର୍ଷ ଆରମ୍ଭ ହେଲ । କର୍ମଚାରୀମାନେ ପୋଲିସ ସଙ୍ଗ ଆସି ଗାଁର ଗୃହାଳମାନଙ୍କରୁ ଗାଈ ଗୋରୁ ମଇଁଷି ଜବରଦସ୍ତ ନେଇଗଲେ । ଦୁଆର ମୁହଁର ଚଉକାଠ, କବାଟ ମଧ୍ୟ ଛାଡ଼ି ନେଇଗଲେ । ରାଜ ଶକ୍ତିର ନିର୍ମମତା, କ୍ରୂରତା ଆଗରେ ଗୃହୀମାନେ ଶେଷରେ ହାରିଗଲେ । ସେଇ ଦିନଠାରୁ ମୋ ଗାଁ ଲୋକେ ସଂପୂର୍ଣ୍ଣ ଭାବେ ବୁଝିଗଲେ ଯେ ଗାଁର ଗୃହୀ ଓ କୃଷକ ଅସହାୟତା ଓ ସାହା ଭରସା ହୀନତାର ଜ୍ୱଳନ୍ତ ପ୍ରତିମୂର୍ତ୍ତି । ତାକୁ ଯେତେ ପ୍ରକାରେ ଲୁଣ୍ଠନ କର, ତା' ଉପରେ ଯେତେ ପ୍ରକାର ଟିକସ ଲଦିଦିଅ, ସେ ନଦେଇ ଯିବ କୁଆଡେ ?

ମୋ ଗାଁକୁ ଏ ପର୍ଯ୍ୟନ୍ତ ବିଜୁଳି ଆସିନାହିଁ । ଗାଁ ମୁଣ୍ଡରେ ଥିବା କ୍ଷେତ ଭିତର ଦେଇ ବିଜୁଳି ଲାଇନ୍ ଯାଇଛି । ସେଇଠି କେତେକ ଗାଁ ବାଲ୍ବ ବୋଉଙ୍କ କରିଛନ୍ତି । ଗାଁକୁ ବିଜୁଳି ଆସିଥାନ୍ତା । କିନ୍ତୁ ଏହା ପୂର୍ବରୁ ମନୋଜ ଓ ରବିନ୍ଦର ନାମକ ଗାଁର ଦୁଇଜଣ ଯୁବକ ଖେଳୁଆଡ଼ଗିରି ଦେଖାଇ ଦେଖାଇ ବିଜୁଳି ତାରରେ ଲାଗି ମରିଗଲେ । ସେମାନଙ୍କର ଅକାଳ ମୃତ୍ୟୁରେ ଗାଁ ଲୋକେ ଏତେ ଭୟଭୀତ ହୋଇ ପଡ଼ିଲେ ଯେ ବିଜୁଳି ନାଁ ଆଉ ଧରିଲେ ନାହିଁ । ଏହା ଛଡା ଗାଁ ଲୋକେ ହିସାବ ପରି କରି ଦେଖିଲେ ଯେ ଡ଼ିବିର ଓ ଲଣ୍ଠଣ ଅପେକ୍ଷା ବିଜୁଳିବତୀ ଲଗାଇବା ବ୍ୟୟ ବହୁଳ ।

ବଡ଼ ଦୁ'ଖର କଥା ଯେ ମୋ ଗାଁ ଲୋକଙ୍କ ଭିତରୁ ଏ ପର୍ଯ୍ୟନ୍ତ ଅଂଧ ବିଶ୍ୱାସ ଓ ପୁରୁଣା କାଳିଆ ଭାବନା ଦୂରହେଲ ନାହିଁ । ଗାଁର ଦକ୍ଷିଣ ପଟେ ଥିବା ବ୍ରହ୍ମବାବାଙ୍କ ଚଉତରା ଉପରେ ପ୍ରତି ଶୁକ୍ରବାର ସଂଧ୍ୟାରେ ମହୋତ୍ସବ ଆୟୋଜିତ ହୁଏ । ଅଭାବ ଓ ମନୋବ୍ୟାଧି ପୀଡ଼ିତ ସ୍ତ୍ରୀ ଲୋକଙ୍କୁ ଏଠାରେ ଡ଼ାହାଣୀ ଲାଗେ । ଗୁଣିଆ ଡ଼ାହାଣୀ ଛଡ଼ାଏ । ରୋଗ ବ୍ୟାଧିରେ ଲୋକେ ଡ଼ାକ୍ତରୀ ଚିକିତ୍ସା ଅପେକ୍ଷା ଝଡା ଫୁଙ୍କାରେ ବେଶୀ ବିଶ୍ୱାସ କରନ୍ତି । ଅଶିକ୍ଷା ଓ ଅଜ୍ଞାନତା ଯୋଗୁ ସେମାନେ ଏଇ ଭୁଲ ପରଂପରାରୁ ମୁକ୍ତି ପାଇ ନାହାନ୍ତି । ମୋ ଗାଁ ଲୋକେ ଯେ ସଂପୂର୍ଣ୍ଣ ଅଶିକ୍ଷିତ ଏକଥା ମୁଁ କହୁନାହିଁ । ଗାଁର ଅନେକ ପାଠଶାଠ ପଢି ସହରରେ ପ୍ରଫେସର, ଇଂଜିନିୟର, ଡ଼ାକ୍ତର, ଓକିଲ ହୋଇଛନ୍ତି । ଉଚ୍ଚ ଶିକ୍ଷା ଓ ବଡ ପୋଷ୍ଟ ପାଇଁ ସେମାନେ ସହରବାସୀ ହୋଇ ଯାଇଛନ୍ତି । ଗାଁରୁ ଅଜ୍ଞାନ ଦୂରକରି ଗାଁ ଲୋକଙ୍କୁ ଶିକ୍ଷିତ କରିବା ପାଇଁ ସେମାନଙ୍କ ପକ୍ଷରୁ କୌଣସି ଉଦ୍ୟମ ପ୍ରକାଶ ପାଇଲା ନାହିଁ । ତେଣୁ ରୂଢିଗତ ଅଂଧକାର ଭିତରେ ମୋ ଗାଁ ଏବେ ବି ପଡ଼ି ରହିଛି ।

ଶିକ୍ଷା-ଦୀକ୍ଷା କ୍ଷେତ୍ରରେ ମୋ ଗାଁର ଝିଅମାନେ ପୁଅମାନଙ୍କ ଅପେକ୍ଷା ଏପର୍ଯ୍ୟନ୍ତ ତଳ ସ୍ତରରେ ରହିଛନ୍ତି । ପୁଅମାନେ ହେଲେ ଆକାଶର ପାରିଜାତ ଆଉ ଝିଅମାନେ ଚରଣ ଧୂଳି । ସ୍ୱାମୀମାନ୍ତ ହେଲେ ତାଙ୍କୁ ଈଶ୍ୱରଙ୍କ ପ୍ରସାଦ ରୂପେ ଗ୍ରହଣ କରିବାକୁ ମା'ମାନେ ଝିଅମାନଙ୍କୁ ଶିକ୍ଷା ଦିଅନ୍ତି । ସ୍ୱାମୀଙ୍କୁ ଦେବତା ରୂପେ ପୂଜା କରିବା ଏବଂ ସ୍ୱପ୍ନରେ ବି ତାଙ୍କ ବିରୁଦ୍ଧରେ କିଛି ଚିନ୍ତା ଭାବନା ନକରିବାକୁ ମା'ମାନେ ପ୍ରତିଦିନ ଝିଅଙ୍କୁ ଆକଟ କରି କହନ୍ତି ।

ଝିଅମାନଙ୍କ ପରଧନ ଏବଂ ସେମାନଙ୍କ ବିବାହ ବେଳେ ଯୌତୁକ ଦେବାକୁ ପଡୁଥିବାରୁ ଲୋକେ ଏହିପରି ଭାବେ ଝିଅଙ୍କୁ ଶିକ୍ଷା ଦିଅନ୍ତି । ଏଇଥି ପାଇଁ ବୋଧହୁଏ ଝିଅମାନଙ୍କୁ ବେଶୀ ପାଠ ନପଢାଇ କେବଳ ଚିଠିପତ୍ର ଲେଖିବା ପଢିବା ଭଳି ଅକ୍ଷର ପରିଚୟ କରାଇ ଦିଅନ୍ତି । ଗାଁର ଯେଉଁ ଲୋକମାନେ ସହରରେ ଚାକିରି ବାକିରି କରି ପ୍ରଗତିଶୀଳ ବିଚାର ଧାରା ଗ୍ରହଣ କରିଆନ୍ତି, ସେଇମାନଙ୍କରି ଝିଅମାନେ ଦିଅକ୍ଷର ବେଶୀ ପଢିବା ପାଇଁ ସୁଯୋଗ ପାଆନ୍ତି ।

ମୋ ଗାଁକୁ ଜାଣିବାକୁ ହେଲେ ଗ୍ରାମ ସଭାକୁ ଭଲ ଭାବେ ବୁଝିବା ଉଚିତ । ଆମ ଗାଁ ସଭା ବର୍ଷକୁ ତିନି ଚାରିଥର ବସୁଥିଲା । ଗାଁର ସମସ୍ତେ ସେଥିରେ ଯୋଗ ଦେଉଥିଲେ । ଏବେ କିନ୍ତୁ ଗାଁ ସଭା କୋଡିଏ ପଚିଶ ଥର ଜାତି, ବସ୍ତି ଓ ଗୋଷ୍ଠୀ ଭିତରେ ବସୁଛି । ଗାଁ ସଭା ଗାଁ ମଝିରେ ଥିବା ବରଗଛ ତଳେ, କାହାର ଲଂବା ଚୌଡ଼ା ବାରଣ୍ଡାରେ, ବଗିଚା ଓ ଖଳାରେ ବସେ । ସଭାରେ ଚର୍ଚ୍ଚା କରାଯାଉଥିବା ବିଷୟ ଆଖି ପିଛୁଳାକେ ସମଗ୍ର ଗାଁରେ ପ୍ରସାରିତ ହୋଇଯାଏ । କାହାଘରେ ଝଗଡାଝାଟି ହୋଇଛି, କାହାଘର କପରି ଚଳୁଛି, କାହା ଝିଅ କାହା ପୁଅ ସାଥିରେ ଆଖୁ କ୍ଷେତରେ ଧରାପଡ଼ିଛି, କେଉଁ ବୁଢ଼ିଆ ଘରର ଝିଅ ବରଯୋଗ୍ୟା ହେଲାଣି, କାହାର ଫସଲ କପରି ହୋଇଛି, ଏବର୍ଷ କାହାର କ୍ଷେତର ଫସଲ ପହିଲି ନମ୍ବର ହେବ, କାହା ଘରକୁ କେଉଁଠି କୁଣିଆ ଆସିଛନ୍ତି, କାହା ପୁଅକୁ କେତେ ଯୌତୁକ ମିଳିଛି, କାହା ଝିଅକୁ କେତେ ଯୌତୁକ ଦିଆ ଯାଉଛି, କାହାର ମାଟି ଘର ପକ୍କା ହେଉଛି, କେଉଁ ମୂଲିଆମାନେ ଗାଁ ଛାଡ଼ି ସହରକୁ ପଳାଇଲେ—ଏଇ ସବୁ ବିଷୟ ଗ୍ରାମ ସଭାର ଆଲୋଚ୍ୟ ବିଷୟ ।

ଯୌଥ ପରିବାର ଭାଙ୍ଗି ଯାଉଥିବା ଘଟଣାଟି ମୋ ଗାଁର ସବୁଠୁ ବଡ଼ ପରିବର୍ତ୍ତନ । ପ୍ରାୟ ପ୍ରତ୍ୟେକ ରଂଧାଶାଳ ଅଲଗା ହୋଇ ଯାଇଛି । ବିଚ୍ଛିନ୍ନତାର କାନ୍ଥ ସଦମ୍ଭେ ପ୍ରତ୍ୟେକ ଘରେ ଠିଆ ହୋଇଛି । ମୋର ଗାଁକୁ ଆସିବାର ଅଳ୍ପ ଅବଧି ଭିତରେ ପୁଣି ତିରିଶ ଚାଳିଶ ନୂଆ ରଂଧାଶାଳ ସୃଷ୍ଟି

ହୋଇଗଲା । ଯେଉଁ କେତୋଟି ଯୌଥ ପରିବାର ରହିଛି ତାହା କେବଳ ଉପର ଠାଉରିଆ ଭାବେ ରହିଛି । କେତେକ ଓର ଛିଣ୍ଡି ରହିଥାନ୍ତି, ପୁଅ ଝିଅର ବିବାହ ପରେ ଅଲଗା ଚୂଲି ଆରମ୍ଭ ହୁଏ । ବିସେଶର, ଓ ଚନେସର ଦୁଇଭାଇ । ଦୁଇ ଭାଇଙ୍କ ମନମେଳ ଦେଖି ଗାଁଲୋକେ ଈର୍ଷାପରାୟଣ ହେଉ-ଥିଲେ । ଦୁଇ ଭାଇଙ୍କ ଏକମନ, ଏକପ୍ରାଣ । ଭାଇ ହେବତ ଏମାନଙ୍କପରି । ଗ୍ରାମ ଭାରତଯୋଡ଼ା । କିନ୍ତୁ କଣ ହେଲା କେଜାଣି, ହଠାତ୍ ଦିନେ ଭାଗ ହୋଇ ଭିନେ ହୋଇଗଲେ । ବିସେଶରକୁ ମୁଁ ଏହାର କାରଣ ପଚାରିଲି । ସେ କହିଲା—ମୋ ପୁଅ ହିଁ ମୋତେ ଭିନେ କରି ଦେଲା । ଆଜି କାଲିକା ଟୋକାଙ୍କ ଆଗରେ ଆମର ଶୁଣୁ କଣ ?

ଯୌଥ ପରିବାର ଭାଙ୍ଗି ଯାଉଥିବାରୁ ଗାଁର ପୁରୁଣା ଲୋକଙ୍କ ମନରେ ଭୀଷଣ ଦୁଃଖ । କିନ୍ତୁ ଯୁବକମାନେ ଏହାକୁ ଉଚିତ ଭାବୁଛନ୍ତି । ସେମାନେ କହନ୍ତି—ଯୌଥ ପରିବାର ଅପେକ୍ଷା ଲୋକ ଅଲଗା ହୋଇ ବେଶୀ ବିକାଶ ପ୍ରାପ୍ତ ହୁଏ ।

ସହର ଓ ଅର୍ଦ୍ଧସହରର ମିଶ୍ରିତ ସଂସ୍କୃତି ମୋ ଗାଁ ଭିତରକୁ ପଶି ଆସୁଛି । ଖାଇବା, ପିଇବା ଆଚରଣ ବିଧିରେ ବହୁ ପରିବର୍ତ୍ତନ ଦେଖାଦେଲାଣି । ଗାଁ ଗଳି ଓ ସାଇରେ ହରରଙ୍ଗୀ ପ୍ୟାଣ୍ଟସାର୍ଟ ପିନ୍ଧି ସିଗାରେଟ ଧୂଆଁ ଉଡ଼ାଉ-ଥିବା କେତେ ଗୁଡ଼ିଏ ଟୋକାଙ୍କୁ ବେଳେବେଳେ ଦେଖିବାକୁ ମିଳୁଛି । ଝିଅମାନେ ବି ମିନି-ସ୍କର୍ଟ ମେକ୍ସି ପିନ୍ଧୁଛନ୍ତି । ଶସ୍ତା ପ୍ରେମ କାହାଣୀ ପଢ଼ିବା, ଦାଦାଗିରି, ଛୁରିବାଜି କରିବା ଏମାନଙ୍କର କାମ । ଅନୁକରଣର ଏହା ଏକ ବାହ୍ୟ ରୂପ । ଗୋଟାଏ ପଟେ ରୂଢ଼ିଗତ ଧାନଧାରଣା, ଅନ୍ୟପଟେ ଛଦ୍ମ ଓ ଆରୋପିତ ଆଧୁନିକତା, ଏଇ ଦୁଇଟି ମଧ୍ୟରେ କୌଣସି ସଂଗତି ନାହିଁ । ଚେତନା ସ୍ତରରେ ଯେପର୍ଯ୍ୟନ୍ତ କୌଣସି ପରିବର୍ତ୍ତନ ଦେଖା ନଦେଇଛି, ସେତେଦିନ ପର୍ଯ୍ୟନ୍ତ ଏହି ବାହ୍ୟ ପରିବର୍ତ୍ତନ ସଙ୍ଗତିବିହୀନ ଓ ହାସ୍ୟକର ବ୍ୟାପାର ହୋଇ ରହିବ ।

ଅର୍ଦ୍ଧ ସହର ଓ ସହରରେ ଯେପରି ପରିବର୍ତ୍ତନର ପ୍ରକ୍ରିୟା ଦେଖା ଦେଇଛି, ସେପରି ପରିବର୍ତ୍ତନ ଗାଁରେ ହେଉ, ତାହା ମୁଁ ଚାହେଁ ନାହିଁ । ଏହା ଦ୍ୱାରା ଗାଁର ନିଜସ୍ୱ ଶକ୍ତିଲୋପ ପାଇଯିବ । ଅର୍ଦ୍ଧସହର ଓ ସହରର ଜାଗ୍ରତଭାବ, ସେଠାରେ ମିଳୁଥିବା ଅନାବଶ୍ୟକୀୟ ସୁବିଧା ସୁଯୋଗ ଗାଁ ଗହଳର ଲୋକେ ପାଇବା ଉଚିତ । ଏହା ଗାଁ ବାଲାଙ୍କ ଅଧିକାର ଭୁକ୍ତ ।

ମୋ ଗାଁର 'ଗ୍ରାମ-ସୁରକ୍ଷା-ସଂଘ' ସଂପର୍କରେ ମୁଁ କିଛି କହୁଛି । ଏପରି ସଂଘ ଅନ୍ୟାନ୍ୟ ଗାଁରେ ଥିଲା କି ନାହିଁ, ତା' ମୁଁ ଜାଣେ ନା । କିନ୍ତୁ ମୋ

ଗାଁରେ ଏହି ସଂଘ ରହିଥିଲା । ଚୋରି, ବଦମାସି ମୋ ଗାଁରେ ଅନେକ ଦିନରୁ ଚାଲି ଆସୁଥିଲା । ସମର୍ଥ ଲୋକେ ଦୁର୍ବଳ ଲୋକଙ୍କୁ ସବୁବେଳେ ଚପାଇ ଆସୁଥିଲେ । କ୍ଷେତରୁ ଧାନ ଫସଲ ଚୋରି ଯାଉଥିଲା । ଘରେ ଚୋର ସିନ୍ଧି କାଟୁଥିଲେ । ଏପରି ଅନେକ ଘଟଣା ଲୋକେ ସହି ଯାଉଥିଲେ । ପରେ ଏପରି ଦୁଇଟି ଘଟଣା ଘଟିଲା, ଯାହା ଫଳରେ ଲୋକେ ସମ୍ମିଳିତ ସୁରକ୍ଷା ସଂପର୍କରେ ଚିନ୍ତା ଭାବନା ଆରମ୍ଭ କଲେ । ଘଟଣା ଦୁଇଟି ଗାଁର ଭିକାରି ସିଂହ ଓ ଦଦନ ଚୌଧୁରୀଙ୍କୁ ନେଇ ଘଟିଥିଲା । ଭିକାରି ସିଂହ ଗାଁର ଜଣେ ସମର୍ଥ ଚାଷୀ । ତାଙ୍କ ଘରେ ଦିନେ ରାତିରେ ଡକାଏତି ହେଲା । ଭିକାରି ସିଂହ ଘର ବାଲାଙ୍କ ଚିତ୍କାର ଶୁଣି ଗାଁଲୋକେ ପହଞ୍ଚିଗଲେ, କିନ୍ତୁ ଡକାୟତମାନେ ଦୂରରୁ ଗୁଳି ଫୁଟାଇ ଗାଁ ଲୋକଙ୍କୁ ଏଥିରେ ହସ୍ତକ୍ଷେପ ନକରିବାକୁ ସାବଧାନ କରିଦେଲେ । ଗାଁ ଲୋକେ ଭିକାରି ସିଂହ ଘର ପାଖରୁ ପଳାଇ ଆସି ଦୂରରେ ଠିଆ ହୋଇ ରହିଲେ । ଡକାୟତମାନେ ଭିକାରି ସିଂହ ପରିବାରର ଲୋକଙ୍କୁ ଆହତ କରି ଜିନିଷ ପତ୍ର ସବୁ ଲୁଣ୍ଠନ କରି ଗୁଳି ଫୁଟାଇ ଫୁଟାଇ ପଳାଇ ଗଲେ ।

ମୋ ଗାଁରେ ଏହା ଏକ ନୂଆ ଘଟଣା । ଏହା ପୂର୍ବରୁ ଗାଁରେ ଚୋରି ହେଉଥିଲା । ଲୋକେ ଜାଗି ଉଠିଲେ ଚୋର ପଳାଇ ଯାଉଥିଲେ । ଭିକାରି ସିଂହ ଘର ଡ଼ାକଏତି ଘଟଣା କିନ୍ତୁ ଗାଁକୁ ଭୟଭୀତ କରି ଦେଇଥିଲା । ଏହି ଡକାଏତି କିପରି ଘଟିଲା, ସେ ସଂପର୍କରେ ବହୁ ଚର୍ଚ୍ଚା ଆଲୋଚନା ହେଲା । ଗାଁ ଲୋକଙ୍କ ବିନା ସହଯୋଗରେ ଏପରି ଡ଼କାଏତି ହୋଇ ପାରେନା । ନିଶ୍ଚିତ ଭାବେ ଗାଁର କୌଣସି ଲୋକ ଏହି ଡକାଏତି କରାଇଛି । ଭିକାରି ସିଂହ ସହିତ ଶତ୍ରୁତା ଥିବା କେତେକ ଲୋକଙ୍କ ନାଁ କେହି କେହି ପ୍ରକାଶ କରୁଥିଲେ ।

ଡକାଏତି ଘଟଣାର ଚର୍ଚ୍ଚା ବନ୍ଦ ନହେଉଣୁ ନିଜ ଖଳାରେ ଶୋଇଥିବା ଦଦନ ଚୌଧୁରୀଙ୍କୁ କିଏ ହତ୍ୟାକରି ପକାଇଲା । ଗାଁରେ ଏହା ପ୍ରଥମ ହତ୍ୟା । ଏହି ସଂପର୍କରେ ନାନା ପ୍ରକାର ଚର୍ଚ୍ଚା ଆଲୋଚନା ଚାଲିଲା । ଏହି ସବୁ ଉପଦ୍ରବରୁ ମୁକ୍ତି ପାଇବା ଲାଗି ଗାଁ ଲୋକେ ମିଳିମିଶି ଏକ ଯୋଜନା ତିଆରି କଲେ ।

ଭିକାରି ସିଂହ ଓ ଦଦନ ଚୌଧୁରୀଙ୍କ ପରି ସେମାନଙ୍କ କ୍ଷେତ୍ରରେ ଯଦି ଏପରି ଘଟେ, ତେବେ ସେମାନେ କଣ କରିବେ ? ଫଳସ୍ୱରୂପ 'ଗ୍ରାମ ସୁରକ୍ଷା ସଂଘ' ଜନ୍ମିତ ହେଲା । ବରଗଛ ମୂଳେ ଲଗାତାର କେତୋଟି ବୈଠକ ବସିଲା ପରେ ସଂଘ ତିଆରି ହୋଇଗଲା । ଗାଁର ବଡ଼ ଓ ଶ୍ରେଷ୍ଠ– ଉଭୟ ଜାତିର ଲୋକଙ୍କୁ ସଂଘର ସଭ୍ୟ କରାଗଲା । ସମଗ୍ର ଗାଁରୁ ଚାନ୍ଦା ସଂଗ୍ରହ କରି ସଂଘର

ପାଣି ନିର୍ମିତ ହେଲା । ଏହାପରେ ସଂଘ ନିଜ କାମ ଆରମ୍ଭ କରିଦେଲେ । ରାତିରେ ପହରାଦେବା ତଥା ଚୋର ବଦମାସିରେ ଧରାଯାଇଥିବା ଲୋକଙ୍କୁ ଶାସ୍ତି ପ୍ରଦାନ କରିବା— ଏହା ହିଁ ଥିଲା ସଂଘର ମୁଖ୍ୟକାମ ।

ସଂଘ ଅଳ୍ପ ଦିନ ଭିତରେ ଗାଁର ନକ୍ସା ବଦଳାଇ ଦେଇଥିଲା । କ୍ଷେତ ଖଳା, ବାଡ଼ିରେ ଫସଲ ପଡ଼ିଥିଲେ ବି କେହି ଛୁଉଁ ନଥିଲା । ଲୋକେ ଦରଜା ମେଲାକରି ଶୋଉଥିଲେ, ହେଲେ ଭୁଲରେ ବି ଚୋର ଆସୁ ନଥିଲା । ବାଘ-ବକରୀଙ୍କୁ ଗୋଟିଏ ଘାଟରେ ପାଣି ପିଆଇ ପାରିଥିଲା ମୋ ଗାଁର ନବ ନିର୍ମାଣ ସଂଘ । ଏଥିପାଇଁ ସଂଘକୁ ଯେପରି ଭାବେ ସଂଘର୍ଷ କରିବାକୁ ପଡ଼ିଛି, ତା'ର ପ୍ରତ୍ୟେକ କାହାଣୀ ଲୋମହର୍ଷଣକାରୀ ।

ବଡ଼ ଦୁଃଖର କଥା ଯେ ସଂଘଟି ଅଳ୍ପ ଦିନ କାମ କରିବା ପରେ ଭାଙ୍ଗି ଯାଇଥିଲା । ଅସଲ କଥା ଏଇଆ ଯେ ସଂଘ ଯେଉଁ ଦିନଠୁ ତିଆରି ହୋଇଥିଲା, ସେଇ ଦିନଠୁ ତା' ଭିତରେ ଅସମାଜିକ ତତ୍ତ୍ୱ ପ୍ରବେଶ କରି ଏହାକୁ ଭାଙ୍ଗିବା କାମ ଆରମ୍ଭ କରି ଦେଇଥିଲା । ଏହି ସଂଘ ଦ୍ୱାରା ବଡ଼ ଓ ଶ୍ରେଷ୍ଠ ଜାତି କିଛି ଲାଭବାନ ହୋଇ ପାରିବେ ନାହିଁ ବୋଲି ସଂଘର ଉଭୟ ଜାତିର ସଭ୍ୟମାନଙ୍କୁ ବୁଝାଇ ଦିଆଗଲା । ବଡ଼ ଚାଷୀମାନେ ନିଜର ସୁରକ୍ଷା ପାଇଁ ଏଇ ସଂଘ ତିଆରି କରିଛନ୍ତି । ଭୂମିହୀନ ଲୋକଙ୍କର ଅଛି କଣ ଯେ ଚୋର ତା' ଘରୁ ଚୋରି କରିବ ? ସମସ୍ତେ ନିଜ ନିଜ ସୁବିଧା କଥା ଭାବି ସଂଘରୁ ଅଲଗା ହୋଇଗଲେ । ସଂଘର କେତେକ ବରିଷ୍ଠ ସଦସ୍ୟଙ୍କ ବିରୁଦ୍ଧରେ ପକ୍ଷପାତ ଅଭିଯୋଗ ଆସିଥିଲା । ସଂଘ ବିବାଦାସ୍ପଦ ହୋଇ ମହତ୍ତ୍ୱହୀନ ହେବାକୁ ଲାଗିଲା । ଦିନେ ହଠାତ୍ ଭୁଷୁଡ଼ିପଡ଼ି ନିଶ୍ଚିହ୍ନ ହୋଇ ଯାଇଥିଲା ।

ଏବେ ପୁଣି ମୋ ଗାଁ ପଛୁଲା ଅବସ୍ଥାକୁ ଫେରି ଆସିଲାଣି । ସଂଘ ଭାଙ୍ଗିଯିବା ପରେ ଗାଁରେ ଅରାଜକତା ଓ ଭୟାବହ ଅବସ୍ଥା ସୃଷ୍ଟି ହୋଇଛି । ଯାହା ମୁଣ୍ଡ ଉପରେ ଚଡ଼କ ପଡ଼ୁଛି, ସେ ତାହା ଏକଲା ସମ୍ଭାଳୁଛି । ସାମୂହିକ ବିଚାର ଧାରା କେବେଠୁ ବିଦାୟ ନେଇ ସାରିଲାଣି ।

ଗାଁର ଗ୍ରାମ ପଞ୍ଚାୟତ ସହିତ ମୁଁ ଆପଣମାନଙ୍କୁ ସାକ୍ଷାତ କରାଇ ଦେବାକୁ ଚାହେଁ । ମୋ ଗାଁଟି ଖୁବ୍ ଛୋଟ । ତେଣୁ ମୋ ଗାଁପରି ଆଉ ତିନୋଟି ଗାଁର ମିଶ୍ରଣରେ ଗ୍ରାମ ପଞ୍ଚାୟତ ନିର୍ମାଣ କରାଯାଇଛି । ନିର୍ବାଚନ ପ୍ରଚାର ସମୟରେ କିଏ ସପକ୍ଷ ଓ ବିପକ୍ଷ ଲୋକ, ତାହା ଗ୍ରାମ ପଞ୍ଚାୟତର ମୁଖିଆ ଓ ସରପଞ୍ଚ ଜାଣିପାରନ୍ତି । ମୁଖିଆ ଓ ସରପଞ୍ଚ ହେବା ପରେ ସେମାନେ ବିପକ୍ଷ ଦଳପ୍ରତି ମୁହଁ ମୋଡ଼ି ଦିଅନ୍ତି । ପଞ୍ଚାୟତ ଜରିଆରେ ବିପକ୍ଷ ଲୋକ-ମାନଙ୍କୁ ସୁଯୋଗ ସୁବିଧା ଦେବା ଦୂରେଥାଉ, ବରଂ ନାନା ଷଡ଼ଯନ୍ତ୍ର କରି

ସେମାନଙ୍କୁ ହାଇରାଣ ହରକତ କରାଯାଏ । ନିର୍ବାଚନ ପରେ ବିପକ୍ଷ ଦଳପ୍ରତି ସରକାରୀ ଦଳର ଏହା ଦ୍ୱିତୀୟ ରଣ-ନୀତି । ନିଜ ପକ୍ଷର ସମସ୍ତ ଲୋକଙ୍କୁ ସୁବିଧା ସୁଯୋଗ ମଧ୍ୟ ମିଳେନାହିଁ । ଯେ ପର୍ଯ୍ୟନ୍ତ ସରପଞ୍ଚ ଓ ମୁଖିଆ ନହୋଇ ଥିବେ, ସେ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜର ବୋଲି କହୁଥାଆନ୍ତି । ନିର୍ବାଚିତ ହେବାପରେ ସବୁ ଭୁଲିଯାଆନ୍ତି । ନିଜର ପରିବାର ଓ କେତେକ ଦଲାଲଙ୍କୁ ଛାଡ଼ି ଦେଲେ ସେମାନେ ଆଉ କୌଣସି ଗାଁ ଲୋକଙ୍କ ପ୍ରତି ଧ୍ୟାନ ଦିଅନ୍ତି ନାହିଁ । ବ୍ଲକ ଅଫିସ ଋଣ, ଗୃହଜଳ, ଚହମ ଅଟା ବିତରଣ କ୍ଷେତ୍ରରେ ବ୍ୟାପକ ଦୁର୍ନୀତି ଦେଖାଦିଏ ।

ଗାଁର ମୁଖ୍ୟ ରାଜନୈତିକ ବିଚାର ଧାରା କଣ, ତାହା ଏପର୍ଯ୍ୟନ୍ତ ମୁଁ ବୁଝିପାରିନାହିଁ । ଅବଶ୍ୟ କିଛି ଲୋକ ବିଭିନ୍ନ ରାଜନୈତିକ ବିଚାର ଧାରାକୁ ସମର୍ଥନ ଜଣାଇ ଥାଆନ୍ତି । କିନ୍ତୁ ବ୍ୟାବହାରିକ ଓ ପ୍ରୟୋଗ କ୍ଷେତ୍ରରେ ସେ ସବୁର କିଛି ଅସ୍ତିତ୍ୱ ନଥାଏ । ଥରେ ମୋ ଗାଁର ସଡ଼କ ରାସ୍ତାକୁ କେନ୍ଦ୍ର କରି ଲୋକେ ନିର୍ବାଚନ-ବହିଷ୍କାର କରିଥିଲେ । ତା'ପରେ ଜଣେ ବ୍ୟକ୍ତିଙ୍କୁ ମୁଖ୍ୟ କରି ଭୋଟରେ ଜିତାଇ ଦିଆଯାଇଥିଲା । ଏହା ଦ୍ୱାରା କୌଣସି ରାଜନୈତିକ ବିଚାର ଧାରା ପ୍ରତି ଗୁରୁତ୍ୱ ଆରୋପ କରାଯାଇ ନଥିଲା । ନିର୍ବାଚନରେ ଠିଆ ହୋଇଥିବା ବ୍ୟକ୍ତି ଯଦି ମୋ ଗାଁର ଉଚ୍ଚ ଜାତି ହୋଇଥାଏ, କିମ୍ବା ମୋ ଗାଁର ସମ୍ବନ୍ଧ ହୋଇଥାଏ, ତେବେ ତାଙ୍କୁ ହିଁ ଭୋଟ ଦିଆଯାଏ । ଏତିକି ବେଳେ ଭିନ୍ନ ଜାତିର ଲୋକେ ମୋ ଗାଁରେ ନାନା ପ୍ରକାର ଗଣ୍ଡଗୋଳ ଉଆଣ କରନ୍ତି । ଯେଉଁ ଜାତି, ସଂପ୍ରଦାୟର ବୁଥ ଅକ୍ତିଆର କରିପାରନ୍ତି, ସେଇମାନେ ହିଁ ଜୟଯୁକ୍ତ ହୁଅନ୍ତି । କେତେଥର ମୋ ଗାଁ ବୁଥର ନିର୍ବାଚନ ବୁଥ ଅକ୍ତିଆର ଯୋଗୁ ଅବୈଧ ଘୋଷିତ ହୋଇଛି । ତଥାପି ଏହି ପ୍ରକ୍ରିୟା ବନ୍ଦ ହୋଇନାହିଁ । ଏହି କାରଣରୁ ଗାଁର କେତେକ ଲୋକଙ୍କ ମନରେ କ୍ଷୋଭ ଓ ଅସନ୍ତୋଷ ବଢ଼ି ବଢ଼ି ଚାଲିଛି ଏବଂ ଶ୍ରେଷ୍ଠ ଜାତିର ଲୋକେ ପ୍ରତିଦିନ ରାତିରେ ଟିପନ୍ ଦୁସାଧର ଝୁପୁଡ଼ିରେ ଏକାଠି ହୋଇ ସଂଗଠିତ ହେଉଛନ୍ତି । ପରିଣାମ କଣ ହେବ, ତା' କହିବା ମୁସ୍କିଲ ।

ସରକାର ଗାଁ ପାଇଁ କଣ କରିଛନ୍ତି ଏବଂ କଣ କରିବାକୁ ଯାଉଛନ୍ତି, ତାହା ଖବରକାଗଜରେ ଆପଣ ପଢ଼ିଥିଲେ । ସ୍ୱାଧୀନତା ପରେ ସରକାର ନିଶ୍ଚିତ ଭାବେ ଗାଁ ପାଇଁ ବହୁତ କିଛି କରିଛନ୍ତି, ଏଥିରେ ଟିକିଏ ସନ୍ଦେହ ନାହିଁ । କାର୍ଯ୍ୟ ଯେଉଁ ମାଧ୍ୟମ ଓ ଯେଉଁ ରୂପରେ କରାଯାଇଛି, ତାର ସମ୍ୟକ ବିବରଣୀ ମୁଁ ଏଠାରେ ପ୍ରଦାନ କରୁଛି ।

ମୋ ଗାଁ ପିଲାଙ୍କ ପାଇଁ ସରକାର ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଖୋଲିଛନ୍ତି । ପାଠଶାଳାର ତିନୋଟି କୋଠରୀ ମଧ୍ୟରୁ ଗୋଟିକରେ କୋରିବର

ସିଂହଙ୍କର ଗୋଖାଦ୍ୟ ଭର୍ତ୍ତି ହୋଇଛୁ । ଏହି ପାଠଶାଳାରେ ପିଲମାନେ ପଢୁଛନ୍ତି କି ନାହିଁ, ପାଠଶାଳା କେତେ ବେଳେ ଖୋଲୁଛୁ, ଶିକ୍ଷକ କେତେ ବେଳେ ଏବଂ କେତେ ଦିନପରେ ପାଠଶାଳାକୁ ଆସୁଛନ୍ତି, ଏହା ଜାଣିବା ମୋଟେ ସମ୍ଭବ ନୁହେଁ ।

ପିଲଙ୍କ ପାଠଶାଳା ଛଡ଼ା, ମୋ ଗାଁରେ ଗୋଟିଏ ପ୍ରୌଢଶିକ୍ଷା କେନ୍ଦ୍ର ରହିଛୁ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଏହି ପ୍ରୌଢଶିକ୍ଷା କେନ୍ଦ୍ର ଜଣେ ହେଲେ ପ୍ରୌଢ ବ୍ୟକ୍ତିଙ୍କୁ ସ୍ୱାକ୍ଷର କରି ପାରିନାହିଁ । ଅନ୍ୟ ଗାଁରେ ଏହିସବୁ ପ୍ରୌଢ ଶିକ୍ଷା କେନ୍ଦ୍ର କିପରି ଚାଲିଛୁ, ତା' ମୁଁ ଜାଣେ ନାହିଁ । ପ୍ରୌଢ ଶିକ୍ଷା କେନ୍ଦ୍ରର ଶିକ୍ଷକ ଓ ସୁପରଭାଇଜରମାନେ ଗାଁରୁ ଶୁଦ୍ଧ ଘିଅ ଓ ଶସ୍ତା ପନିପରିବା କିଣି ସହରରେ ବିକ୍ରି କରନ୍ତି । ବେତନ ସହିତ ଏହି ବ୍ୟବସାୟରୁ ମଧ୍ୟ ଭଲ ଦି ପଇସା ସେମାନେ ରୋଜଗାର କରନ୍ତି ।

ମୋ ଗାଁରେ ଗୋଟିଏ ପ୍ରାଥମିକ ଚିକିତ୍ସା କେନ୍ଦ୍ର ମଧ୍ୟ ରହିଛୁ । ଗାଁରେ ସୁବିଧାରେ ଚିକିତ୍ସା ସେବାପ୍ରଦାନ କରିବା ଏହି କେନ୍ଦ୍ରର ଅସଲ ଉଦ୍ଦେଶ୍ୟ । ଏଥିପାଇଁ ଜଣେ କଂପାଉଣ୍ଡର ଓ ଜଣେ ନର୍ସ ଏହି କେନ୍ଦ୍ରରେ ନିଯୁକ୍ତି ପାଇଛନ୍ତି । ସରକାରଙ୍କ ପକ୍ଷରୁ ଏହି କେନ୍ଦ୍ରକୁ ଦିଆଯାଇଥିବା ମାଗଣା ଔଷଧକୁ ସେମାନେ ଚଢ଼ାଦରରେ ବିକ୍ରି କରନ୍ତି । ଚିକିତ୍ସା ପ୍ରତି ଏମାନଙ୍କର ଆଗ୍ରହ ମୋଟେ ନଥାଏ । ନର୍ସର ବୟସ ଢ଼ଳିଯାଇ ଥିଲେ ବି ତା' ଦେହର ସୁଷମ ଗଠନ ଓ ଚଞ୍ଚଳ ନୟନ ଗାଁର ଟୋକା ଓ ବୁଢ଼ାଙ୍କୁ ଆକର୍ଷଣ କରେ । ସ୍କୁଲ ଓ ସ୍କୁଲ ବୋର୍ଡ଼ିଙ୍ଗର କୋଠରି, ବଗିଚାର ଅଂଧାରୁଆ ଗଛମୂଳ ତଳେ, ଖଳାର ନଡ଼ାଗଦା ଉହାଡରେ ବିଭିନ୍ନ ଲୋକଙ୍କ ସହିତ ସେ ଅନେକ ଥର ଧରା ପଡ଼ିଛୁ । ତେବେ ବି ସେଥିପ୍ରତି ତାର ଭ୍ରୂକ୍ଷେପ ନଥାଏ । ତା'ର ଦରମା ଯାହା, ସେଥିରୁ ସେ ବେଶୀ ରୋଜଗାର ଏଇ କାର୍ଯ୍ୟ କରିଥରେ କରେ । ବୃଦ୍ଧ କଉଡ଼ି ପଣ୍ଡିତଙ୍କ କଥାନୁସାରେ ତା' ପଛରେ କୁକୁର ଭଳି ଯେଉଁମାନେ ଗୋଡ଼େଇଥାନ୍ତି, ସେମାନଙ୍କୁ ଏପରି ଖେଳାଇବାକୁ ସେ ଗର୍ବ ଅନୁଭବ କରେ ।

ଆଉ କଂପାଉଣ୍ଡର ତେଣେ ଅନ୍ୟ କେଉଁ ସାଇକୁଯାଇ ଝିଅମାନଙ୍କ ସାଥିରେ ଆଖି ଲଢ଼େଇ କରେ । ସେ ଯେଉଁ ସ୍ଥାନମାନଙ୍କରେ ଏପରି କାର୍ଯ୍ୟ କରେ, ସେଇସବୁ କଥା ଗାଁ ବୈଠକରେ ଚର୍ଚ୍ଚା ଆଲୋଚନା କରାଯାଏ । ଗାଁର ଯୁବକମାନଙ୍କୁ ଏହି ସବୁ କାର୍ଯ୍ୟରେ ସୁଯୋଗ ସୁବିଧା ଦେଇ ସେମାନଙ୍କୁ ମଧ୍ୟ ସେ ଉତ୍ସାହିତ କରେ । ସେ ଏକଲା ଖାଇବା ବାଲା ଲୋକ ନୁହେଁ । ବଣ୍ଟାକୁଣ୍ଟା କରି ସମସ୍ତଙ୍କ ମନ ଜାଣି ସନ୍ତୁଷ୍ଟ କରିବା କଳା ତାକୁ ବେଶ ଜଣା । ତେଣୁ ଗାଁ ପକ୍ଷରୁ ସେ କୌଣସି ବିରୋଧର ସମ୍ମୁଖୀନ ହୁଏନାହିଁ ।

ଏଇ ସବୁ କେନ୍ଦ୍ରର ଭଲ ମନ୍ଦ ତଦାରଖ କରିବାକୁ କେତେ ସୁପରଭାଇଜର କମ୍ପା ଅଫିସର ଅଛନ୍ତି ବୋଲି ମୋ ଗାଁର କେହି ଜାଣନ୍ତି ନାହିଁ ।

ଅବଶ୍ୟ ବେଳେବେଳେ କେତେ ଭଦ୍ର ଲୋକ ହାତରେ ବ୍ୟାଗ ଝୁଲାଇ ଏଇ କେନ୍ଦ୍ରମାନଙ୍କୁ ଆସନ୍ତି ଏବଂ ଫଳେ ସ୍ପଷ୍ଟ ଅପ୍ରସ୍ତୁତ ହୋଇ ଫେରିଯାଆନ୍ତି। ଯେମିତି ମନେହୁଏ ସେମାନେ କୁଣିଆ ରୂପରେ ଅତିଥି-ସତ୍କାର ପାଇବା ପାଇଁ ଗାଁକୁ ଆସନ୍ତି।

ବୃଦ୍ଧାବସ୍ଥା ପେନ୍‌ସନ, ସ୍ୱତନ୍ତ୍ର-ସେନାନୀ ପେନ୍‌ସନ, ଏବଂ ବେରୋଜଗାରୀ ଭତ୍ତାର ବ୍ୟବସ୍ଥା ସରକାର କରି ଦେଇଛନ୍ତି। କିନ୍ତୁ ଏଇସବୁ ପାଇବାକୁ ହେଲେ ପ୍ରାର୍ଥୀମାନଙ୍କୁ ବିଭିନ୍ନ ଅଫିସ ଓ ଅଫିସ ଅଧିକାରୀଙ୍କ ପାଖରେ ଧାରଣା ଦେଇ ଅନେକ ହଇରାଣ ହରକତ ହେବାକୁ ପଡେ। ଏଇପାଇଁ ପ୍ରତ୍ୟେକ ସ୍ଥାନରେ କେଉଁ ପରିମାଣରେ ଘୁସ୍ ଦେବାକୁ ପଡେ, ତାହା ନିର୍ଦ୍ଧାରିତ ହୋଇ ସାରିଛି। ଯିଏ ନେବ, ସେ କିଛି ଦେବ। ଏହାହିଁ ସାଧାରଣ ନୀତି। ସରକାରଙ୍କ ଦ୍ୱାରା ମିଳୁଥିବା ଏହି ସୁବିଧାକୁ ସରକାରୀ କର୍ମଚାରୀମାନେ ମିଳିମିଶି ନିଜେ ଉଦରସ୍ଥ କରି ପକାନ୍ତି। ଯେଉଁମାନେ ଏଇସବୁ ପେନ୍‌ସନ ଭତ୍ତା ପାଇଁ ହକଦାର ନୁହନ୍ତି, ମୋଟା ଘୁସ୍ ଜରିଆରେ ସେଇମାନେ ହିଁ ଏଇସବୁ ପାଆନ୍ତି।

ଗାଁର ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ଧନ୍ଦା ସୃଷ୍ଟି କରିବା ନିମନ୍ତେ ବ୍ୟାଙ୍କ ଗାଈ, ମଇଁଷି, କୁକୁଡ଼ା, ଛେଳି, ଯୋଗାଏ। ମୋ ଗାଁର ଦୁଇଜଣ ଗୁଡ଼ିଆ ଭଗନ ଓ ଠେଗୁ, ଗୁଡ଼ିଆ ବେଉସା ଛାଡ଼ି କୌଣସି ପ୍ରକାରେ ବ୍ୟାଙ୍କ ନିକଟରୁ ମଇଁଷି ପାଇବାରେ ସଫଳ ହୋଇଗଲେ। ମଇଁଷି ଆସିଲା ପରେ, ସେମାନଙ୍କୁ କେଉଁଠି ଚରାଇବେ ? କ୍ଷେତ ପାଖ ବଗିଚାରେ ମଇଁଷି ଚରାଇଲେ, ସେମାନଙ୍କୁ ଜୀବିତାବସ୍ଥାରେ ଛାଡ଼ି ଦିଆଯିବ ନାହିଁ ବୋଲି ଚାଷୀମାନେ ଧମକ ଦେଲେ। ଏହି ଅବସ୍ଥାରେ ଠେଗୁ ଓ ଭଗନ କରିବେ କଣ। ବାଧ୍ୟହୋଇ ଦୁହେଁ ମଇଁଷି ଗୁଡ଼ିକୁ ବିକ୍ରି କରି ଦେଲେ। ଦୁହିଁଙ୍କର ଆଶା ସ୍ୱପ୍ନର ଉଆସ ଉଜୁଡ଼ିଗଲା। ପ୍ରତିକ୍ରିୟା ସ୍ୱରୂପ ଦୁହେଁ ଦୁସାଧର ଝୁପୁଡ଼ି ଘର ମେଳରେ ଯୋଗ ଦେଲେ।

ଗାଁର ଏଇ ସମସ୍ତ ଅସଙ୍ଗତି ସତ୍ତ୍ୱେ ଗାଁ ଲୋକେ ସହରୀ ପ୍ରଦୂଷଣରୁ ଦୂରରେ ରହି ନିଜର ଅସ୍ତିତ୍ୱ ଓ ପରିଚୟକୁ ବଜାୟ ରଖିପାରିଛନ୍ତି। ଏ ସଂକ୍ରାନ୍ତରେ ଅନେକ ପ୍ରାମାଣିକ ତଥ୍ୟ ମୋ ନିକଟରେ ମହଜୁଦ ଅଛି। ମୋ ଜାଣିବାରେ ସହରର ସମସ୍ତ ସୁବିଧା ଓ ସୁଯୋଗ ଗାଁରେ ମିଳିପାରିଲେ, ଗାଁ ନିଶ୍ଚିତ ଭାବେ ସ୍ୱର୍ଗ ରାଜ୍ୟରେ ପରିଣତ ହୋଇଯିବ। ସେତେବେଳେ ସହରରେ ଆଉ ରହିବାକୁ ଚାହିଁବେ ନାହିଁ।

ବିକଶିତ ଦେଶମାନଙ୍କର ଲୋକେ ସହର ଅପେକ୍ଷା ଗାଁରେ ରହିବାକୁ ଅଧିକ ପସନ୍ଦ କରନ୍ତି। ସେମାନଙ୍କର ଗାଁ ସବୁ ଆଦର୍ଶର ଗାଁ। ଆମ ଗାଁ ଗୁଡ଼ିକ ସେପରି କେବେ ହେବ ? ନିକଟ ଭବିଷ୍ୟତରେ ଏପରି ହେବାର ସମ୍ଭାବନା ଅଛି କି ? ●

(ଅନୁବାଦ : ଶ୍ରୀ ରମେଶ୍ୱର ପଟ୍ଟନାୟକ)

## ଗଳ୍ପ ।। "ଗୁପ୍‌ଚୁପ୍‌" • ଉପେନ୍ଦ୍ର କୁମାର ଘୋଷ

ନଈକୂଳ । ଅଦୂରରେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ନିରବଚ୍ଛିନ୍ନ ଭାବରେ ପଡ଼ିରହିଛି । ନଈକୂଳକୁ ଲାଗି ଏକ ଅନାବନା ଗଛଭରା ରାସ୍ତା ବି ଯାଇଛି । ଲୋକଙ୍କ ଯିବା ଆସିବା ପାଇଁ ସାଧାରଣତଃ ଏହା ଏକ ପାଦଚଲା ବାଟ । ଅନେକ ସମୟରେ ବାଟୋଇମାନେ ତାକୁ ଆପଣାର କରିନିଅନ୍ତି । କିନ୍ତୁ ସେହି ଆପଣାର କରିନେବାର ମଣିଷର ସ୍ୱାର୍ଥ ନିଶ୍ଚୟ ଥିବ, ନହେଲେ ସେମାନେ ତାକୁ ଆଦର କରନ୍ତେ କାହିଁକି ? ସେହିମାନଙ୍କ ଅତି ପରିଚିତ ଆଖପାଖ ବରଗଛ ସବୁ । ଖରାଦିନେ ଛାଇତଳେ ବିଶ୍ରାମ ନିଅନ୍ତି; ନଈପାଣି ଆଣି ରନ୍ଧାବଢ଼ା ବି କରନ୍ତି ।

ଆଜି ଅନ୍ୟ ଦିନପରି ବାଟୋଇମାନେ ରନ୍ଧାବଢ଼ା ସାରି ମୁଠାଏ ଖାଇ ପିଇ ନିଜ ନିଜ ବାଟରେ ଚାଲିଗଲେଣି । କିନ୍ତୁ ରହିଯାଇଛି ଅଳିଆ ନିଆଁ, ଧୁକୁଧୁକୁ ହୋଇ ଜଳି ଉଠୁଛି ଉଠାଣି ପବନରେ । କିଛି ଦୂରରେ ଜଣ, ଭଙ୍ଗା-ଗଢ଼ାମନର ତାଲେ ତାଲେ କ'ଣ ସବୁ ଭାବି ଚାଲିଛି । ଆଉ ଭାବନାରେ ସାର ନିର୍ଯ୍ୟାସ ଯାହା ପଡ଼ିଲା ଟିପି ନେବାକୁ ଇଚ୍ଛା କରୁଛି । ତେଣୁ କଲେଜର ଆରାମୀ ଚେୟାରକୁ ଭୁଲି ନଈକୂଳରେ ଏକ ଟେକଖଦଡ଼ିଆ ପଥର ଉପରେ ବସି ମନକୁ ମନ ଅନର୍ଗଳ ଲେଖିଚାଲିଛି । ପାଖରେ ତା'ର ଚିରସାଥୀ କଲମ ଆଉ କାଗଜର ଖାତା ଖଣ୍ଡିକ । ଦ୍ରୁତ ଲେଖନୀ ଚାଳନାରେ କାଗଜ ଆକଣ୍ଠ ହୋଇଗଲାଣି । ତା'ପରେ ପନ୍ନପରେ ଧଳା କାଗଜ ଭିତରେ କଲମମୁନ ବାଟଘାଟ ଭୁଲି ଗଲାପରି ମାଡ଼ି ଚାଲିଛି ! କିନ୍ତୁ ସ୍ୱପ୍ନ ଲାସୀ ଲେଖକର କାଳ୍ପନିକ ରେଖାଚିତ୍ର ନୁହେଁ କି କବି କଳ୍ପନାର କାମଧେନୁ ନୁହେଁ, ବରଂ ପ୍ରକୃତିର ଏକ ନିଷ୍ଠୁର ବାସ୍ତବତା । ଲେଖି ଲେଖି ମନଟା ଏତେ ମଜ୍ଜିଗଲା ଯେ ସ୍ଥାନ, କାଳ ପୁଣି ଗତାଗତ ଲୋକଙ୍କ ପଥ ନଜର ପଡୁନାହିଁ । ଏତିକିବେଳେ ହଠାତ୍ ନିକଟ ଦୂରତ୍ୱର "ଭାଇ" ଡାକରେ ତା'ର ମୌନତା ଆଉ ନିମଗ୍ନତା ଭାଙ୍ଗିଗଲା । ଚାହିଁ ଦେଖିଲା ବେଳେ ତା' ଆଗରେ ଠିଆ ହୋଇଛି, ମିଲୁ—ତା'ର ଜଣେ ସମ୍ପର୍କୀୟ ଭାଇ । ଦୁଇ ବର୍ଷ ତଳେ ସେ ବି ପଢୁଥିଲା ଏଇ ପାଖ କଲେଜରେ । କିନ୍ତୁ ଆଜି ସେ ଅସ୍ନୁଟେଦାଧ୍ୟ ଛାତ୍ର । ଗାଧୁଆ ତୁଠରେ ହରକୁ ତନ୍ମୟ ଭାବରେ ଲେଖୁଥିବା ଅବସ୍ଥାରେ ଦେଖି

ଏପରି ସ୍ଥାନରେ ପୁଣି ଏ ଅସମୟରେ ଲେଖୁଥିବାର କାରଣ ସେ କିଛି ଜାଣି ପାରିଲା ନାହିଁ । ତା' ପରେ ଡାକିଲା—"ଭାଇ" !

ପୁରୁପୁରି ପ୍ରକୃତସ୍ଥ ନହୋଇ ଦରଭଙ୍ଗା ସ୍ୱରରେ ଧୀର ଜବାବ୍ ଦେଲା—"ଉଁ" ।

"ଏଠାରେ ତୁ କ'ଣ କରୁଛୁ ?"

"ଲେଖୁଛି ।"

"କ'ଣ ?"

"ଆତ୍ମ କାହାଣୀ !"

"ଆତ୍ମ କାହାଣୀ !" ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ିଲା ମିଲୁ । ଏକଥାର ମର୍ମ ସେ କିଛି ବୁଝି ପାରିଲା ନାହିଁ । ମନେ ମନେ ପୁଣି ଭାବିଲା—'କଣ ଗାଈର ?' ତା'ପରେ ତା' ମନରେ ପୁଣି ଭାବାନ୍ତର ଆସେ । 'ନା······ଏ କେମିତି ହେବ ! କାହିଁ ତୃତୀୟ ଶ୍ରେଣୀ, କାହିଁ ପୁଣି କଲେଜ ପାଠ ! ତଥାପି ମନେ ଚିନ୍ତାକଲା—'ଆଧୁନିକ ଯୁଗର ଲେଖାରେ ବେଳେବେଳେ ମୁଣ୍ଡଗଣ୍ଡି କିଛି ଜାଣି ହୁଏନା । ତେବେ କ'ଣ ଭାଇ ବି ଏଧରଣର ଲେଖକ ପାଲଟି ଯାଇ-ଥିବ ? ନା—ନିଜକୁ ନ ପୁଚ୍ଛାଇଲା ଭଳି କଥା ଲେଖିବାକୁ ସେ ତ ଭଲ ପାଏନା ! ଏପରି ସ୍ଥଳେ ସେ କଥା ଭାବିବା ନିହାତି ଭୁଲ ! ତେଣୁ ଜାଣିବାକୁ ଇଚ୍ଛାକରି ମିଲୁ ପଚାରିଲା—"କାହାର ?"

"ବର ଗଛର ।"

ମିଲୁ ଏବେ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲା ଯେ ସେ ଯାହା ଭାବୁଥିଲା ବାସ୍ତବରେ ତାହା ହୋଇଗଲା । ତା' ମତରେ 'ବରଗଛର ଆତ୍ମକାହାଣୀ' ବସ୍ତୁଟି ଗୁଡାଏ ଆତ୍ମାଭିମାନୀ ଆଧୁନିକ ଲେଖକଙ୍କ ଅଜବ୍ ଚିନ୍ତାଧାରା ପଦ୍ଧତି ସାମିଲ ହୋଇଗଲା । 'ଆତ୍ମକାହାଣୀ ପୁଣି ବରଗଛର ?' ହସି ହସି ବେଦମ୍ ହୋଇ ମିଲୁ କହିଲା—"କଲେଜରେ ପଢି ଲେଖୁଛୁ ଏତେ ମାମୁଲି କଥାଟିଏ ? ଏକଥା ଜାଣିଲେ କ୍ଲାସ୍‌ମେଟମାନେ କ'ଣ କହିବେ ?"

"କ'ଣ ଆଉ କହିବେ—ଗର୍ଭିଲଆ କ ମରହଣ୍ଟିଆ ବୋଲିବେ ! କିନ୍ତୁ ଟିକିଏ ଉପର କ୍ଲାସରେ ପଢିଛୁ ବୋଲି କ'ଣ ନିଜକୁ ବି ଭୁଲିଯିବ ? ଅ, ଆ, ଠାରୁ ଆରମ୍ଭ ନକରି କ'ଣ ଏକା ଥରକେ ଗଳ୍ପ, ପ୍ରବନ୍ଧ ଲେଖିବ ? ବୁଝିଲୁ ଭାଇ ! —ମୂଳକୁ ଧରିଲେ ସିନା ଚୂଳକୁ ପହଞ୍ଚ ହେବ । ତେଣୁ ଆଗେ ନିଜ ଆଖି ଆଗର ଦୃଶ୍ୟ ଲେଖିବ, ତା' ପରେ ବାକି କଥା ।"

"କିନ୍ତୁ ବରଗଛ ପାଖେ ନଲେଖି—?"

"ଏ ସ୍ଥାନକୁ ଭଲ ମନେ କଲି ।"

"ମାନେ—?"

"ମାନେ- ଘାସ ଛାଇ ଅନ୍ଧାର ପଣ । ଦୂରରୁ ସିନା ପାହାଡ଼ର ଦୃଶ୍ୟ ରମଣୀୟ ଦେଖାଯିବ ।"

"ତେବେ ପାଖେ ଥାଇ କ'ଣ ଲେଖି ହୁଏନା ?"

"ଅଧ ପଣତଯ୍ଯେ ଗୌରବ ନଷ୍ଟ । ଶୁଣ ଗଛ ତଳେ ନୁହେଁ କ ନଈ ଭିତରେ ବ ନୁହେଁ, ଦୁଇଟିର ସୀମାରେଖାରେ । ଏଠାରୁ ଦୁଇଦଗକୁ ବେଶ୍ ସମାନ ଭାବରେ ଦେଖି ପାରିବ ।"

ହରି କହୁଥିବା କଥାର ରହସ୍ୟ ବୁଝି ନପାରି ଉତ୍ସାହର ସହିତ ମିଲୁ ପଗ୍ଋରିଲା,—

"ତା' ପରେ କ'ଣ କରିବୁ ?"

ଭାବ ବହ୍ୱଳ ହୋଇ ହରି କହିଲା—"ମାପିବ—କାହାର ଧୈର୍ଯ୍ୟ କେତେ, ପ୍ରସ୍ଥ କେତେ, ଉଚ୍ଚତା କେତେ !"

"କ'ଣ ସବୁ କହି ଗ୍ଋଲିଛୁ ଯେ—?"

"ଯାହା କହିବା କଥା । ଏବେ ଗ୍ଋହିଁ ଦେଖ—ସେହି ନଈଟାକୁ । ତା'ର ମୁଅ ମୁହଁରେ ଶୃଙ୍ଖିଳ ପଡରଟାଏ କପରି ଅଶାଯ୍ୱନ୍ତ ହୋଇ ଅନୁ-କୂଳରେ ଭସିଯାଉଛି ।"

"ବାସ୍ତବକ୍ କଥାଟି ତାତ୍ପର୍ଯ୍ୟପୂର୍ଣ୍ଣ । ଆଉ ମନେ ହୁଏ—ଏହା ଭିତରେ ନଶ୍ଚୟ କିଛି ଗୂଢ଼ ରହସ୍ୟ ଲୁଚ ରହିଛି ।"

ହସକୁ ସମ୍ଭାଳି ନପାରି ମୁଲୁରୁ ମୁଲୁରୁ ହସି ହରି କହିଲା—"ଭାବ-ପ୍ରବଣ ହୋଇଗଲୁ, ମିଲୁ ! ଆରମ୍ଭ ହେଉଣୁତ ଖାଲି ମୋଟା ମୋଟା ପ୍ରଶଂସା କରି ଗ୍ଋଲିଛୁ ! ଏଣୁ ମୁଁ ଭାବୁଛି—ତୁ ନଶ୍ଚୟ କୌଣସି ତୋଷାମଦଆର ଫାନ୍ଦରେ ଥରେ ଅଧେ ପଡ଼ିଥିବୁ ।"

"ତୋଷାମଦଆ !"

"ହଁ, ନୁହେଁ ଆଉ କ'ଣ ! ସେମାନେ ଯେପରି ଫୁସୁଲେଇ କଥା ଆଦାୟ କରନ୍ତି, ତୁ ବ ଏକଦମ୍ ସାମିଲ ହୋଇଯାଉଛୁ ।"

"ତୁ ଯେ ଏସବୁ କ'ଣ କହି ଯାଉଛୁ ମୁଁ କିଛି ଠିକ୍ କରିପାରୁନାହିଁ । ବୁଝିବାଟା ତ ବଡ଼ ମୁସ୍କିଲ୍ ।"

ବୁଝିବୁ, ମିଲୁ, ନଶ୍ଚୟ ବୁଝିବୁ । ଆଉ ଏହିଠାରେ ବୁଝାଇ ଦେବ ।

ଟିଉସନ୍ କରିବାକୁ ପଡ଼ିବ ନାହିଁ କି ପୋଷିବାକୁ ପଡ଼ିବ ନାହିଁ, ଆଖି ସାମ୍ନାରେ ଦେଖାଇ ଦେବ ।"

"କ'ଣ ଦେଖିବ ?"

ଅଙ୍ଗୁଳି ନିର୍ଦ୍ଦେଶ କରି ହସି କହିଲା—"ସେହି ଝଙ୍କାଳିଆ ବରଗଛ ପାଖେ ଥିବା ଖୁଣ୍ଟା ବରଗଛ ।"

"କ'ଣ ଅଛି ସେଠାରେ ?"

"ଯାହା ଚାହିଁବୁ । ଦେଖୁଛୁ ତାକୁ—କିପରି ସମସ୍ତେ ହତାଦର କରୁଛନ୍ତି । ଗଛଟା ଖାଲି ଶୁଖି ଶୁଖି ମରୁଛି । କିଏ ବା ଅଛି ଯେ ତା' ମୁହଁରେ ଢୋକେ ପାଣିଦେବ ! ଯଦିଓ ଆଜି କାଠୁରିଆର କୁରାଢ଼ି ତାକୁ ଧମକ ଦେଉଛି, ଆଘାତ ବି କରୁଛି; ତଥାପି ସେ ବଞ୍ଚି ରହିବାକୁ ଚାହେଁ ।"

"ସେ ତ ଦିନେ ନା ଦିନେ ଝଡ଼ିବ । କିନ୍ତୁ ତା' ପାଇଁ ତୁ କାହିଁକି ଏତେ ଭାବ ଗମ୍ଭୀର ହୋଇ ପଡ଼ୁଛୁ ?"

"ଆଜି ସିନା ମୁଁ ହେଉଛି, କାଲି ତୁ ବି ହେବୁ ।"

ମୁଁ ବି ହେବି ?"

"ହଁ, ନହେବୁ କିପରି ? ତୁ ଆଉ ମୁଁ ତ ଏକା କାଠର । ଯେତେବେଳେ ନିଜ ଉପରେ ତୁ କରିବ ସେତେବେଳେ ଆଉ ନବୁଝି ରହିପାରିବୁ ନାହିଁ ।"

ହଠାତ୍ ମିଲୁର ମନେ ପଡ଼ିଗଲା ଅଜାବୁଢ଼ାଙ୍କ କଥା—"ତଳ ବରଡ଼ା ଖସୁଛି, ଉପର ବରଡ଼ା ହସୁଛି, ରହ ରହରେ ଉପର ବରଡ଼ା ତୋ' ଦିନ କାଳ ଆସୁଛି ।" ଏବେ ମିଲୁ ଦୃଢ଼ ଭାବରେ ଧରିନେଲା ଯେ ଯଦିଓ ଖୁଣ୍ଟା ବରଗଛ ସର୍ବହରା ହେଲାଣି ତଥାପି ସେ ବଞ୍ଚିବାକୁ ଆଶା କରେ, କରୁଛି ଅଭି କରୁଥିବ ମଧ୍ୟ । ତା'ପରେ କଥାର ଭାବ ରହସ୍ୟ ଠଉରେଇ କହିଲା—"ତୁ ଠିକ୍ କହୁଛୁ, ଭାଇ ! ତୋ କଥାର ମର୍ମ ମୁଁ ବର୍ତ୍ତମାନ ବୁଝିଲି ।"

'ସତରେ କ'ଣ ମିଲୁ ବୁଝିଗଲା ? କ'ଣ ବୁଝିଲା—ଆଶାକୁ ! ଏହାର ଗୁରୁତ୍ୱ ଯେ କେଉଁଠାରେ ବେଶି ନ ହୋଇଛି ତା' ନୁହେଁ । ତେବେ ମିଲୁର ଭାବ ରାଜ୍ୟରେ ଏହାର ପ୍ରଭାବ କେତେଦୂର ବିସ୍ତାରିତ—କଳନା କରିବାଟା ହିଁ ବଡ଼ ମୁସ୍କିଲ୍ ।' କିନ୍ତୁ ଯେହେତୁ ସେ ବୁଝିଥିବା ପ୍ରକାଶ କରିଦେଇଛି, ତେଣୁ ଆଉ ତା'ର ଜ୍ଞାନପରିସରକୁ ମାପିବା ପାଇଁ ହରି ଇଚ୍ଛାକଲା ନାହିଁ । ବରଂ ମିଲୁ ବୁଝିପାରିଲା ବୋଲି ଆହୁରି ବ୍ୟଗ୍ର ହୋଇ କହିଲା—"ଖାଲି ସେତିକି ନୁହେଁ । ଏବେ ଚାହିଁ ଦେଖ—ପାଖରେ ଥିବା ସେହି ଝଙ୍କାଳିଆ ବରଗଛ ଆଡେ । କପୋତ-କପୋତୀ ସବୁ ତା' ଉପର ଦେଇ ଫରଫର ଉଡ଼ି ବୁଲୁଛନ୍ତି । କାହିଁକି ଜାଣୁ ? —ଗଛ ତଳେ ମୁଗ ଅଛି, ଚାଉଳ ଅଛି ।"

"ତାହାତ ପକ୍ଷୀମାନଙ୍କ ଖାଇବା ଜିନିଷ । କିନ୍ତୁ ଚଳକୁ ନ ଓହ୍ଲାଇବାଟା କଣ ସେମାନଙ୍କ ବୋକାମି ନୁହେଁ ?"

"ତାହା କପରି କୁହାଯିବ ? ଖାଦ୍ୟ ପିନା ଅଛି, କିନ୍ତୁ ଖାଇବା ପାଇଁ ନୁହେଁ, ଖାଲି ଦେଖିବା ପାଇଁ ।"

"ତେବେ ତାହା କ'ଣ ଦେଖିବାକୁ ସୁନ୍ଦର ଅଛି ଖାଇବାକୁ ମିଠା ନୁହେଁ ?"

"ମିଠା ନିଶ୍ଚୟ । କିନ୍ତୁ କ'ଣ କରାଯିବ ? —ଗାଇ ମାରିଲେ ମଲୁ, ଗାଇକୁ ମାଇଲେ ମଲୁ । କାହିଁରେ ବି ନିସ୍ତାର ନାହିଁ ।"

"ତେବେ କ'ଣ ସେମାନେ ଉପରେ ଉପରେ କେବଳ ଘୂରି ବୁଲୁଥିବେ ?"

"ହଁ, ନହେଲେ ଅଉ କ'ଣ କରିବେ ? ଖାଲି ଦେଖି ଦେଖି ଯାହା ତୃପ୍ତି ପାଇବେ ପାଆନ୍ତୁ ।"

ମିଲୁ ବୁଝି ନପାରି ନୀରବ ହୋଇ ଶେଷରେ ଏକ ଲମ୍ବରେ ହରି ମୁହଁକୁ ଚାହିଁ ରହିଲା । ମିଲୁର ଜିଜ୍ଞାସା ଭାବକୁ ଜାଣି ହରି କହିଲା—"ବୋଧହୁଏ ବୁଝିପାରିଲୁ ନାହିଁ ? ଆରେ ଭାଇ, ମୁଁ ତ ତେଲୁଗୁ କି ଉର୍ଦ୍ଦୁରେ କହୁନାହିଁ; କହୁଛି ଖାଣ୍ଟି ଓଡ଼ିଆରେ ।"

"ଯେତେ ଖାଣ୍ଟି ଓଡ଼ିଆରେ କହିଲେ ବି ତୋ କଥା ବେଳେବେଳେ ବୁଝି ହେଉନାହିଁ ।"

"ବୁଝାଇବା ବି ସେତେ ସହଜ ନୁହେଁ, ମିଲୁ ! ଆଧୁନିକ ଭାବ-ଭଣ୍ଡାର ଅର୍ଥ କ୍ଷଣକୁ କ୍ଷଣ ବଦଳୁଥାଏ—ସିନେମାର ରେଲ୍‌ପରି । ଅଉ ସେ କବି ଲେଖକଙ୍କୁ ପଚାରିଲେ ବି ଏଣୁ ତେଣୁ ଦେଖେଇ 'O' କରିଦେବେ ସିନା, ପରିଷ୍କାର ଆଶା କରିବା ଠିକ୍ ହେବ ନାହିଁ । ଆଉ ତୃତୀୟ ପୁରୁଷମାନେ ଖାଲି ଜିଜ୍ଞାସୁ ମନରେ ଚାହିଁଥିବେ ତାଙ୍କ ମୁହଁର ଉତ୍ତରଟାକୁ । ନମ୍ବ୍ର ହୋଇ ପଡ଼ୁଥିବେ ଅନ୍ୟମାନଙ୍କ ବୁଝାଇବା ଶୁଣିଶୁଣି । ଏଗୁଡ଼ିକ ଯେ କଥାରେ କଥାରେ ବଡ ମୁସ୍କିଲ୍‌ରେ ପକାଏ ! ତେଣୁ ସେମାନେ ବି ହବତ ହୋଇ କହି ଦେଉଥିବେ ତାଙ୍କ ଦ୍ୱାରା ଯାହା ସମ୍ଭବ । କ'ଣ ଅଉ କରାଯିବ ? ମତେ ସିନା ମନେ ମନେ ଝପ୍‌ସା ହେଉଥିବୁ; କିନ୍ତୁ ଥରେ ଦେଖ୍ ଏଯୁଗକୁ ! ବଞ୍ଚିବାକୁ ହେଲେ କେବଳ ଦରକାର—ଗୁପ୍‌ଚୁପ୍, ଗୁପ୍‌ଚୁପ୍ ।"

'ଗୁପ୍‌ଚୁପ୍' ! ଏହାର ମାନେଟା କ'ଣ ? ଏହା କପରି ଦିଶେ, କେମିତି ଲାଗେ, ବସ୍ତୁ ନା ଧୂମ ??? ମନେ ମନେ ଅନେକ ଭାବ ନେଇ ତର୍କଣା

କଣ ଖୁଜୁଥିଲା, ମିଲୁ ! ହରିର ପ୍ରତ୍ୟେକ ଭାବଭଙ୍ଗୀ ଆଉ ଭାଷାରେ ସାଙ୍କେତିକତା ଯେ ଲୁକ୍କାୟିତ ଥିଲା, ମିଲୁ କେବଳ ସେତିକ ଠଉରାଇ ଥିଲା । କିନ୍ତୁ ମୁଣ୍ଡ ଉପରେ ସୂର୍ଯ୍ୟଙ୍କ ଅବସ୍ଥାନର କ୍ରମବର୍ଦ୍ଧିଷ୍ଣୁ ଉଚ୍ଚତା ସେତେବେଳେ ମିଲୁ ସମ୍ପୂର୍ଣ୍ଣ ଭାବରେ ଭୁଲି ଯାଇଥିଲା । ତେବେ ତଳିପାରେ ତତଲା ମାଟିର ସ୍ପର୍ଶ କ୍ରମେ ତୀବ୍ର ହେବାରୁ ସେ ଅପରାହ୍ଣର ସୂଚନା ପାଇ ଉପରକୁ ଚାହିଁ ଦେଖିଲା ବେଳେ ତା'ର ଅନୁମାନ ଠିକ୍ ହୋଇଛି । ତେଣେ ହରିର ତନ୍ମୟତା ଧୀରେ ଧୀରେ ହ୍ରାସ ହେବା ସଙ୍ଗେ ସଙ୍ଗେ ସ୍ପର୍ଶେନ୍ଦ୍ରିୟର ତୀବ୍ରତା ସଚେତନ ହେବାରୁ ପଥର ଉପରେ ତତଲା ସ୍ପର୍ଶ ଅନୁଭବ କଲା । ଏହାପରେ ଉଭୟେ ଘରମୁହାଁ ହେଲେ । ତତଲା ମାଟିରେ ପାଦ ଦୁଇଟି ଯେମିତି ସିଝିଗଲା ପରି ଲାଗୁଥିଲା । ମୁଣ୍ଡ ଉପରଟା ମଧ୍ୟ ଖଇ ଫୁଟିଲା ପରି ଲାଗୁଥିଲା । ତେବେ ଏସବୁ ଯେତେ ବ୍ୟତିବ୍ୟସ୍ତ କରୁଥିଲା, ତା' ଠାରୁ ଅଧିକ ବ୍ୟତିବ୍ୟସ୍ତ କରୁଥିଲା, —'ଗୁପ୍‌ଚୁପ୍' ଶବ୍ଦଟି । ଏହିପରି ଯାଏଲା ପରିବେଶରେ ଭାବ ଭାବ ହରି ସାଙ୍ଗରେ ମିଲୁ ଘରର ଦୁଆର ବନ୍ଧ ଯାଏଁ ଚାଲି ଆସିଥିଲା । କିପରି ଆସିଥିଲା — ସେ ବିଷୟରେ କିଛି ଜାଣି ପାରିନଥିଲା । ବାଟରେ ଖାଲି 'ଗୁପ୍‌ଚୁପ୍' ଶବ୍ଦର ମାନେଟା ତାକୁ ଏମିତି ଧନ୍ଦେଇ ପକେଇ ଥିଲା ଯେ ହରିକୁ ତା'ର ମାନେଟା ବୁଝାଇ ଦେବାକୁ ବାଧ୍ୟ କରିଥିଲା । କିନ୍ତୁ ମଣିଷ ମନରେ ବେଳେବେଳେ ଏମିତି ଗୋଟିଏ ଗୋଟିଏ ଅଖାଡ଼ୁଆ ଶବ୍ଦ ଚମକ ଖେଳାଇ ଦେଇଥାଏ ଯେ ମନେ ମନେ ଘାଣ୍ଟି ଚକଟି ହେବା ହିଁ ସାର ହୁଏ । ହରି ଆଉ ମିଲୁ ମନରେ ତାହାହିଁ ଗଣ୍ଡଗୋଳ ସୃଷ୍ଟି କରୁଥିଲା । ଶେଷରେ 'ଗୁପ୍‌ଚୁପ୍'ର ଅର୍ଥଟାକୁ ହରି ବିଶଦ ଭାବରେ ବୁଝାଇବା ପୂର୍ବରୁ ଘରକାନ୍ଥରେ ଲାଗିଥିବା ଗୋଟାଏ ଫିଉଜ ବଲ୍‌ବ ଆଡ଼କୁ ଚାହିଁ ରହିଥିଲା..... ।

(ଏହା ଏକ ପ୍ରତୀକ ଧର୍ମୀ ଗଳ୍ପ । ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଦ୍ୱିତୀୟ ଛାତ୍ରାବାସ ଆନୁକୂଲ୍ୟରେ ହୋଇଥିବା କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିଲା ।)

□ ଉପାଧ୍ୟୁତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର,

## ଏକାଙ୍କୀକା ।। ପୌଷ ଫଗୁଣ ଗୀତ....

• ଶରତ ନାରାୟଣ ବେହେରା

[ସାଧାରଣ ମଞ୍ଚସିଏ । ସାଧାରଣ ବେକଡ୍ରପ ଓ ଉଇଙ୍ଗସ୍ ଝୁଲୁଥିବ । ପରଦା ଉଠିଲା ବେଳକୁ ପ୍ରବେଶ କଲା ବସୁମ୍ବ, ଓଠରେ ସିଗାରେଟ । ବୟସ କୋଡ଼ିଏରୁ ପଚିଶ କର୍ଷ । ଆଧୁନିକ ପୋଷାକ । ମୁଣ୍ଡର ବାଳ କାନ ଢାଙ୍କୁଛି । କେଇ ମୁହୂର୍ତ୍ତ ଠିଆ ହୋଇ ରହିବା ପରେ ଅସ୍ଥିର ପଦଚାରଣ ଆରମ୍ଭ କରିଦେଲା । ସିଗାରେଟ ଟାଣିବାର ଭଙ୍ଗୀ ଓ ଚାହାଣୀ ଲକ୍ଷ୍ୟ କଲେ, କିଛି ଗୋଟିଏ ଗମ୍ଭୀର ଭାବରେ ଚିନ୍ତା କରିବାକୁ ଚେଷ୍ଟା କଲେବି ମନସ୍ଥିର କରିପାରୁ ନାହିଁ ପରି ଜଣାପଡ଼ୁଛି ।
କିଛି ସମୟ ପରେ ପ୍ରବେଶ କଲେ ଯଶୋବନ୍ତ । ବୟସ ଷାଠିଏ ବା ଅଧିକ । ଚେହେରା, ପୋଷାକ, ହାତର ବାଡ଼ି, ଆଖିର ଚାହାଣୀ ସମ୍ଭ୍ରାନ୍ତ ବଂଶର ପରିଚୟ ଦିଏ । ବସୁମ୍ବର ସାମନାରେ ଠିଆ ହୋଇ ପଞ୍ଚ ଥରେ ଆପାଦମସ୍ତକ ନିରୀକ୍ଷଣ କଲେ ବେଶ ଅଭିଜାତ ଭଙ୍ଗିରେ । ବସୁମ୍ବ କିନ୍ତୁ ଭ୍ରୂକ୍ଷେପ ନକରି ବାଟକାଟି ଚାଲିଗଲା ।]

ଯଶୋବନ୍ତ (ପଛରୁ ଡ଼ାକଲେ) ୟଙ୍ଗମେନ...... ।

ବସୁମ୍ବ— (ପଛକୁ ଫେରି ସନ୍ଦେହ ଆଖିରେ ଚାହିଁ) ମତେ ଡ଼ାକଲେ ?

ଯଶୋବନ୍ତ—ଟଉ କଣ ସେହି ପାହାଡ଼କୁ ଡ଼ାକିଲି ? ଝରଣାକୁ ଡାକିଲି ? (ହାତ ବଢ଼ାଇ ଯେଉଁ ଦଗକୁ ଇଙ୍ଗିତ କଲେ ସେ ଦଗରୁ ଭାସି ଆସିଲା ଏକ କଲକଲ ନାଦମୟ ଝରଣାର ଆବାହ ସଙ୍ଗୀତ ଟେପ ରେକର୍ଡରରୁ)

ବସୁମ୍ବ— (ଆବହ ସଙ୍ଗୀତ ଦଗକୁ ଅନାଇଲା)

ଯଶୋବନ୍ତ—କଣ ନା' ?

ବସୁମ୍ବ— (ଫେରି ଚାହିଁ) ବସୁମ୍ବ ।

ଯଶୋବନ୍ତ—(ବସୁମ୍ବରେ) ବସୁମ୍ବ !!

ବସ୍ତୁସ୍ତ— କଣ ବସ୍ମିତ ହୋଇଗଲେ ମୋର ନାମକରଣରେ ?

ଯଶୋବନ୍ତ—ନା । ବସ୍ମିତ ହେବାର କଣ ଅଛୁ ? କଛୁ ନାହିଁ ।
ତୁମର ସାବ୍ରଜଗତ ଯେତେବେଳେ ଆମ ପାଇଁ ଗୋଟିଏ ବସ୍ତୁସ୍ତ,
ତୁମର ନାମ କରଣର ଯଥାର୍ଥତାରେ ବସ୍ମିତ ହେବ କାହିଁକ ?

ବସ୍ତୁସ୍ତ— (ହସିବା)

ଯଶୋବନ୍ତ—(ଅଭ୍ଜାତ ଠାଣିରେ) ଏଇ ପଡ଼ଆରେ ଏକୁଟିଆ କଣ କରୁଛ ?

ବସ୍ତୁସ୍ତ— ଏକୁଟିଆ ? ପାହାଡ଼ ଅଛୁ, ଝରଣା ଅଛୁ, ଗଛଅଛୁ, ଫୁଲମାନେ
ଅଛନ୍ତି······ଆଉ ଆପଣ ବ ଅଛନ୍ତି ।

ଯଶୋବନ୍ତ—କଣ କରୁଛ, ମାନେ ପଢ଼ାପଢ଼ି······ ? ଚାକଣ ବାକଣ······?

ବସ୍ତୁସ୍ତ— ଏମ୍. ଏ. ପାସ କରି······ ।

ଯଶୋବନ୍ତ—(ବସ୍ତୁସ୍ତଙ୍କୁ କଥା ଶେଷ କରିବାକୁ ନଦେଇ) ଏମ୍. ଏ ପାସକରି
ବେକାର ହୋଇ ବୁଲୁଛ । ଚାକରି ଖୋଜଲେ ବ ମିଳୁନାହିଁ ।
କ ଯୁଗ ହେଲ କେଜାଣି—ଖାଇବାକୁ ନାହିଁ, ପିନ୍ଧିବାକୁ ନାହିଁ ।
ପିଲଙ୍କ ପାଇଁ ଚାକରି ନାହିଁ । ଯେଉଁଆଡେ ଦେଖିବ ବଶୃଙ୍ଖଳା,
ଉଚ୍ଛୃଙ୍ଖଳା···ଯଥେଚ୍ଛାଚାର । ହୁଁଃ··· ! ଆମର ସେ ଅନେକ
ଭଲ ଥିଲ ।

ବସ୍ତୁସ୍ତ— (ସିଗାରେଟରେ ନିଆଁ ଲଗେଇ ଯଶୋବନ୍ତଙ୍କ ଆଡ଼େ ପେକେଟଟା
ବଢେଇ) କଣ ଆପଣଙ୍କ ଯୁଗ ଭଲ ଥିଲ ? (କଣ୍ଠରେ ତାଚ୍ଛଲ୍ୟ)

ଯଶୋବନ୍ତ—(ହାତ ଝୁଆଡ଼ ବସ୍ତୁସ୍ତ ହାତର ସିଗାରେଟ ପେକେଟ ତଳେ
ପକେଇ ଦେଲେ) ମୁଁ ତୁମର ବାପାଙ୍କ ବୟସର ।

ବସ୍ତୁସ୍ତ— (ତଳୁ ସିଗାରେଟ ପକେଟ ଉଠେଇ ଧୂଳି ଝାଡ଼ ଝାଡ଼ୁ) ଆହୁରି
ବଡ଼ ହେବେ । ମୋର ବାପା ସିଗାରେଟ ଖାଆନ୍ତି, ମଦ ଖାଆନ୍ତି ।
ମୋର ମା' ମନାକଲେ ତାଙ୍କୁ କଲ୍ମ ମାଡ଼ ଦଅନ୍ତି । ମୋର
କେଜେ କନ୍ତୁ ଏସବୁ ପସନ୍ଦ କରନ୍ତି ନାହିଁ । (ହସ) ଆପଣଙ୍କ
ଭଳ ଅତୀତକୁ ଜାବୁଡ଼ ଧରିଛନ୍ତି । ମନସ୍ତାପ କରୁଛନ୍ତି । ତାଙ୍କର
ସେ ମଧ୍ୟ ଯୁଗୀୟ ଅହଙ୍କାର, ଶୂନ୍ୟଗର୍ଭ ଆସ୍ଫାଳନ ଦେଖିଲେ
ଘୃଣା ପରିବର୍ତ୍ତେ ଦୟାଜାତ ହୁଏ ।

ଯଶୋବନ୍ତ—ନଜର କେଜେଙ୍କୁ ପରିହାସ କରିବାକୁ ଟିକିଏ ବ ଲଜ୍ଜା ବୋଧ
ହେଉ ନାହିଁ ?

ସାମାନ୍ୟତମ ନମ୍ରତା, ଶାଳୀନତା ସୁଦ୍ଧା ତମମାନଙ୍କ ପାଖରେ ନାହିଁ ।

ହୁଁ···ଆମର ସେ ଭୁଲ ଥିଲା ।

ବସ୍ତୁସ୍ତ— ଯୁଗର ପରିବର୍ତ୍ତନ ସହିତ ମୂଲ୍ୟବୋଧର ବି ପରିବର୍ତ୍ତନ ଅବଶ୍ୟମ୍ଭାବୀ ।

ଯଶୋବନ୍ତ— ମୂଲ୍ୟବୋଧ !! ତମେମାନେ କଣ ବୁଝିବ ମୂଲ୍ୟବୋଧର ମହତ୍ତ୍ୱ ! ସ୍ନେହ, ମାୟା, ପ୍ରେମ ପ୍ରୀତି ସବୁ ତୁମମାନଙ୍କ ପାଇଁ ପଣ୍ୟ ।

ମାନବିକତା ତୁମର ବୈଜ୍ଞାନିକର ଗିନି ପିଗ ।

ତୁମର ସଂସ୍କୃତି କେବଳ ବିକୃତି । ହୁଁ··· !!

ବସ୍ତୁସ୍ତ— ଆପଣ ଯାହା କହୁଛନ୍ତି ହୁଏତ ସତ । କିନ୍ତୁ ଆପଣଙ୍କର ବହୁ ଆକାଂକ୍ଷିତ ସେହି ଶିଅଳୀ ଯୁଗର ଅନ୍ତରୀକ୍ଷଗର୍ଭିତ ଆକାଶରେ ରାତିର ଘନ ଅନ୍ଧକାର ରାହୁପରି ଗ୍ରାସ କରିବାକୁ ବସିଛି ତାହା ବୋଧେ ଆପଣ ଦେଖି ମଧ୍ୟ ଦେଖିପାରୁ ନାହାନ୍ତି ।

ଯଶୋବନ୍ତ— ଭୁଲ । ତୁମର ସମସ୍ତ ଧାରଣା ଭୁଲ ।

ମୂଲ୍ୟବୋଧହୀନ ତୁମର ଏହି ସୌଦାଗରୀ ସଭ୍ୟତା ମଣିଷକୁ ଦିନେ ଅନ୍ତଃସାର ଶୂନ୍ୟ ମେସିନରେ ପରିଣତ କରିଦେବ ।

ବସ୍ତୁସ୍ତ— (ଗର୍ବରେ) ଟେଷ୍ଟଟ୍ୟୁବବେବୀ ସୃଷ୍ଟି କରିବାରେ ଆମେ ସକ୍ଷମ । 'ରୋବଟ' ଆମେ ତିଆରି କରି ସାରିଛୁ ।

ଯଶୋବନ୍ତ— ଅତି କୃତଘ୍ନ ଭାବରେ ତମେ ମାନେ ମାନବାତ୍ମାକୁ ହତ୍ୟାକରି ଚାଲିଛ । ତମେମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ କମ୍ପ୍ୟୁଟର ।

ତୁମର ସଭ୍ୟତା ସଂସ୍କୃତି ମାନବାତ୍ମାହୀନ ସୌଦାଗରୀ······ ।

ମୁଁ ବୁଝି ପାରୁନାହିଁ ଜ୍ଞାନ-ବିଜ୍ଞାନର ସକଳ ବିକାଶ ସତ୍ତ୍ୱେ ତୁମର ଏ କଣ୍ଢେଇ ନାଚ କାହିଁକି ?

କାହିଁକି ଏ ଅଧୋଗତି ?

ବସ୍ତୁସ୍ତ— (ଜୋରରେ ଦମେ ସିଗାରେଟ ଟାଣି ଧୂଆଁ ଛାଡ଼ୁ ଛାଡ଼ୁ) ଅଧୋଗତି···ଉର୍ଦ୍ଧ୍ୱଗତି ନିଶୁଣୀର ଦୁଇ ପାର୍ଶ୍ୱ ।

ଯଶୋବନ୍ତ— (ଟିକିଏ ରାଗି) ତେବେ ସେଇ ନିଶୁଣୀ । ତମେ ସବୁ ରସାତଳକୁ ଯାଉଛ । ହଁ, ରସାତଳକୁ ।

ବସ୍ତୁସ୍ତ— (ହସି) ଆପଣମାନଙ୍କ ପୃଥିବୀ ଠାରୁ କଣ ତାହା ଅଧିକ ଭୟଙ୍କର ?

ଯଶୋବନ୍ତ—ହଁ, ଆହୁରି ଭୟଙ୍କର···ଆହୁରି ଭୟଙ୍କର···ଅହୁରି ଭୟଙ୍କର··· ଭୟ···ଙ୍କ···ର ।

[କହୁକହୁ ଯଶୋବନ୍ତ ଅନ୍ୟ ବାଟରେ ବାହାରି ଗଲେ । ତାଙ୍କର 'ଭୟଙ୍କର' ପ୍ରତିଧ୍ୱନିତ ହୋଇ ମିଶିଗଲା ଝରଣାର ଗୁଣ୍‌ଗୁଣ୍‌ରେ । କେଇ ମୁହୂର୍ତ୍ତ ଝରଣାର ଧ୍ୱନି ଭାସି ଆସିଲା ପରେ ତା ସହିତ ମିଶିଗଲା ନାରୀ କଣ୍ଠରେ-- ବସନ୍ତ···ବସନ୍ତ । ଡାକି ଡାକି ପ୍ରବେଶ କଲା ବୈଶାଳୀ । ବୈଶାଳୀ ଯୁବତୀ । କୋଡ଼ିଏରୁ ପଚିଶ ବର୍ଷ ବୟସ । ରୂପବତୀ, ବେଶ ପୋଷାକ ଆଧୁନିକ । ବସନ୍ତକୁ ଦେଖି ଦୋ ଦୋ ଚକ୍ଷା ହୋଇ ଅଟକି ଗଲା ।]

ବସନ୍ତ— ମତେ ଖୋଜୁଥିଲେ ?

ବୈଶାଳୀ— (ବସନ୍ତ ଦୃଷ୍ଟିରେ) ତମେ ? ଉହୁଁ···ନା ।

ବସନ୍ତ— (ହସି) ମତେ ବି ବସନ୍ତ ବୋଲି ଡାକନ୍ତି ।

ବୈଶାଳୀ— କିନ୍ତୁ ମୁଁ ଯେଉଁ ବସନ୍ତକୁ ଖୋଜୁଥିଲି··· ।

ବସନ୍ତ— ମୁଁ ସେ ନୁହେଁ, ଏଇଆ ତ ! ଛାଡ଼ କଣ ? ମୁଁ ଯେଉଁ ବୈଶାଳୀକୁ ଅପେକ୍ଷା କରିଛୁ ତୁମେ ବି ସିଏ ନୁହଁ । (ହସିବା)

ବୈଶାଳୀ— ତୁମେ ମୋ ନା କେମିତି ଜାଣିଲ ?

ବସନ୍ତ— (ହସି) ତୁମେ ଯେମିତି ମୋ ନା' ଧରି ଡାକି ଡାକି ଆସିଲ !!

ବୈଶାଳୀ— କଏନସିଡେନ୍‌ସ !

ବସନ୍ତ— କଏନସିଡେନ୍‌ସ ! (ଟିକେ ହସି) ଏକସିଡେଣ୍ଟ ନୁହେଁ !!

ବୈଶାଳୀ— ସିଗାରେଟ ଅଛୁ ?

ବସନ୍ତ— (ସିଗାରେଟ ଦେଇ ମାଚିସ ମାରି ଦେଖେଇ) ମୁଁ ବୈଶାଳୀକୁ ଅପେକ୍ଷା କରିଥିଲି ତୁମେ ଆସି ପହଞ୍ଚିଲ ।

ବୈଶାଳୀ— ବସନ୍ତକୁ ଖୋଜି ଖୋଜି କ୍ଲାନ୍ତ ହୋଇଁ ଆସି ପହଞ୍ଚିଲି ବେଳକୁ ତୁମେ ଏଇଠି ।

ବସନ୍ତ— ତୁମେ ବସନ୍ତକୁ ଭଲ ପାଅ—ମାନେ ପ୍ରେମ ?

ବୈଶାଳୀ—(ସିଗାରେଟ ଧୂଆଁ ଛାଡ଼ି) ନା, ସେ ଅଭିଜ୍ଞତା ଏ ଯାଏ ହୋଇ ନାହିଁ । (ହସିବା) ବସିବା ।

(ଦୁହେଁ ବସିଲେ)

ବୈଶାଳୀ — ଆଚ୍ଛା ତୁମେ କେବେ ପ୍ରେମ କରିଛ ? ବୈଶାଳୀକୁ ?

ବସନ୍ତ— ବହିରେ ଗଦା ଗଦା ପ୍ରେମ କାହାଣୀ ପଢ଼ିଛି, ସିନେମାରେ ବି ଦେଖିଛି । ହେଲେ ସେ…ସେ ମଧୁମୟୀସ୍ୱ ଅନୁଭୂତି ଏଯାଏ ଅନୁଭବ ପାରି ନାହିଁ । (ନୀରବରେ ସିଗାରେଟ ଟାଣି ଅଙ୍ଗୁଳି ରହିଲାପରେ) ନଈ କୂଳଟା ଅଜବ ଭାରି ବଢ଼ିଆ ଲାଗୁଛି ।

ବୈଶାଳୀ— ବସନ୍ତ ଏଇଠିକି ଆସିବ ବୋଲି କହିଥିଲା ।

ବସନ୍ତ— କିଛି ଜରୁରୀ କାମ ଥିଲା ?

ବୈଶାଳୀ — ନା, ସେମିତି ।

ବସନ୍ତ— ତାକୁ ଖୋଜିବା ?

ବୈଶାଳୀ— ଖୋଜିବାର ଆଭିଜାତ୍ୟ ଦରକାର କଣ ?

ବସନ୍ତ— ଆଜି ନ ଭେଟିଲେ ବି କାଲି ତ ଭେଟ ହେବ ।

ବୈଶାଳୀ— ସାରା ଜୀବନ ନଭେଟିଲେ ବି କ୍ଷତି ନାହିଁ ।

ବସନ୍ତ— ବୈଶାଳୀ ସହିତ ମୋର ପରିଚୟ ଆକସ୍ମିକ, ବାଟରେ ଯାଉଁ ଯାଉଁ ।

ବୈଶାଳୀ— ଅନେକ ପଥ ।

ବସନ୍ତ— ଅନେକ ମୁହଁ । (ହସିବା)

ବୈଶାଳୀ— ସ୍ୱଭାବ ଅନେକ ।

ବସନ୍ତ— ବାଟଚଲା—ପାନ୍ଥଶାଳାରେ ରହଣି— ବାସ୍ତୋଲଙ୍କକୋଳ ଅର୍ଜ !

ବୈଶାଳୀ— ଦେହର ଖେଳ ।

ବସନ୍ତ— ଥରେ ଖେଳ ମଣଗଲେ ଆଉ ଥରେ ଖେଳ ପର୍ଯ୍ୟନ୍ତ ଅପେକ୍ଷା କରିଯାଇ ପାରେ !

ବୈଶାଳୀ— ମୋର ଜେଜେ କିନ୍ତୁ ଏହି ସତ୍ୟକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି ।

ବସନ୍ତ — ମୋର ଜେଜେ ମଧ୍ୟ ଅଣ୍ଟା ତଳରେ ବସା ବାନ୍ଧିବାର ସ୍ୱପ୍ନ ଦେଖୁଛନ୍ତି ।

ବୈଶାଳୀ— ସବୁ ଜେଜେମାନେ ସେମିତି । ଛାଡ଼ି ପାରୁ ନାହାନ୍ତି—ଧରିପାରୁ ନାହାନ୍ତି ।

ବସନ୍ତ — ସାମନ୍ତବାଦର ସଂସ୍କୃତି ସମ୍ପନ୍ନ ସୌକୁମାର୍ଯ୍ୟ !! (ହସିବା)

ବୈଶାଳୀ— ମଧ୍ୟଯୁଗୀୟ ଅହଙ୍କାର, ସାମନ୍ତବାଦୀ ଆସ୍ଫାଳନ !
ବସ୍ତୁସ୍ତ— ବଚନ ଖିଆଲ, ଅଦ୍‌ଭୁତ ସେସନସ ! !
ବୈଶାଳୀ— ପରିତ୍ୟକ୍ତ, ଭଗ୍ନ ପ୍ରାସାଦ ଭିତରେ ଅନେକ ଅନେକ ଅଶାନ୍ତ ! ଅତ୍ୟାଗ୍ରସ୍ତ ଆତ୍ମାମାନଙ୍କ ପରି ସେମାନେ ଖାଲି ଘୂରି ବୁଲୁ-ଛନ୍ତି । ସେମାନଙ୍କ ଦୀର୍ଘଶ୍ୱାସରେ ଆକାଶ ମେଘାଚ୍ଛନ୍ନ । ଖାଲି ହାହାକାର କରୁଛନ୍ତି ! (ହସିବା)
ବସ୍ତୁସ୍ତ— ଆଃ···କ କରୁଣ ଆର୍ତ୍ତନାଦ ।
ବୈଶାଳୀ— କାହିଁକି ଏତେ ଯନ୍ତ୍ରଣା (ପ୍ରତିଧ୍ୱନିତ ହେବା)
ବସ୍ତୁସ୍ତ— କାହିଁକି ଏତେ ଯନ୍ତ୍ରଣା (ପ୍ରତିଧ୍ୱନିତ ହେବା)

[ପ୍ରତିଧ୍ୱନି ମଧ୍ୟରେ ମଞ୍ଚ ଅନ୍ଧକାର ହୋଇଗଲା । ଭାସି ଆସିଲା ଏକ ସଂଗୀତର ମୂର୍ଚ୍ଛନା । ପୁଣି ଆଲୋକ ଜଳିଲା ବେଳକୁ ସୋଫାରେ / ବେତ ଚୌକିରେ ବସି ହୁକା ପିଉଛନ୍ତି ଯଶୋ-ବନ୍ତ । ମୁଖ ମଣ୍ଡଳରେ କ୍ରୋଧ ଓ ବିଷାଦର ମିଶ୍ରିତ ପ୍ରତିକ୍ରିୟା । ପ୍ରବେଶ କଲେ ପୁତ୍ର ପ୍ରତାପାଦିତ୍ୟ । ପ୍ରୌଢ଼ । ବେଶଭୂଷା କଂପାନୀ ଏକଜିକ୍ୟୁଟିଭ ଶ୍ରେଣୀୟ ।]

ପ୍ରତାପାଦିତ୍ୟ— (ପାଖ ଚୌକିରେ ବସୁବସୁ) ବାପା ମତେ ଡ଼ାକିଲେ ?
ଯଶୋବନ୍ତ— ହଁ—ଡ଼ାକ୍ତର କଣ କହିଲେ ?
ପ୍ରତାପାଦିତ୍ୟ— କଣ ଆଉ କହିବେ ।
ଯଶୋବନ୍ତ— ତାହେଲେ······
ପ୍ରତାପାଦିତ୍ୟ— ହଁ, ବୈଶାଳୀ ଗର୍ଭବତୀ ।
ଯଶୋବନ୍ତ— (ଯନ୍ତ୍ରଣାକାତର କଣ୍ଠରେ) ହେ ଭଗବାନ······ଛି ଛି···
ପ୍ରତାପାଦିତ୍ୟ— ଡ଼ାକ୍ତର କହୁଥିଲେ ଏବର୍ସନ କରିବାରେ କିଛି ଅସୁବିଧା ନାହିଁ ।
ଯଶୋବନ୍ତ— (ରାଗି) ତେବେ ଏଯାଏ ଅପେକ୍ଷା କରିଛୁ କାହିଁକି ?
ପ୍ରତାପାଦିତ୍ୟ— ବିବାହ କରେଇ ଦେଲେ କେମିତି ହୁଅନ୍ତା ?
ଯଶୋବନ୍ତ— (ରାଗରେ ଦାନ୍ତଘଷି କଟମଟ କରି ଅନାଇଲେ)
ପ୍ରତାପାଦିତ୍ୟ— (ସହଜ ଗଳାରେ) ଆଜିକାଲି ଏଇଟା ସାଧାରଣ କଥା—କନ୍‌ସେପସନ୍‌, ଏବରସନ··· ।
ଯଶୋବନ୍ତ— ବୈଶାଳୀ କଣ କହୁଛି ?
ପ୍ରତାପାଦିତ୍ୟ— ବିବାହ କରିବ—ତାର ବସ୍ତୁ ଫେଣ୍ଡକୁ ।

ଯଶୋବନ୍ତ— ସ୍ୱାମୀ ବାଛିବାର ଅଧିକାର ସେ କାହୁଁ ପାଇଲା ?

ପ୍ରତାପାଦିତ୍ୟ— (ସାମାନ୍ୟ ହସି) ବୈଶାଳୀ ଆଉ ଦୁଗ୍ଧପୋଷ୍ୟ ଶିଶୁ ନୁହେଁ ବାପା, ଏମ୍. ଏ ପାସ୍‌କରି ଅଧ୍ୟାପିକା ହୋଇଛି they love each other.

ଯଶୋବନ୍ତ— କେଉଁ ଏକ ଅଜ୍ଞାତକୁଳଶୀଳକୁ ପ୍ରେମକରି ଦେଲା ବୋଲି ବିବାହ କରିବ ? ତୁ ବି ତାର, ପ୍ରତିବାଦ କରୁନାହୁଁ ? stop it.

ପ୍ରତାପାଦିତ୍ୟ— ଆଗେ ବୋଉର ମତାମତ ନିଆଯାଉ; ତାପରେ ଯାହା କିଛି ସିଦ୍ଧାନ୍ତ ନେବା ।

ଯଶୋବନ୍ତ— ବୋହୂର ମତାମତ ଏଥିପାଇଁ କାହିଁକି ଦରକାର ହେଉଛି ? ଆମେ ଯେଉଁ ସିଦ୍ଧାନ୍ତ ନେବା ତାହା ଶେଷ । ବୋହୂକୁ ପଚାରିବା ଦରକାର ନାହିଁ ।

ପ୍ରତାପାଦିତ୍ୟ— ବାପା, ଆପଣ ଭୁଲି ଯାଆନ୍ତୁ ନାହିଁ ଯେ ବୋଉ ଖାଲି ଏଘରର ବୋହୂ ନୁହେଁ, ସେ ବୈଶାଳୀର ମାଁ ମଧ୍ୟ । ତେଣୁ ଝିଅର ଭବିଷ୍ୟତ ସଂପର୍କରେ ମାଁ ର ମତାମତକୁ ଅବଜ୍ଞା କରାଯାଇ ପାରେନା ।

ଯଶୋବନ୍ତ— No. ଏ ଘରେ ଶାସନ ଚାଲେ ପୁରୁଷମାନଙ୍କର । ଏହାହିଁ ପ୍ରହରାଜ ବଂଶର ପରଂପରା । ହୁଁଃ···ଝିଅ ଯାଇ କେଉଁଠି ପ୍ରେମ କଲାକରି ମାଁ ହେବା ଉପରେ, ଅଥଚ ଯେଉଁ ମାଁ ଖବର ସୁଦ୍ଧା ରଖିନାହିଁ ସେହି ମାଁ ର କି ଅଧିକାର ଅଛି ମାତୃତ୍ୱ ଦାବୀ କରିବାର ?

ପ୍ରତାପାଦିତ୍ୟ— ବୈଶାଳୀ ତ ଆଉ ଦୁଗ୍ଧପୋଷ୍ୟ ଶିଶୁ ନୁହେଁ ଯେ ମାଁ ର ପଣତ ତଳେ ଘୋଡ଼େଇ ରଖାହିବ ।

ଯଶୋବନ୍ତ— So what ! କଣ ହୋଇଗଲା ସେଇଠୁ ? (ତାଚ୍ଛଲ୍ୟକରି) ଏଇତ ଦାୟିତ୍ୱଜ୍ଞାନ, କୁମାରୀ ହୋଇ ମାଁ ହେବାକୁ ଯାଉଛି···

ପ୍ରତାପାଦିତ୍ୟ — She is now grown up ତାକୁ ଆଉ ବନ୍ଦୀକରି ରଖିବାର ପ୍ରୟାସ ବୃଥା ।

ଯଶୋବନ୍ତ— ତାର ଜନ୍ମ ବନ୍ଦୀହୋଇ ରହିବା ପାଇଁ—ସେଇଥିରେ ନାରୀ ଜୀବନର ମୁକ୍ତି ।

ପ୍ରତାପାଦିତ୍ୟ— ସାମନ୍ତବାଦୀ ଖିଆଲ !!

ଯଶୋବନ୍ତ— ସେହି ଖିଆଲକୁ ନେଇ ମୁଁ ବଞ୍ଚି ରହିବାକୁ ଚାହେଁ । ଆଜି ଯଦି ଏଇ କଥା ପ୍ରଘଟ ହୋଇଯାଏ ଯେ ପ୍ରହରାଜ ବଂଶର କୁମାରୀ କନ୍ୟା ଭ୍ରୂଣହତ୍ୟା କରିଛି—ପ୍ରେମ କରି କେଉଁ ଏକ ବଂଶପରମ୍ପରାବିହୀନ ଲୋକକୁ ବିବାହ କରିବାକୁ ବାହାରିଛି, ମୁଁ କେଉଁ ମୁହଁ ନେଇ ରାସ୍ତାରେ ଚାଲିବି ? ମୋର ସମସ୍ତ ଆଭିଜାତ୍ୟ, ବଂଶ ମର୍ଯ୍ୟାଦା, ମୋର ଗର୍ବ ଅଭିମାନ ଧୂଳିସାତ ହୋଇଯିବ ।

ପ୍ରତାପାଦିତ୍ୟ— (ସାମାନ୍ୟ ହସି) ସାମ୍ରାଜ୍ୟ ମଶାଣୀରେ ପରିଣତ ହୋଇଗଲା ପରେ ବି ମୁକୁଟ ପିନ୍ଧି...... ।

ଯଶୋବନ୍ତ— ସେହି ମଶାଣୀର ପାଉଁଶ ମୋର ମଥାର ତିଳକ ।

ପ୍ରତାପାଦିତ୍ୟ— ଆପଣ ଅଯଥାରେ ଭାବପ୍ରବଣ ହୋଇ ପଡ଼ୁଛନ୍ତି । ଅବକ୍ଷୟପ୍ରାପ୍ତ ସାମନ୍ତବାଦକୁ ଜାବୁଡ଼ି ଧରିବାର ମାନେ କିଛି ବୁଝେନା ।

ଯଶୋବନ୍ତ— ପ୍ରତାପ ତୁ ମତେ ସେଣ୍ଟିମେଣ୍ଟାଲ କହୁଚୁ ?

ପ୍ରତାପାଦିତ୍ୟ— ବାପା, ଆପଣ ଯୁଗ ପରିବର୍ତ୍ତନର ଯେଉଁ ପ୍ରବଳ ବାତ୍ୟା ବହୁଚି ଅନୁଭବ କରି ପାରୁନାହାନ୍ତି । ସେଇଥି ଲାଗି ଏଇ ମାନସିକ ଯନ୍ତ୍ରଣା ! ଥରେ ବାସ୍ତବତାକୁ ଅନୁଭବ କରି ପାରିଲେ ଆପେ ଯନ୍ତ୍ରଣା ଉପଶମ ହୋଇଯିବ ।

ଯଶୋବନ୍ତ— ଯୁଗ ବଦଳି ନାହିଁ—ମୁଁ ଦେଖୁଛି ତୁ ଧୀରେ ଧୀରେ ବଦଳି ଯାଉଚୁ—ପ୍ରହରାଜ ବଂଶର କୁଳତିଳକ ପ୍ରତାପାଦିତ୍ୟ ବାତ୍ସଲ୍ୟ ମମତାରେ ଅଂଧ ହୋଇ ସମସ୍ତ ଆଭିଜାତ୍ୟକୁ ଜଳାଞ୍ଜଳି ଦେବାକୁ ଟିକିଏ ହେଲେ କୁଣ୍ଠାବୋଧ କରୁ ନାହୁଁ—ଲଜ୍ଜାବୋଧ କରୁନାହୁଁ ।

ହୁଁ ଃ···ମୋର ଦୁର୍ଭାଗ୍ୟ ଯେ ମୁଁ ବଞ୍ଚି ଥାଉଁ ଥାଉଁ ଏହି ବଂଶର ସମସ୍ତ ମାନମର୍ଯ୍ୟାଦା ଧୂଳିସାତ ହେବାକୁ ଯାଉଛି ।

ପ୍ରତାପାଦିତ୍ୟ— ଆପଣ ସେମିତି କାହିଁକି ଭାବୁଛନ୍ତି ? ମୁଁ ତ କେବେ ହେଲେ ଆପଣଙ୍କ ଅବାଧ୍ୟ ହୋଇ ନାହିଁ ।

ଯଶୋବନ୍ତ— ମୁଁ ବୁଝି ପାରୁନାହିଁ ପ୍ରତାପ ତୁମେମାନେ ଧୀରେ ଧୀରେ ଏପରି ଦୁର୍ବଳ, ମ୍ଳାନପ୍ରଭ ହୋଇଯାଇଛ କିପରି !!!

ପ୍ରତାପାଦିତ୍ୟ— (ହସି) ଅପଣ ଉତ୍ତେଜିତ ହୋଇ ପଡ଼ୁଛନ୍ତି, ବରଂ ବିଶ୍ରାମ ନିଅନ୍ତୁ ।

ଯଶୋବନ୍ତ— (ଅଧିକ ଉତ୍ତେଜିତ ହୋଇ) ଏପରି ଉଚ୍ଛୃଙ୍ଖଳତା ଦେଖିଲେ ମୁନି ଋଷିମାନେ ବି ଉତ୍ତେଜିତ ହୋଇ ପଡ଼ିବେ । ମୁଁ କେମିତି ଶାନ୍ତ ହୋଇ ରହି ପାରିବି......ମୁଁ କେମିତି ଶାନ୍ତ ହୋଇ ରହିପାରିବି ?

ପ୍ରତାପାଦିତ୍ୟ— (ଠିଆ ହୋଇ) ଦେଖଁ ବେଳ ଅସିଲ କି ନାହିଁ ।

ଯଶୋବନ୍ତ— ତୁଝୈଁ କୁ, ତୋର ମାଁ ଯେବେ ହେଲେ ରାସ୍ତା ମଝିରେ ସବାରିରୁ ଓହ୍ଲାଇ ନଥିଲେ । ଘରେ ଚାକର ପୂଜାରୀମାନେ ତାଙ୍କର ମୁହଁ ଦେଖି ପାରୁ ନଥିଲେ ।

ପ୍ରତାପାଦିତ୍ୟ— (ହସି) ସେ ଅସୂର୍ଯ୍ୟମ୍ପଶ୍ୟା ଯୁଗ ଚାଲି ଯାଇଛି ବାପା ।

ଯଶୋବନ୍ତ— (ଦୀର୍ଘଶ୍ୱାସ) ସବୁ ମୋର ଭାଗ୍ୟ, ପ୍ରତିହରାଜ ବଂଶର କୁଳବଧୂ ବଜାରକୁ ଯିବ, ପିକ୍‌ନିକ୍ କରିବାକୁ ଯିବ...(କାନ୍ଦ କାନ୍ଦ ହୋଇ) ଏଇ ସବୁ ଦେଖିବାକୁ ମୋର ଭାଗ୍ୟରେ ଥିଲା । ମୁଁ ଘରେ ଆଉ କିଛି ଜାଣିପାରୁ ନାହିଁ ।

(ହଠାତ୍ ପ୍ରବେଶ କଲେ ବୈଶାଳୀ ଓ ବସନ୍ତ । ଆଗର ସେହି ବେଶ ପୋଷାକ)

ବୈଶାଳୀ— ଜେଜେ, **Meet my boy friend** ବସନ୍ତ...(ହସି) **don't be surprised......we love each other.** ଦୁହେଁ ଦୁହିଁଙ୍କୁ ପ୍ରେମ କରୁ...ବିବାହ କରିବୁ... (ଯିବାକୁ ଉଦ୍ୟତ)

(ଯଶୋବନ୍ତ ରାଗରେ ନିଆଁ ହୋଇ ଖାଲି ଅନାଇ ରହି ଥାଆନ୍ତି)

ପ୍ରତାପାଦିତ୍ୟ— ତୁ କୁଆଡ଼େ ବାହାରିଛୁ ବୈଶାଳୀ......

ବୈଶାଳୀ— ବୁଲିବାକୁ...ବାଇ ବାଇ... । (ପ୍ରସ୍ଥାନ)

ଯଶୋବନ୍ତ— **No** ! ଅସମ୍ଭବ । ତୁ ଜାଣିନୁ ପ୍ରତାପ ସେଦିନ ଏଇ ପିଲା ମୋର ସାମନାରେ ସିଗାରେଟ ପିଉଥିଲା । ତାର ବାପା ପ୍ରଚୁର ମଦ ଖାଏ, ସ୍ତ୍ରୀକୁ ମାଡ଼ ଦିଏ...**No No**...ସେ ପିଲା ସହିତ ବୈଶାଳୀର ବିବାହ ଅସମ୍ଭବ ।

ବୋଷ୍, କାହିଁ…? ବୋଷ୍‌କୁ ଡ଼ାକ ଆଣ ।

ପ୍ରତାପାଦିତ୍ୟ— ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ବାପା…ସବୁ ଠିକ୍ ହୋଇଯିବ ।

ଯଶୋବନ୍ତ— ହଁ ସବୁ ଠିକ ହୋଇଯିବ । ମୋର ମୃତ୍ୟୁପରେ ସବୁ ଠିକ୍ ହୋଇଯିବ ।

ପ୍ରତାପାଦିତ୍ୟ— ଦେଖେଁ ଦେବ ଫେଶଲ କ ନାହିଁ ।

ଯଶୋବନ୍ତ— ନା, ଦରକାର ନାହିଁ ।

ପ୍ରତାପାଦିତ୍ୟ— ତାର ମତାମତଟା ଜାଣିଗଲେ କ୍ଷତି କଣ ? ସେ'ବି ହୁଏତ ଆପଣଙ୍କ ପ୍ରସ୍ତାବରେ ରାଜି ହୋଇ ଯାଇପାରେ ।

ଯଶୋବନ୍ତ— ନା । ପ୍ରହରାଜ ବଂଶର ଗୌରବ, ମହିମା ଆଜ ଧୂଳିସାତ୍ ହେଲା ବେଳକୁ ମୁଁ କାହାର ମତାମତକୁ ଅପେକ୍ଷା କରି ପାରିବି ନାହିଁ । ନିଷ୍ପତ୍ତି ମୁଁ ନେବି ।

ପ୍ରତାପାଦିତ୍ୟ— ସାମାନ୍ୟ ଏକ ଘଟଣାକୁ ନେଇ ଆପଣ ଅଯଥାରେ ଉତ୍ତେଜିତ ହେଉଛନ୍ତି ।

ଯଶୋବନ୍ତ— ନିଜ ପୁଅ ପାଖରୁ ଉପଦେଶ ଶୁଣିବାର ବିକୃତ ମସ୍ତିଷ୍କ ଏଯାଏ ମୋର ହୋଇ ନାହିଁ ।

ପ୍ରତାପାଦିତ୍ୟ— ମୁଁ ଉପଦେଶ ଦେଉନାହିଁ ବାପା…ଆପଣ ସେମିତି କାହିଁକି ଭାବୁଛନ୍ତି ?

ଯଶୋବନ୍ତ— (ଗମ୍ଭୀର ଗଳାରେ) ସାମାନ୍ୟ କଥାକୁ ବୁଝିପାରିବାର ଶକ୍ତି ଏଯାଏ ହରାଇ ନାହିଁ । ନେ', ଏଇ ଘୁବି ନେ, ଯେତିକି ଟଙ୍କା ଦରକାର ବାହାର କରି ଆଣ ।

ପ୍ରତାପାଦିତ୍ୟ— (ଘବରେଇ) ଏବେ·· ଆଉ···ଦରକାର ନାହିଁ ।

ଯଶୋବନ୍ତ— ନା', ମୋର ସମସ୍ତ ସଂପତ୍ତି ବିନିମୟରେ ମୁଁ ମୋର ବଂଶ ମର୍ଯ୍ୟାଦା ରକ୍ଷା କରିବାକୁ ଚାହେଁ । ବିଷ୍ଣୁ ସହିତ ବୈଶାଲୀର ବିବାହ ଅସମ୍ଭବ ।

ପ୍ରତାପାଦିତ୍ୟ—(ଦୃଢ଼ କଣ୍ଠରେ) ସେ ବିବାହ ହେବ ବାପା……ଆମେ ନ ଚାହିଁଲେ ବି ବିବାହ ହେବ । ଯୁଗପ୍ରବାହର ପ୍ରବଳ ସ୍ରୋତରେ ସମସ୍ତ ପ୍ରତିବନ୍ଧକ, କୁସଂସ୍କାର ଧୋଇ ହୋଇ ଯାଉଛି । ତେଣୁ ଭୂଷୁଡ଼ି ପଡ଼ୁଥିବା ଆଭିଜାତ୍ୟର ପ୍ରାସାଦକୁ ଜାବୁଡ଼ି ଧରି ରଖିବାର ପ୍ରଚେଷ୍ଟା ବୃଥା ।

ଯଶୋବନ୍ତ— (ରାଗି) ଠିକ୍ ଅଛୁ । କାଲି ସକାଳୁ ମୋର ଗାଁକୁ ଯିବାର ବ୍ୟବସ୍ଥା କରିଦେ । ସ୍ୱଚକ୍ଷୁରେ ମୁଁ ପ୍ରହରାଜ ବଂଶର ଅବକ୍ଷୟ ଦେଖି ପାରିବି ନାହିଁ । ମୁଁ ଗାଁକୁ ଚାଲିଯିବି ।

ପ୍ରତାପାଦିତ୍ୟ— ପଲାୟନ କରିବାର ପ୍ରୟାସ ବୃଥା ବାପା, ବରଂ ଯଥାସାଧ୍ୟ ଲମ୍ବଙ୍କୁ ବୋଧସିବାକୁ ଦେବା ଶ୍ରେୟସ୍କର ।

ଯଶୋବନ୍ତ— ନା···ନା··· (ପାଗଳପ୍ରାୟ) ମୁଁ ଏ ଅବକ୍ଷୟ ଦେଖି ପାରିବି ନାହିଁ···ଦେଖି ପାରିବି ନାହିଁ । ଲମ୍ବଙ୍କୁ ମୁଁ ପ୍ରତିରୋଧ କରିବି······ପ୍ରତିରୋଧ କରିବି ।

ପ୍ରତାପାଦିତ୍ୟ— ହା···ହା··· (ହସିବା)

(ସମୁଦ୍ରର ଗର୍ଜନ ସହି ଆବଦ୍ଧ ସଂଗୀତରେ ପରିଣତ ହୋଇଗଲା ।)



## ଲୋକ କଥା : ॥ ସମୁଦ୍ରର ପ୍ରେମ ॥

(ନାଗାରାଜ୍ୟର "ଶଇତାନ୍ ଏବଂ ମୋମୋଲ୍" ଶୀର୍ଷକ ଲୋକ କାହାଣୀ, ନାଗା ଇନଷ୍ଟିଚ୍ୟୁଟ ଅଫ୍ କଲଚର୍, କୋହିମାଙ୍କ ସୌଜନ୍ୟରୁ ।)

---

ବହୁ ପ୍ରାଚୀନ କାଳର କାହାଣୀ । ନାଗାରାଜ୍ୟରେ ପାହାଡ଼ ଜଙ୍ଗଲ ଘେରି ରହିଥିବା ଗୋଟିଏ କ୍ଷୁଦ୍ର ପଲ୍ଲୀ । ନାମ ତାହାର ଗୁଙ୍ଗ୍ ଶାଙ୍ଗ୍ । ଏହି ଛୋଟ ଜନବସତିରେ ଗୋଟିଏ ଦରିଦ୍ର କୃଷକ ଦମ୍ପତ୍ତି ବାସ କରୁଥିଲେ । ସାମାନ୍ୟ ଚାଷବାସ ସହିତ, ଲୋକେ ଜଙ୍ଗଲରୁ ପଶୁପକ୍ଷୀ ଶୀକାର କରି ଆଣି, ପାହାଡ଼ ଝରଣା ଓ ଛୋଟବଡ଼ ନଦୀମାନଙ୍କରୁ ମାଛ ଧରି ଦୈନନ୍ଦିନ ଜୀବନ ବିତାଉଥିଲେ । କୃଷକ ଦମ୍ପତ୍ତିଙ୍କର ଥିଲା ଗୋଟିଏ ମାତ୍ର ଅଲିଅଳି ଗେଲ୍‌ହା ଝିଅ । ନାମଥିଲା 'ମୋମୋଲ୍' । ବାପ ମା' ନୟନ ପିତୁଳିପରି ଝିଅଟିକୁ ଅତି ସୋହାଗ, ଆଦର ଓ ଗେଲବସର କରି ଲାଳନପାଳନ କରୁଥିଲେ ।

କାଳକ୍ରମେ ଛୋଟ ଝିଅଟି ଶ୍ରଦ୍ଧା ଓ ସୋହାଗରେ ବଢ଼ି ବଡ଼ ହେଲା । ସାରା ପଲ୍ଲୀ ଗାଁରେ ସେ ହେଲା ସର୍ବଶ୍ରେଷ୍ଠ ସୁନ୍ଦରୀ ଝିଅ । ଖାଲି ରୂପରେ ଅସାମାନ୍ୟ ସୁନ୍ଦରୀ ନଥିଲା, ଗୁଣରେ ମଧ୍ୟ ସର୍ବୋତ୍ତମ ଥିଲା । ରୂପ ଓ ଗୁଣ ଉଭୟରେ ସେ ଝିଅ ଗ୍ରାମବାସୀଙ୍କର ଶ୍ରଦ୍ଧା ଓ ସମ୍ମାନ ଅର୍ଜନ କରିପାରିଥିଲା । ଗ୍ରାମବାସୀ ବୃଦ୍ଧ ବୃଦ୍ଧା, କିଶୋର କିଶୋରୀ, ତରୁଣ ତରୁଣୀ ସମସ୍ତେ ମୋମୋଲର ପ୍ରଶଂସା ଗାନ କରୁଥିଲେ । ଏପରି ରୂପଗୁଣ ସମ୍ପନ୍ନା ଝିଅଟିଏ ସେ ଖଣ୍ଡମଣ୍ଡଳରେ ଆଉ କେହି ନଥିଲେ ।

ଦିନେ ମୋମୋଲର ମା' ମାଛ ଧରିବା ଲାଗି ଗୋଟିଏ ଦୂର ପାହାଡ଼ିଆ ନଦୀକୁ ଯାଇଥିଲା । ମାଛ ଧରିବା ପୂର୍ବରୁ ସବୁଦିନର ଅଭ୍ୟାସ ଅନୁସାରେ ସେ ଠାକୁରଙ୍କୁ ସୁମରଣା କଲା । ବହୁ ସମୟ ପର୍ଯ୍ୟନ୍ତ ପ୍ରାର୍ଥନା କରି କହିଲା, "ପ୍ରଭୁ ! ଆଜି ମୋତେ ଆଶୀର୍ବାଦ କର । ମୁଁ ଯେପରି ଟୋକେଇ ଭର୍ତ୍ତି ହେବା ଭଳି ମାଛ ଧରିପାରିବି, ମୋତେ ସାହାଯ୍ୟ କର ।" ମୋମୋଲର ମା' ଥିଲା ଗୁଙ୍ଗ୍ ନାମକ ନାଗା ଆଦିବାସୀ ମହିଳା । ଗୁଙ୍ଗ୍‌ମାନେ ବିଶ୍ୱାସ କରନ୍ତି ନଦୀ ଭିତରେ ସାକ୍ଷାତ ଦେବତା ବାସ କରୁଛନ୍ତି । ସେହି ଦେବତାଙ୍କ କୃପାରୁ ନଦୀ ବୋହିଯାଉଛି । ତାଙ୍କରି ଅଦୃଶ୍ୟ ଶକ୍ତି ଯୋଗୁଁ ନଦୀରୁ ଏତେ ସ୍ୱଚ୍ଛ ଓ ପବିତ୍ର ପାନୀୟ ଜଳ ମିଳେ । ନଦୀଟିରେ ନାନା ଜାତିର ମାଛ ଖେଳୁଛନ୍ତି; ଏହା ମଧ୍ୟ ସେହି ଦୟାମୟଙ୍କ ଅଶେଷ କରୁଣାର ପ୍ରମାଣ ।

ମୋମୋଲର ମା' ସେଦିନ ନିର୍ମଳ ହୃଦୟ ଓ ପବିତ୍ର ଚିତ୍ତରେ ନେଦୀ ଗର୍ଭସ୍ଥ ଦେବଦେବୀଙ୍କୁ ପ୍ରାର୍ଥନା ଜଣାଇଲା । ଠାକୁରଙ୍କୁ ମନୋବାଞ୍ଛା ଜଣାଇଲା । ମାନସିକ କଲା ଯଦି ଠାକୁରେ ତା' ଗୁହାରି ଶୁଣିବେ ଏବଂ ସେ ବନ୍ଧୁ ପରିମାଣରେ ମାଛ ଧରିବାକୁ ସେଦିନ ସମର୍ଥ ହେବ, ତେବେ ନିଜ ଝିଅ ମୋମୋଲକୁ ଠାକୁରଙ୍କ ନିକଟରେ ନୈବେଦ୍ୟ କରିବ । ନଦୀ ହୋଇ ବହି ଯାଉଥିବା ପରାକ୍ରମଶାଳୀ ଦେବତାଙ୍କ ନିମିତ୍ତ ମୋମୋଲକୁ ସମର୍ପଣ କରିବ ।

ପ୍ରାର୍ଥନା ଶେଷ କରି ମୋମୋଲର ମା' ମାଛ ଧରିବାରେ ଲାଗିଗଲା । ଠାକୁର ତା' ଡାକ ଶୁଣିଲେ ବୋଧହୁଏ । ପୁରା ଟୋକେଇ ଭର୍ତ୍ତିକରି ସେ ମାଛ ଧରି ଆଣିଲା । ହର୍ଷୋତ୍ଫୁଲ୍ଲ ହୋଇ କୁଡ଼ିଅକୁ ଲେଉଟି ଆସିଲା । ଜ୍ଞାତିକୁଟୁମ୍ବ, ବନ୍ଧୁ ବାନ୍ଧବଙ୍କୁ ମାଛ ଉପହାର ଦେଇ ଆସିଲା । ବାପା, ମା, ଝିଅ ବଉଁଶଯାକ ମାଛ ତରକାରି, ମାଛ ପୋଡ଼ା, ଭଜା ଖାଇ ମଜ୍ଜାକଲେ ।

ଏମିତି କିଛି ଦିନ ଗଡ଼ିଗଲା । ମୋମୋଲର ରୂପଗୁଣ ଚହଟିବାରେ ଲାଗିଥାଏ । ବାପ ମା' ଝିଅଟିକୁ ଅଧିକରୁ ଅଧିକ ଯତ୍ନରେ ବଢ଼ାଉଥାନ୍ତି । କାଳକ୍ରମେ ମୋମୋଲର ମାଆ ଗୃହବାସ କାମରେ ଏବଂ ଚୁହକର୍ମରେ ବେଶି ବ୍ୟସ୍ତ ରହିଗଲା । ନଦୀ ଦେବତାଙ୍କୁ ଯେଉଁ ନୈବେଦ୍ୟ ଯାଚିଥିଲା ଯେ ମୋମୋଲକୁ ନଦୀ ଦେବତାଙ୍କୁ ବିବାହ ଦେବ, ସେକଥା ତା' ମନରୁ ପାଶୋରି ହୋଇଗଲା ।

ହଠାତ୍ ଥରେ ରାତିରେ ମୋମୋଲ ତା ନିଜ କୋଠରୀରେ ଶୋଇବାକୁ ଯାଇ ଜଣେ ରୂପବାନ ଯୁବକଙ୍କୁ ଦେଖିପାରିଲା । ଏପରି କନ୍ଦର୍ପ ରୂପ ଧାରଣ କରିଥିବା କୌଣସି ଯୁବକକୁ ମୋମୋଲ କେବେ ନିଜ ଶଯ୍ୟା ନିକଟରେ ପାଇବ ବୋଲି ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରିନଥିଲା । ଜଣେ ସୌମ୍ୟ-ବଦନ, ସୁଦର୍ଶନ, ଅପରୂପ ଯୁବକ ଯେ ଆକସ୍ମିକ ଭାବେ ମୋମୋଲର ଶୋଇବା ଘରେ ଏପରି ନିକାଞ୍ଚନରେ ଉଭା ହୋଇଯିବେ, ଏହା ପଲ୍ଲୀ କିଶୋରୀକୁ ଇନ୍ଦ୍ରଜାଲ ଭଳି ମନେ ହେଲା !

ଯୁବକଙ୍କ ଅସାମାନ୍ୟ ସୌନ୍ଦର୍ଯ୍ୟରେ ମୋମୋଲ ନିଜକୁ ଭୁଲିଗଲା । ଉଭୟ ପରସ୍ପର ପ୍ରତି ପ୍ରେମାସକ୍ତ ହୋଇ ପଡ଼ିଲେ । ତାଙ୍କ ରୂପରେ ମୁଗ୍ଧ ହୋଇ ମୋମୋଲ ତାଙ୍କୁ ହିଁ ମନେ ମନେ ଆପଣାର ସ୍ୱାମୀ ବାଛିନେଲା । କିନ୍ତୁ ସୁଖରେ ରାତ୍ରି ଯାପନ କରି ସାରି, ଭୋର ହେବା ପୂର୍ବରୁ ସେହି ଯୁବକ ଯେପରି ଅନାହୂତ ହୋଇ ବିଜେ କରିଥିଲେ, ସେହିପରି ଅକସ୍ମାତ୍ ଅଦୃଶ୍ୟ ହୋଇଗଲେ । ଗତ ରାତିର ଅଦ୍ଭୁତ ଘଟଣାବଳୀକୁ ମୋମୋଲ ମନ ଭିତରେ ଗୋପନରେ ଲୁଚି ରଖିଲା । କାହାରିକୁ କିଛି ହେଲେ ଇସାରା ବି ଦେଲ ନାହିଁ ।

ଏଣିକି ପ୍ରତି ରାତିରେ ଏହି ଅପରିଚିତ ଯୁବକ ମୋମୋଲ୍ ଶୋଇବା ଘରେ ଆବିର୍ଭୂତ ହେଲେ ଏବଂ ମୋମୋଲ୍ ସହିତ ଘନିଷ୍ଠ ପ୍ରଣୟରେ ଲିପ୍ତ ରହିଲେ । ମୋମୋଲ୍ କେବଳ ରାତିଟି ଯାକ ତାଙ୍କୁ ନିଜ ପାଖରେ ଦେଖି ପାରୁଥିଲା । ସକାଳ ହେବା ପୂର୍ବରୁ ସେହି ଯୁବକ ଆଶ୍ଚର୍ଯ୍ୟ ରୂପେ ଅନ୍ତର୍ହିତ ହୋଇ ଯାଉଥିଲେ । କାଳକ୍ରମେ ମୋମୋଲ୍‌ର ଗର୍ଭ ଅସ୍ଥିର ହେବାକୁ ଲାଗିଲା । ଗୋପନ ପ୍ରଣୟ ନିବିଡ଼ ହେବାକୁ ବସିଲା । ଉଭୟ ପ୍ରେମରେ ଉନ୍ମତ୍ତ ହେଲେ । ଅନେକ ରାତିରେ ଏମିତି ଏକାନ୍ତ ଗୋପନ ପ୍ରେମରେ ଲିପ୍ତ ହେବା ଉତ୍ତାରୁ, ଯୁବକ ଜଣକ ଥରେ ମୋମୋଲ୍ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବାକୁ ନିଜ ଅଭିଳାଷ ପ୍ରକାଶ କଲେ । ମୋମୋଲ୍ ତାଙ୍କୁ ପତି ରୂପେ ବରଣ କରିବାକୁ ସମ୍ମତ କି ନୁହେଁ, ସେ ତାହା ଜାଣିବାକୁ ଚାହିଁଲେ । ଉଭୟ ପରସ୍ପରକୁ ବିବାହ କରିବେ କି ? ସେ ଜିଜ୍ଞାସା କଲେ । ମୋମୋଲ୍ ମୁହଁରେ ଅପୂର୍ବ ଶିହରଣ ଖେଳିଗଲା । ଈଷତ୍ ହାସ୍ୟରେ ସେ ବିବାହ ପ୍ରସ୍ତାବକୁ ସ୍ୱାଗତ ଜଣାଇଲା ।

ପ୍ରଣୟୀ ଯୁଗଳ ଏହିପରି ରାତି ପରେ ରାତି କଟାଇବାରେ ଲାଗିଥାନ୍ତି । ଥରେ ମୋମୋଲ୍ ମନରେ ଚିନ୍ତା ଉଠିଲା—ଏହି ମୋର ପ୍ରେମିକ ଖାଲି ରାତି ବେଳେ କାହିଁକି ଦର୍ଶନ ଦେଉଛନ୍ତି ? ଦିନରେ କେବେହେଲେ ସେ ଆସୁ ନାହାନ୍ତି କାହିଁକି ? ମୋମୋଲ୍ ପକ୍ଷେ ଏହା ବିଶେଷ ରହସ୍ୟମୟ ହୋଇ ପଡ଼ିଲା । କିପରି ଜାଣିବ ? କାହାକୁ ବା ପଚାରିବ ? ଏତେଦିନ ଧରି ସବୁ ବିଷୟ ସେ ନିଜେ ଗୋପନ ରଖିଥିଲା !!

ମୋମୋଲ୍ ଭାରି ଅଡୁଆରେ ପଡ଼ିଲା । ରହସ୍ୟ ଭେଦ କରିବାକୁ ତା'ର ବୁଦ୍ଧି ବଣା ହୋଇଗଲା । ଶେଷକୁ ମୋମୋଲ୍ ସ୍ଥିର କଲା ଯେ ବାପାଙ୍କ ନିକଟରେ ସବୁ କଥା ଖୋଲି କହି ଦେଇ ତାଙ୍କର ପରାମର୍ଶ ନେଲେ ଭଲ ହେବ । ବାପଝିଅଙ୍କର ବେଶ୍ ମନମେଳ ଥାଏ । ମୋମୋଲ୍ ନିର୍ଭୟରେ ବାପା 'ତୃଙ୍ଗ ରେନା ପାଗ୍ରୋ'ଙ୍କ ନିକଟରେ ସବୁକଥା ଆଦ୍ୟପ୍ରାନ୍ତ ବଖାଣି ଗଲା ।

ଘଟଣା ଶୁଣିବା ପରେ ବାପା ଝିଅକୁ ପରାମର୍ଶ ଦେଲେ—ଝିଅ, ସୂତା ପେଣ୍ଡୁଲାଟିଏ ଖୁବ୍ ବଡ଼ କରି ତିଆରି କରି ରଖ । ଆଜି ରାତି ପାହାନ୍ତାରେ, ସେଇ ଯୁବକ ତୋ' କୋଠରିରୁ ବିଦାୟ ନେବା ପୂର୍ବରୁ ସୂତା ପେଣ୍ଡୁଲାଟି ତାଙ୍କ ପିଠି ପାଖ ପୋଷାକର କୌଣସି ସ୍ଥାନରେ ଗଣ୍ଠି ପକାଇ ବାନ୍ଧିଦେବୁ । ସାବଧାନରେ ସୂତାକୁ ଗଣ୍ଠି ପକାଇବୁ ଯେପରି ସେ ଆଦୌ କିଛି ହେଲେ ଜାଣିପାରିବେ ନାହିଁ । ତାଙ୍କ ଅଜାଣତରେ ଶୀଘ୍ର ସୂତା ପେଣ୍ଡୁଲା ବାନ୍ଧି ଦେବୁ । ବିଦାୟ ନେଇ ଯିବାପରେ ସୂତା ପେଣ୍ଡୁଲାରୁ ସୂତା ଝିଅ ତାଙ୍କ ପଛେ ପଛେ ଲମ୍ବି ଲମ୍ବି ଯାଉଥିବ ।

ସେ ଚାଲିଯିବାର କିଛି ସମୟ ପରେ ଲୁଚି ଲୁଚି ତୁ ତାଙ୍କ ପଛେ ଚାଲୁଥିବୁ । ଶେଷକୁ କେଉଁ ସ୍ଥାନରେ ସେ ଅଟକିବେ, ଅଥବା କେଉଁ ସ୍ଥାନରେ ତାଙ୍କ ବାସଗୃହ ପଡ଼ିବ; ତୁ ଠାବ କରିନେଇ ପାରିବୁ ।

ବାପାଙ୍କ ପରାମର୍ଶକୁ ମୋମୋଲକୁ ଅକ୍ଷରେ ଅକ୍ଷରେ ପାଳନ କଲା । ଯୁବକ ଜଣକ ଆସି ରାତି ଯାପନ କରିଗଲେ । କୌଣସି ସନ୍ଦେହ କରିବାର କାରଣ ତାଙ୍କର ନଥିଲା । ପ୍ରତ୍ୟୁଷରୁ ଉଠି ସେ ଶଯ୍ୟା ତ୍ୟାଗକରି ବାହାରି ପଡ଼ିଲେ । ସୂତା ପେଣ୍ଡୁଲା ତାଙ୍କ ପଛରେ ଲମ୍ବି ଲମ୍ବି ଗଲା । ମୋମୋଲ ବି ସେଦିନ ଭୋରରୁ ଉଠିପଡ଼ି ସଜବାଜ ହୋଇଗଲେ । ସୂତାକୁ ଧରି ଧରି ସେ ଧୀରେ ଧୀରେ ଚାଲିବାରେ ଲାଗିଲା । କିଛି ବାଟ ଯିବାପରେ ଯୁବକ ଜଣକ ଟିକଏ ବୁଲି ପଡ଼ି ପଛକୁ ଅନାଇଲେ । ତାହାର ଦୃଷ୍ଟି ଏଡ଼ାଇବା ଲାଗି ମୋମୋଲ ବୁଦା ଉହାଡ଼ରେ କ୍ଷଣକ ଲାଗି ଲୁଚିଗଲା ।

ଚାଲୁଚାଲୁ ମୋମୋଲ ଅଳ୍ପ ଦୂରରେ ଗୋଟିଏ ହ୍ରଦ ଦେଖିପାରିଲା । ମୁହୂର୍ତ୍ତିକ ମଧ୍ୟରେ ମୋମୋଲର ସେହି ପ୍ରେମିକ ହ୍ରଦ ଭିତରେ ଗୋଡ଼ ଦେଉ ଦେଉ ହଠାତ୍ ଉଭାନ୍ ହୋଇଗଲେ ।

ହ୍ରଦ ତୀରରେ ପହଞ୍ଚି ସାରି ମୋମୋଲ କିଛି ସମୟ ଅପେକ୍ଷା କରି ବସି ରହିଲା । ଆଶା କରୁଥିଲା, ତାହାର ପ୍ରାଣ ସଖାର ପୁନରାୟ ଆବିର୍ଭାବ ହେବ ଏବଂ ଉଭୟେ ଉଭୟଙ୍କୁ ସାଦର ଆଲିଙ୍ଗନ କରିବେ । ଅପେକ୍ଷା କରି କରି ତାର ଧୈର୍ଯ୍ୟଚ୍ୟୁତ ଘଟିଲା । ତା ଆଖିରୁ ଝର ଝର ଲୁହ ଗଡ଼ି ପଡ଼ିଲା । ଚିବୁକ ସାରା ଲୋତକାପ୍ଳୁତ ହୋଇଗଲା । କାନ୍ଦି କାନ୍ଦି ସେ ଭୂଇଁରେ ଲୋଟି ପଡ଼ିଲା । କିନ୍ତୁ ତାର ପ୍ରେମିକ ଓ ଭାବୀ ସ୍ୱାମୀର ଦେଖାଦର୍ଶନ ମିଳିଲା ନାହିଁ । ତାର ହୃଦୟ ଭାରାକ୍ରାନ୍ତ ହେଲା । ନୈରାଶ୍ୟ ଜର୍ଜରିତ ହୋଇ ସେ ଆପଣା ଘରକୁ ବାହୁଡ଼ି ଆସିବାକୁ ପାଦ ଉଠାଇଲା ।

ଘରେ ପହଞ୍ଚି ବହୁତ କନ୍ଦାକଟା କଲା । ବାପା ମା' ଚାଷକ୍ଷେତକୁ ଯାଇଥିଲେ । ସନ୍ଧ୍ୟା ବେଳକୁ ସେମାନେ ଫେରି ଆସି ଝିଅକୁ ଏପରି ବିଷର୍ଣ୍ଣ ବଦନା ହୋଇ ବସିଥିବାର ଦେଖିଲେ । ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା ପରି ସେମାନେ ଶଙ୍କିତ ହେଲେ । ଝିଅ ଠାରୁ ସବୁକଥା ଟିକିନିଖି ଶୁଣି ସାରିଲା ପରେ ବାପ ତ୍ରଙ୍ଗ୍‌ଶେନା ପାବ୍ରୌ ସିଦ୍ଧାନ୍ତ କଲା ଯେ ସେହି ପ୍ରେମିକ ମନୁଷ୍ୟ ନୁହେଁ—ସେ ହେଉଛି ଜଣେ ଶଇତାନ୍ !!

ଶଇତାନ୍ ଆସି ତା' ସହିତ ପ୍ରେମ କରୁଛି ବୋଲି ଶୁଣିବା ମାତ୍ରେ ମୋମୋଲ ବୋଧକଲା, ତା' ମୁଣ୍ଡରେ ଚଡ଼କ ପଡ଼ୁଛି । ଭୂଇଁ ଫାଟି ଯାଉଛି । ସେ ପାତାଳ ପୁରୀକୁ ଖସି ପଡ଼ୁଛି । ମୋମୋଲ ଶୈତାନ୍‌କୁ ବାହା ହେବ ?

ଏପରି ପୋଡ଼ା କପାଳୀ ଯିଏ ? ଏତେ ଦିନ ଏତେ ଅନ୍ତରଙ୍ଗ ଭାବେ ଯାହା ସହିତ ପ୍ରେମାସକ୍ତ ଥିଲା ସେ ପୁଣି ଗୋଟାଏ ଶଇତାନ୍ ? ମୋମୋଲି ନିଜକୁ ଧିକ୍କାର କରିବାକୁ ଲାଗିଲା । ଛି, ଛି, ଛି, ' ବାପାମା' ମୁହଁରେ ସେ କାଳି ବୋଳି ଦେଲା ?? ଯଦି ଶେଷକୁ ସେ ଶଇତାନ୍ ଦ୍ୱାରା ଧର୍ଷିତା ହୋଇଛି, ତେବେ ତା' ରୂପ ଗୁଣର ବା କି ମୂଲ୍ୟ ? ମୋମୋଲିର ଚେତା ବୁଡ଼ିଗଲା !

ମୋମୋଲିକୁ ସାନ୍ତ୍ୱନା ଦେବା ଉତ୍ତାରୁ, ଗାଁର କେତେ ଜଣ ଜ୍ଞାତି-କୁଟୁମ୍ବଙ୍କ ସଙ୍ଗରେ ଧରି ତା'ର ବାପା ଚଙ୍ଗ୍ରେନା ପାଗ୍ରୋ ସେହି ହ୍ରଦ ନିକଟକୁ ଯାତ୍ରା ସୁରୁକଲେ । ହ୍ରଦ ଆଖପାଖରେ କୌଣସି ଜଣେ ହେଲେ ମଣିଷକୁ ଦେଖିଲେ ନାହିଁ । ଝିଅର ପ୍ରେମିକକୁ ବା ପାଇବେ କାହୁଁ ?

ଗାଁର ସାହସୀ ଯୁବା ଲୋକ କେତେ ଜଣ ହ୍ରଦ ଭିତରକୁ ଝାମ୍ପ ଦେଲେ । ଗଭୀର ପାଣି ଭିତରକୁ ଡୁବନ ଦେଇ ଭେଣ୍ଡିଆମାନେ ଅଣ୍ଡାଳିବାକୁ ଲାଗିଲେ । କିଛି ବା ମିଳିଥିବ ହେଲେ ! ଜଣେ ଭୁଡାଲି ଗୋଟାଏ କଳା ଜନ୍ତୁ ଆକାରର ଖଣ୍ଡେ ଗଡ଼ ପାଣି ଭିତରୁ ଉପରକୁ ଟେକି ଆଣିଲା । ସେଇଟି କି ପଦାର୍ଥ ହୋଇପାରେ, ତାହା କେହି ଠଉରାଇ ପାରିଲେ ନାହିଁ । ତେଣୁ ତାକୁ ପୁନର୍ବାର ପାଣି ଭିତରକୁ ଫୋପାଡ଼ି ଦିଆଗଲା ।

ଗଭୀର ମନ ଦୁଃଖରେ ମୋମୋଲିର ବାପା ଓ ତାଙ୍କ ସଙ୍ଗୀମାନେ ହ୍ରଦ ନିକଟରୁ ଗାଁକୁ ବାହୁଡ଼ି ଆସିଲେ । ଗାଁରେ ସବୁ କଥା ପଦାରେ ପଡ଼ିଗଲା । ମୋମାଲିର ପ୍ରେମ କାହାଣୀ ସାଧାରଣରେ ଚର୍ଚ୍ଚାର ବିଷୟ ହୋଇ ଉଠିଲା । ଗାଁର ମାଇପେ ଟୁପ୍ ଟାପ୍ ଫୁସୁର୍ ଫାସର ହେଲେ । ସୁନ୍ଦରୀ ଝିଅମାନଙ୍କ ଉପରେ ଶୈତାନ୍‌ର ଦୃଷ୍ଟି ପଡ଼ିଲା ବୋଲି ପଲ୍ଲୀ ଗାଁଟିରେ ବିଷାଦ ଖେଳି-ଗଲା । ମୋମୋଲିର ମା'କୁ ମାଇପେ ଘେରିଗଲେ । କ'ଣ ହେଲା, କିପରି ଏ ଅଘଟଣା ଘଟିଲା; ଶୈତାନ୍ କିପରି ଶୟନ କକ୍ଷରେ ପ୍ରବେଶ କରୁଥିଲା; ସମସ୍ତେ ଆମୂଳଚୂଳ ବର୍ଣ୍ଣନା ଲୋଡ଼ିଲେ । ମୋମୋଲିର ମା'ର ଉତ୍ତରରେ କାହାରିକୁ ହେଲେ ସନ୍ତୁଷ୍ଟ କରିପାରିଲା ନାହିଁ । ବିଚାରୀ ତା' ଅଲିଅଳି ଝିଅ କପାଳରେ କାହିଁକି ଏ ଚଡ଼କ ପଡ଼ିଲା, ସେ ନିଜେ ବୁଝିପାରୁ ନଥାଏ ।

ଏହିପରି ମନ ଦୁଃଖରେ ଅଉଟି ପାଉଟି ହେଉଥିବା ବେଳେ ସେ ରାତିରେ ନିଦରେ ସ୍ୱପ୍ନଟିଏ ଦେଖିଲା । ହଠାତ୍ ତାର ସୁଦୂର ଅତୀତର ଘଟଣା ସ୍ମରଣ ହେଲା । ଯେଉଁଦିନ ସେ ନଦୀକୁ ମାଛ ଧରିବାକୁ ଯାଇଥିଲା, ଏବଂ ବହୁତ ମାଛ ଧରିପାରିଲା, ଝିଅ ମୋମୋଲିକୁ ନଦୀ ଦେବତାଙ୍କୁ ଅର୍ପଣ କରିବ ବୋଲି ମାନସିକ ଜଣାଇଥିଲା; ସେଇକଥା ତା' ସ୍ମୃତିପଟରେ ଉଦିତ ହେଲା । ନଦୀ ଦେବତାଙ୍କ ନିକଟରେ ସେ ପ୍ରତିଶ୍ରୁତିବଦ୍ଧ ହୋଇଥିଲା; ତାର ପ୍ରତିଶ୍ରୁତି ସେ

ରକ୍ଷା କରିପାରି ନାହିଁ ବୋଲି ବ୍ୟସ୍ତ ହେଲା । ସାଙ୍ଗସାଥୀ ଗାଁ ମାଇପଙ୍କୁ ସେ ଏହି ଘଟଣା ଫିଟାଇ କହିଲା; କିନ୍ତୁ ଏହାକୁ କେହି ଗୁରୁତ୍ୱ ଦେଲେ ନାହିଁ । ଗାଁ ଲୋକେ ଏହାକୁ ହସି ଉଡ଼ାଇ ଦେଲେ ।

ରାତି ହେଲା । ସେଦିନ ରାତିରେ ପୁଣି ସେଇ ସୁଦର୍ଶନ ଯୁବକ ଆସି ନିଜର ପ୍ରେମିକା ମୋମୋଲର ଶଯ୍ୟା ନିକଟରେ ହାଜର ହୋଇଗଲେ । ଦିନ-ବେଳେ କ'ଣ କ'ଣ ଘଟିଯାଇଛି, ତାଙ୍କୁ କିଛି ଜଣାନଥିଲା । ତେଣୁ ସବୁ ରାତି ଭଳି ସେ ମୋମୋଲ ସହିତ ରସିକତା ଜମେଇଲେ । କିନ୍ତୁ ସେ ଲକ୍ଷ୍ୟ କଲେ, ମୋମୋଲ ଆଉ ପ୍ରୀତି ସମ୍ଭାଷଣ ଗ୍ରହଣ କରୁନାହିଁ । ମୋମୋଲ ତାଙ୍କ ପ୍ରେମ ପ୍ରତ୍ୟାଖ୍ୟାନ କରୁଛି । ମୋମୋଲର ବିରସ ବଦନ ଦେଖି, ଯୁବକ ଜଣକ ତାକୁ ଅତି ସୋହାଗରେ ବାହୁ ବନ୍ଧନରେ ଆବଦ୍ଧ କରିବାକୁ ତା'ର ନିକଟବର୍ତ୍ତୀ ହେବା ମାତ୍ରେ, ମୋମୋଲ ଚିତ୍କାର କଲା—"ସାବଧାନ ! ମୋତେ ଆଉ ଛୁଇଁ ପାରିବ ନାହିଁ । ମୁଁ ତୁମକୁ ବିବାହ କରିବ ନାହିଁ ।"

ମୋମୋଲ ଦ୍ୱାରା ଏପରି ପରିତ୍ୟକ୍ତ ଓ ଲାଞ୍ଛିତ ହେବେ ବୋଲି, ଯୁବକ ଜଣକ କେବେ ହେଲେ କଳ୍ପନା କରିନଥିଲେ । ମୋମୋଲ ଥରେ କଥା ଦେଇ ସାରିଛି । ବିବାହ ଲାଗି ସମ୍ମତି ପ୍ରକାଶ କରି ସାରିଛି । ବାକ୍‌ଦତ୍ତା ହୋଇଛି । ଏବେ ପୁଣି ଏପରି ନିଷ୍ଠୁର ହେଲା କିପରି ? ହୃଦୟ ବିଦୀର୍ଣ୍ଣ ହେଲା ପରି ଯୁବକକୁ ଜଣାଗଲା । ଏପରି ଘଟଣା ଘଟିପାରେ ବୋଲି ସ୍ୱପ୍ନରେ ସୁଦ୍ଧା ସେ ଭାବିନଥିଲେ ।

କ୍ରୋଧ ଜର୍ଜରିତ ହୋଇ ଯୁବକ ଜଣକ ମୋମୋଲକୁ କହିଲେ—"ମୋତେ ଯଦି ବିବାହ ନକରିବୁ ତେବେ ମୁଁ ତୋର ପ୍ରାଣନାଶ କରିବାକୁ ପଛେଇବି ନାହିଁ ।" ମୋମୋଲ ନିଜ ନିଷ୍ପତ୍ତିରେ ଅଟଳ ରହି ଉତ୍ତର ଦେଲା—"ମୋ' କଥା ଅନ୍ୟଥା ହେବ ନାହିଁ । ତୁମେ ମୋର ଯାହା ଅନିଷ୍ଟ କରିବାର କର । କିନ୍ତୁ ମୁଁ ତୁମକୁ ବିବାହ କରିପାରିବି ନାହିଁ ।"

"ଆ, ଆ, ତୋତେ ଦେଖିନେବି" ବୋଲି କହି ସେହି ଯୁବକ ରାଗ ତମ ତମ ହୋଇ ଶୟନକକ୍ଷ ପରିତ୍ୟାଗ କରି ହଠାତ୍ ଅଦୃଶ୍ୟ ହୋଇଗଲେ ।"

ଯୁବକ ବେଶ ଧାରଣ କରି ଆସିଥିବା ଶଇତାନ୍ ଉଭେଇଗଲା । ମୋମୋଲ ଭୟ, ନୈରାଶ୍ୟ ଓ ଦୁଃଖରେ ଅତୀତର ପ୍ରେମାନୁଭୂତିକୁ ଭୁଲିଯାଇ ନପାରି ଗଭୀର ମନସ୍ତାପରେ ସନ୍ତୁଳି ହେଲା ।

ଶୈତାନ୍ ପଳାଇ ଯିବାର ଦୁଇଦିନ ପରେ ପକ୍ଷୀ ଗାଁ ରୁଙ୍ଗ୍‌ଶାଙ୍ଗ୍‌ରେ ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇଗଲା । ମୂଷଳ ଧାରରେ ବର୍ଷା ଆରମ୍ଭ ହେଲା । ଏପରି ଘୋର ବର୍ଷା, ଘଡ଼ଘଡ଼ି ଓ ପବନ ଆଗରୁ କେବେହେଲେ

ଗ୍ରାମବାସୀ ଦେଖିନଥିଲେ । ପ୍ରାୟ ଗୃକଣା ଦିନ ଧରି ଅବିରତ ବୃଷ୍ଟି ଫଳରେ ଗାଁ ଗଣ୍ଡା, ଘର ଦ୍ୱାର ଜଳମଗ୍ନ ହେବାକୁ ଲାଗିଲା । ବନ୍ୟାଜଳରେ ପ୍ରବଳ ସ୍ରୋତ ଚାରିଆଡେ ବିସ୍ତୃତ ହୋଇଗଲା । ଗ୍ରାମବାସୀ ପ୍ରମାଦ ଗଣିଲେ । ବନ୍ୟାପ୍ଲାବନ ଧୁ ଧୁ ହୋଇ ମାଡ଼ି ଆସୁଥିଲା ।

ଗ୍ରାମବାସୀ ଚିନ୍ତାଗ୍ରସ୍ତ ହୋଇ ପଡ଼ିଥିବା ବେଳେ ବନ୍ୟା ସ୍ରୋତରୁ 'ମୋ' ମୋ' (ମୋ ମୋଲ) ଧ୍ୱନି ଉଠୁଥିବାର ଶୁଣି ଅଶ୍ଚର୍ଯ୍ୟ ହୋଇଗଲେ । ଗ୍ରାମବାସୀ ନିଜ ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ । କିନ୍ତୁ ସତକୁ ସତ ପାଣି ଭିତରୁ 'ମୋ' ମୋ' ରବ ନିଶ୍ଚିତ ରୂପେ ଶୁଣା ଯାଉଥାଏ । ବନ୍ୟାଜଳ ଭିତରୁ ଏପରି ଅଦ୍ଭୁତ ଚିତ୍କାର ଶୁଣି ଗ୍ରାମବାସୀ ସଭିଏଁ ଭୟଭୀତ ହେଲେ । ଭାବିଲେ, ଏ ହେଉଛି ମହାକାଳ ରଡ଼ି !

ଏତିକି ବେଳେ ସେମାନଙ୍କର ପ୍ରତ୍ୟୟ ଆସିଲା ଯେ ନଦୀ ଦେବତାଙ୍କ କୋପ ବଢ଼ୁଛି । କାରଣ, ମୋମୋଲ ତାଙ୍କ ପ୍ରେମ ପ୍ରତ୍ୟାଖ୍ୟାନ କରି ଦେଇଛି । ମୋମୋଲର ମା' ଠାକୁରଙ୍କୁ ଯାହା ନୈବେଦ୍ୟ ଯାଚି ଥିଲା, ତାହା ଦେଲା ନାହିଁ । ଠାକୁର କ୍ରୋଧ ପ୍ରକାଶ କରିଛନ୍ତି । ନଦୀଗର୍ଭରେ ପ୍ରବଳ ବନ୍ୟାଜଳ ବୃଦ୍ଧି ପାଉଛି । କେତେକ ମନୁଷ୍ୟ ଓ ପଶୁପକ୍ଷୀ ବନ୍ୟାଜଳରେ ଭାସିବାକୁ ଲାଗିଲେଣି । ଗାଁ ଦାଣ୍ଡର ବଡ଼ବଡ଼ ଗଛ ସବୁ ବୁଡ଼ିଯିବା ଉପରେ । ପାହାଡ଼ ଚାରିପଟକୁ ପାଣି ମାଡ଼ି ଆସୁଛି । ଅବସ୍ଥା ସଙ୍ଗୀନ୍ ।

ସବୁଠାରୁ ବଡ଼ ଦୁଇଟି ମୁଣ୍ଡିଆ ପାହାଡ଼ ଗାଁ ନିକଟରେ ଥିଲା । ଗୋଟିଏ ପାହାଡ଼ର ନାମଥିଲା 'ଗାଶୁନଶୋଙ୍ଗ୍' ଅନ୍ୟଟିର ନାମ 'ସ୍ୟାଙ୍ଗ୍' । ଏହି ମୁଣ୍ଡିଆ ଦୁଇଟି ଜଳମଗ୍ନ ହୋଇଯିବା ପୂର୍ବରୁ ଗାଁ ଲୋକେ ପ୍ରାଣ ବିକଳରେ ଘରକରଣା ଯେତିକି ଜିନିଷ ନେଇ ପାରିଲେ ନାହିଁ ତାକୁ ମଜଭୁତ ବେତ ଦୌଡ଼ିଲେ ବାନ୍ଧି ଏପରି ଗଛ ଓ ବୁଦାରେ ବାନ୍ଧିଦେଲେ ଯେଉଁ ଗଛ କି ବୁଦା ବହି ପାଣିରେ ଉପୁଡ଼ି ଯିବ ନାହିଁ । ଜନ୍ତୁ ଗୁଡ଼ିକ ପାଣି ଉପରେ ଭାସିବାକୁ ଲାଗିଲେ ।

ଚାରିଆଡ଼ ଜଳାର୍ଣ୍ଣବ ହୋଇଗଲା । ଲୋକେ ଆକୁଳ କ୍ରନ୍ଦନ କଲେ । ବର୍ଷା ଓ ବାତ୍ୟା କମିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ବନ୍ୟାଜଳ ଫୁଲି ଫୁଲି ଚାଲିଲା । ଲୋକେ ବଞ୍ଚିବାର ଆଶା ଛାଡ଼ିଦେଲେ । ଜାଣିଲେ, ପ୍ରଳୟ ଆସିଗଲା ।

ଏତିକିବେଳେ ମୋମୋଲର ମା' କ'ଣ ଭାବିଲା କେଜାଣି ନିଜ ଝିଅକୁ ପାଣି ଭିତରକୁ ଭସାଇ ଦେଲା । ଅତି ଆଦର ଓ ଗେଲବସର ଝିଅ ମୋମୋଲ

ହମିଥରେ ନଘ ଗର୍ଭରେ ଲୀନ ହୋଇଗଲ। ବଡି ପାଣିରୁ ମୋ' ମୋ' ଧ୍ୱନ ଆଉ ଶୁଣାଗଲ ନାହିଁ।

ସତେ ଯେମିତି କଏ କାଉଁଶ ହାଡ ଛୁଆଁଇ ଦେଲ। କୁହୁକ !! ଲଗାଇଲ କଏ ? ସତେ ଅବା କମିଆ ଲଗିଗଲ ! ଇନ୍ଦ୍ରଜାଲ ଘୋଟିଗଲ !! ସମସ୍ତେ ବସ୍ମିତ ହୋଇଗଲେ।

ବନ୍ୟାଜଳ ହ୍ରାସ ପାଇବାକୁ ଲଗିଲା। ଜବଜନ୍ତୁ ମାନେ ନଜକୁ ଉଦ୍ଧାର କରନେଲେ। ବର୍ଷା କମିଗଲ। ବଡି ଛଡ଼ିବାରେ ଲଗିଲେ। ଲେକେ ପାହାଡ ମୁଣ୍ଡଅରୁ ଧୀରେ ଧୀରେ ଓହ୍ଲାଇବାରେ ଲଗିଲେ। ସୃଙ୍ଗ୍‌ଶାଙ୍ଗ୍ ପଶ୍ଚିମରୁ ଜଳ ସମୁଦ୍ର ଶୁଖିଗଲ। ମହାସାଗର ଅପସାରିତ ହେଲ। ଛଳକା ରୁହିଲ। ※

---

※ ସୃଙ୍ଗ୍ ସ୍ପିମରୁଙ୍ଗ୍‌ର, ଖିସ୍ୟେମଟାନ୍ ନାମକ ଦୁଇଟି ନାଗା ଟ୍ରାଇବଙ୍କ ଭାଷାରେ ସାଗର ଓ ମହାସାଗର କୁହାଯାଏ "ମୋଲେଙ୍ଗଇ"। ମୋମୋଲ୍ ଓ ତାର ପ୍ରେମିକ ଗଭୀର ଜଳରେ ବାସ କରନ୍ତି। ମୋମୋଲ୍ ନାମ ଅନୁସାରେ ମହାସାଗର ନାମ ହେଲ ମୋଲେଙ୍ଗଇ। ସମୁଦ୍ରଟା ହୃଦ୍ବିନ୍ଦୁ ଏହିପରି ହୋଇଛି; ଏହା ନାଗାଙ୍କର ପ୍ରାଚୀନ ବିଶ୍ୱାସ।

[Folk Tales from Nagaland ପୁସ୍ତକରୁ ଅନୁବାଦ। ନାଗା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କଲଚର, କୋହିମାରୁ ପ୍ରକାଶିତ ଶ୍ରୀ ପି. ଡି. ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ସଂକଳିତ ବିଭିନ୍ନ ନାଗା ଟ୍ରାଇବଙ୍କ ଲୋକ କାହାଣୀ ପୁସ୍ତକରୁ ଏହି ଶିରୋନାମା ଗଳ୍ପର ଓଡ଼ିଆ ଭାଷାନ୍ତର।]



ଗଳ୍ପ

# ॥ ଛାଇ ଆଲୁଅ ॥

## ଦେବେନ୍ଦ୍ରନାଥ ମହାନ୍ତି

ଏହା ଭିତରେ ପ୍ରାୟ ୬ମାସ ବିତିଗଲଣି । ସେମାନଙ୍କ ସମ୍ବନ୍ଧରେ ଆଉ କୌଣସି ଖବର ଆମେ ରଖିପାରିନାହୁଁ । ସେମାନେ କେଉଁଆଡ଼େ ଗଲେ, କ'ଣ କଲେ, କେଉଁଠି ରହିଲେ—ସେ ବିଷୟରେ କୌଣସି ସମ୍ବାଦପତ୍ର କେବେ ସମ୍ବାଦ ପ୍ରକାଶ କରିନାହିଁ ।

ଆମ ଦପ୍ତରରେ ଆଉ ଗୋଟାଏ ଟ୍ରକ ପାଇଁ ଲୁଣ ମଞ୍ଜୁର କରାଇବା କାମରେ ଅପେକ୍ଷା କରିଥିବା ସର୍ଦ୍ଦାରଜଙ୍କୁ ଦେଖିପକାଇ ପ୍ରମୋଦ କହି ଉଠିଲା—"ଆରେ ହେଇତ ସରଦାରଜୀ, ମୁଁ ଯାଙ୍କର କଥା କହୁଥିଲି । ସତ୍‌ଶ୍ରୀ କାଲ—ସତ୍‌ଶ୍ରୀ କାଲ—।"

ସରଦାରଜୀ ମଧ୍ୟ ହସି ହସି ପ୍ରତ୍ୟୁତ୍ତର ଦେଲେ—'ସତ୍‌ଶ୍ରୀ କାଲ' । ପ୍ରମୋଦ କହିଲା "ଆଜି ଆମେ ଆପଣଙ୍କ ପାଖକୁ ଯିବାପାଇଁ ସ୍ଥିର କରିଥିଲୁ । ଯୋଗକୁ ଆପଣ ଆସିଗଲେ ।"

"କୁହନ୍ତୁ, କୁହନ୍ତୁ, ମୁଁ ଆପଣଙ୍କର କି ସେବା କରିପାରେ ?" —ହିନ୍ଦି-ମିଶା ଓଡ଼ିଆରେ ସରଦାରଜୀ ଉତ୍ତର ଦେଲେ ।

କଥା କଣ କି ଏ ବାବୁ ଦୁଇଜଣ ନୂଆ ଆସି ଏଠାରେ ଜଏନ କରିଛନ୍ତି । ବଡ଼ ଅସୁବିଧାରେ ଅଛନ୍ତି । ଆପଣଙ୍କର ଘର ଯଦି ଖାଲି ଅଛି, ତେବେ ଏମାନଙ୍କୁ ଦିଅନ୍ତୁ । ଗୋଟାଏ ରୁମ୍ ହେଲେ ହୋଇଯିବ ।" ସରଦାରଜୀ ଆମକୁ ଚାହିଁଲେ ଏବଂ କଣ ଭାବି କହିଲେ—"ଗୋଟାଏ ରୁମ୍, ଲେଟ୍ରିନ କଚନ ହେଲେ ଚଳିଯିବ ?"

ମୁଁ ଉତ୍ତର ଦେଲି—"ଖୁସିରେ, ଗୋଟାଏ ରୁମ୍ ହେଲେ ଆମର ଚଳିଯିବ ।"

ତାପରେ ମୁଁ ଓ ମନୋଜ ଆସି ସେଠାରେ ରହିଲୁ । ଆମ ଦୁଇଜଣଙ୍କ ପାଇଁ ତାହା ଯଥେଷ୍ଟ । ଗୋଟାଏ ପ୍ରଶସ୍ତ କୋଠରୀ, ସମ୍ମୁଖରେ ଚଉଡ଼ା ବାରଣ୍ଡା । ପଛପଟେ ଗୋଟାଏ ପାଖରେ ରୋଷେଇ ଘର ଓ ବିପରୀତ ପାଖରେ ବାଥରୁମ୍ ଓ ପାଇଖାନା । ରୋଷେଇ ଘର ପାଖକୁ ଗୋଟାଏ

ଦୁଆର ଏବଂ ସେହି ଦୁଆର ଦେଇ ଆଉ ପାଖକୁ ଗଲେ ସରଦାର ହରଭଜନ ସିଂଙ୍କର ନିଜର ରହିବା ଘର । ବାହାରେ ଗୋଟାଏ ଟିଣ ସେଡ୍‌ରେ ବିରାଟ ଗେରେଜ ।

ସେଠାରେ ରହିବାର ଗୋଟାଏ ସପ୍ତାହ ଭିତରେ ଆମେ ଦେଖିଲୁ ଯେ ଗେରେଜରେ ସବୁବେଳେ ଗୋଟାଏ ନା ଗୋଟାଏ ଟ୍ରକର ମରାମତି କାମ ଚାଲିଥାଏ । ଧଡ଼୍ ଧାଡ଼୍ ଓ ଚଡ଼୍ ଖାଡ଼୍ ଶବ୍ଦରେ ବେଳେ ବେଳେ ଆମେ ଅତିଷ୍ଠ ହୋଇଉଠୁ । ଦିନବେଳେ ତ ଆମେ ଅନୁପସ୍ଥିତ ରହୁ । ତେଣୁ କୌଣସି ଶବ୍ଦ ଓ ଗୋଳମାଳ ସହିତ ଆମର ସଂପର୍କ ରହେନାହିଁ । କିନ୍ତୁ ସନ୍ଧ୍ୟାବେଳେ ଆମେ କୋଠରୀକୁ ଫେରିଆସୁ ଆଉ ଠିକ୍ ସେତିକିବେଳେ ସରଦାରଜୀଙ୍କ ପାଞ୍ଚଟା ଯାକ ଟ୍ରକ ଖାଦାନରୁ ଫେରେ । ଲାଲ ଧୂଳିରେ ଆବୃତ ଟ୍ରକ ଓ କୁଲିମାନଙ୍କର ହୋ ହାରେ ସନ୍ଧ୍ୟା ଗୁଡ଼ିକ ଆମର ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ଯାଉଥିଲେ ।

କୁଲିମାନେ ବିଦାୟ ନେବା ସଙ୍ଗେ ସଙ୍ଗେ ଆରମ୍ଭ ହୁଏ ପରବର୍ତ୍ତୀ ଦିନ ପାଇଁ ପ୍ରସ୍ତୁତି । ଧଡ଼୍ ଧାଡ଼୍ ଶବ୍ଦ—ଇଞ୍ଜିନର ଗର୍ଜନ । ସେହି ଗୋଟାଏ ସପ୍ତାହ ଭିତରେ ଆମେ ଦେଖିଲୁ, କେବଳ ସନ୍ଧ୍ୟା ସମୟଟା ନୁହେଁ, ମଧ୍ୟରାତ୍ରୀ ପର୍ଯ୍ୟନ୍ତ ଆମ ପକ୍ଷରେ ଶାନ୍ତିରେ ବିଶ୍ରାମ ନେବା ସମ୍ଭବପର ହୋଇ ପାରିଲା ନାହିଁ । ସେହି ପରିସ୍ଥିତିର ବିକଳ୍ପ ଭାବରେ ଆମେ ସ୍ଥିର କରିନେଲୁ ଯେ ଯଥାଶୀଘ୍ର ସ୍ଥାନ ଆମକୁ ପରିବର୍ତ୍ତନ କରିବାକୁ ପଡ଼ିବ ।

ତାପରେ ରବିବାର ଦିନ ସଂଧ୍ୟା ସମୟରେ ହଠାତ୍ ଆମ କୋଠରୀରେ ପାଦଦେଲେ ସରଦାର ହରଭଜନ ସିଂ । ଆମେମାନେ ତାଙ୍କୁ ସ୍ୱାଗତ କଲୁ ଏବଂ ବସିବା ପାଇଁ ଚେୟାର ଗୋଟାଏ ଆଗେଇ ଦେଲୁ । ବିଶେଷ ଉପକ୍ରମଣିକା ଆଉକୁ ନଯାଇ ସେ କହିଲେ—"ଆପଣମାନେ ଏଠାକୁ ଆସିବାର ଗୋଟାଏ ହପ୍ତା ହୋଇଗଲା । ଅନେକ ବାର ଭାବୁଛି ଆସିବି ବୋଲି । କିନ୍ତୁ ବେଳ ଟିକିଏ ପାଉନାହିଁ । ଯା' ହେଉ, ଆପଣମାନେ କିପରି ଅଛନ୍ତି ?"

ଆମେମାନେ ଭଦ୍ରଲୋକ, ତେଣୁ ସ୍ୱାଭାବିକ ଉତ୍ତର ଦେଲୁ— "ଖୁବ୍ ଭଲଅଛୁ । ଅସୁବିଧା କିଛି ନାହିଁ ।"

"ଆପଣମାନେ ଝୁଟ କହୁଛନ୍ତି । ମୁଁ ଜାଣେ ଆପଣମାନଙ୍କୁ ତକଲିଫ ହେଉଥିବ । ଟ୍ରକ କାରବାର ତ ସେୟା ଦାରୁଙ୍ଗା । ଏ ଖାଦାନ ରାସ୍ତା ଆଉ ଲମ୍ବା ପଥର ଲେଡ଼୍; ଏଥିରେ ହରରୋଜ ଗାଡ଼ି ଗୁଡ଼ାକ ଜଖମ ହୋଇ ଯାଉଛି । ସଂଗେ ସଂଗେ ରିପେୟାର ନକଲେ ପଡ଼ି ରହିଲା ।"

"ସେ କିଛି ନୁହେଁ ! ଆମେ ବା କେତେ ସମୟ ରହୁଛୁ ?"

"ଯାହାବି ହେଉ, ଅସୁବିଧା ହେଉଥିବ ।"

"ଅଚ୍ଛା ସରଦାରଜୀ, ଆପଣଙ୍କର କେତେଖଣ୍ଡ ଟ୍ରକ ?"

"ପାଞ୍ଚଟା ତ ଏବେ ଚାଲୁଛି । ମୋର କଣ, ଏସବୁ ତ ଆପଣମାନଙ୍କ ମେହେରବାନି । ମୁଁ ମେହନତ୍ କରୁଛି, ଆଉ ଆପଣମାନେ ମଦଦ୍ କରୁଛନ୍ତି, ବାସ ।"

"ସବୁ ଟ୍ରକ ଆପଣଙ୍କର ଲୁହାପଥର ବୋହିବାରେ ଲାଗିଛି ?"

"ହଁ, ସବୁ ସେହିକାମ ?"

"ଆପଣଙ୍କର ଫେଣ୍ଡିପଡ଼ା ଅଛି ?"

"ନା-ନା, ସେ ଝମେଲା ମୋ ଦ୍ୱାରା ହେବନାହିଁ । ଜଏ ପାରିବ ? ସେ ସବୁ କାମରେ ବଡ଼ ଝମେଲା । ଦୁନିଆଭର ଆଇନକାନୁନ୍ ।"

କିଛି ସମୟ ରହି ସରଦାରଜୀ କହିଲେ—"ଆରେ ହାଁ ଭୁଲ ହୋ ଗିୟା । ଆପଣମାନେ ଆଜି ଖାନା ବନାଇବେ ନାହିଁ । ଆଜି ଆପଣମାନେ ଆମ ଘରେ ରୋଟି ଖାଇବେ ।"

"ଆମେ ତ ଆଜି ରୋଟି ତିଆରି କରି ସାରିଛୁ । ଆଉ ଥରେ ।"

ସରଦାରଜୀ କିନ୍ତୁ ଆମକୁ କହିବାକୁ ଦେଲେ ନାହିଁ—"ମୁଁ କିଛି ଶୁଣିବି ନାହିଁ । ଆପଲୋଗୋଁକୋ ଯାନା ହି ହୋଗା । ସରଦାରାଣୀ ଓ ପିଲାମାନେ ବାରବାର କହିଛନ୍ତି । ନିଶ୍ଚୟ ଯିବାକୁ ପଡ଼ିବ ।"

ରାତି ପ୍ରାୟ ନ'ଟା ବେଳେ ଶ୍ରେଷ୍ଠେଇ ସରପାଙ୍କ ମହଲେ ଦୁଆର ଖୋଲିଲା ।

ଡାଇନିଂ ଟେବୁଲରେ ସରଦାରଜୀଙ୍କ ସହିତ ଆଉ ଜଣେ ଯୁବକ ଓ ଜଣେ ଯୁବତୀ ମଧ୍ୟ ଆମକୁ ଅପେକ୍ଷା କରିଥିଲେ ।

"ଇୟେ ମୋର ପୁଅ ଗୁରଦୀପ୍ ଓ ଝିଅ ପ୍ରୀତମ୍ ।"

ସେମାନେ ଚେୟାରରୁ ଉଠିପଡ଼ି ଦୁଇହାତ ଯୋଡ଼ି ଆମକୁ ନମସ୍କାର କଲେ । କିଛିଟା ଅସ୍ୱସ୍ତି ଅନୁଭବ ହେଲା । ସସମ୍ଭ୍ରମେ ଆମେ ଆମପାଇଁ ଉଦ୍ଦିଷ୍ଟ ସ୍ଥାନରେ ବସିଲୁ ।

"ସରମାଓ ମତ୍ । ଅପନା ଘର ଯୈସେ ସମଝଲେ ମେ ରୁଦ୍ଧାର ମା ଯୈସି ।"

ମୁହଁ ଉଠାଇ ଚାହିଁଲି, ପ୍ଲେଟ ସଜାଉଥିବା ଭଦ୍ର ମହିଳା ଯେ ସରଦାରାଣୀ—ଏଥିରେ ସନ୍ଦେହ ରହିଲା ନାହିଁ। ପରିଧାନ ସାଧାରଣ ଏକ ଶାଢ଼ୀ ମୁଣ୍ଡରେ କଞ୍ଚିତ ପକ୍ୱକେଶ ବୟସର ଚିହ୍ନକୁ ପରିସ୍ଫୁଟ କରୁଥାଏ।

ଆମ୍ଭେମାନେ ଖାଇବା ଆରମ୍ଭ କଲୁ। ମୋଟା ଚପ୍‌ଡ଼ ରୋଟି। ଚିକେନ୍ ମସଲା। ତଡ଼କା ସାଲାଡ।

ପରିସ୍ଥିତିକୁ ସହଜ କରିନେବା ପାଇଁ ଏବଂ ଆମର ସ୍ୱାଭାବିକ ଅସ୍ୱସ୍ତିକୁ ଦୂରେଇ ଦେବାଲାଗି ସରଦାରଜୀ ନାନାଦି ଗଳ୍ପ କରୁଥାଆନ୍ତି।

"ଏବେ ଭାବୁଛି ଏସବୁ ଟ୍ରକ ଧନ୍ଦା ଛାଡ଼ିଦେବି। କିନ୍ତୁ ଲଡ଼କା ରାଜି ନୁହେଁ। ମୁଁ କହିଲି, ତେବେ ଏସବୁ ଧନ୍ଦା ତୁ ସମ୍ଭାଳ, ମୁଁ ଦୁସର ଧନ୍ଦା ସୁରୁ କରିବି। ସାରା ଜିନ୍ଦେଗୀ ଏ ଟ୍ରକ ଧନ୍ଦା କରି କରି ଆଉ ଭଲ ଲାଗୁନାହିଁ। ଆଜି ସ୍ୱାର ଅମୁକଟା ଖରାପ ତ କାଲି ତାହାର ସମୁକଟା। କାହାର ଟାୟାର ନାହିଁ, କେଉଁ ଟ୍ରକକୁ ପୋଲିସ ଧରିଲାଣି। କେଉଁ ଟ୍ରକର ଟେକ୍ସ ଦିଆଯାଇନାହିଁ ତ କାହାର ଡ୍ରାଇଭର ପଳେଇଲାଣି,—ଅରେ ଦୋ ଦୋ, ବାବୁଲୋକ ସରମାତେ ହେଁ।"

ଆମେ ଦୁଇହାତ ପ୍ଲେଟ ଉପରେ ଘୋଡ଼ାଇ ନା-ନା କରୁଥାଉ।

"ଆଃ, ତୁମ୍ ଦୋ ନା। ଏ ବୟସରେ ଏତିକି ଖାଇବା କଥା? ହଁ ଲଡ଼କୀକୀ ପଢାଇର ସରିଗଲା ଏବେ ତାର ସାଦୀ ପାଇଁ ବାହୁଚକ୍ର ଚାଲିଛି। ମୋର ଇଚ୍ଛା ଯେତେଶୀଘ୍ର ସାରିଦେବି।"

ଆମ ସମ୍ମୁଖରେ ସଙ୍କୁଚିତ ଭାବରେ ଚୁପ୍ ଚାପ୍ ଖାଉଥିବା ଝିଅଟି ହଠାତ୍ ସଚିସ୍ତ ହୋଇ ଉଠିଲା ଏବଂ ଖତେଇ ହେବା ଢଙ୍ଗରେ କହିଲା—"ପାପା ପାପା ଉସ୍‌କୋ ଛେଡ଼କେ କ୍ୟା ଔର କୁଛ ବାତ୍ ନହିଁ?"

ସରଦାରଜୀ ହୋ ହୋ ହୋଇ ହସି ଉଠିଲେ।

"ମେରି ବେଟି ଐସି। ସବ୍‌କେ ସାଥ୍ ଦିନଭର ଲଢ଼ତି ଝଗଡ଼ତି—।"

"କ୍ୟା? ଲଢ଼ତି, ଝଗଡ଼ତି? ମେ ନହିଁ ଖାଉଁଗୀ।"

"ମଜାକ୍‌ମେ ବୋଲା। ବୈଠ୍ ବୈଠ୍।"

ସରଦାରଜୀ ଝିଅର କାନ୍ଧକୁ ଚାପି ବସାଇଦେଲେ। ଆମେ ଅଳ୍ପ ହସି ଚୁପ୍ ରହିଲୁ।

ଆମ ପାଖରେ ସମୟ ମଧ୍ୟ କମ୍। ପ୍ରାୟ ସକାଳ ନ'ଟା ସୁଦ୍ଧା ବାହାରି ଯାଉଁ ଏବଂ ସନ୍ଧ୍ୟାବେଳକୁ ଫେରୁ। କେବେ କେବେ ହୋଟେଲରେ

ଖାଇଦେନି । କେବେ ଅବା ବ୍ରେଡ୍ ବଟର ଅଉ କେବେ କେମିତି ବ୍ରେଷେଇ ବି କରିପକାଉ । ତାହା ପରଠାରୁ ବେଳେ ବେଳେ ଗ୍ରସଫ୍ ସହିତ ଦେଖାହେଲେ ସେ ହସିଦିଏ ଏବଂ ପ୍ରତ୍ୟୁତ୍ତରରେ ଆମେ ମଧ୍ୟ ଅଳ୍ପ ହସିଦେଇ ଚାଲିଯାଉ । ଟ୍ରକ ଇଞ୍ଜିନର ଗର୍ଜନ, ଧଡ ଧାଡ୍ ଶବ୍ଦ, ପୋଡା ମୋବିଲ ଓ ଡ୍ରିଜେଲର ଗନ୍ଧ—ଏସବୁ ସହିତ କ୍ରମଶଃ ଅଭ୍ୟସ୍ତ ହେବାକୁ ଆରମ୍ଭ କଲୁଣି । ବେଳେବେଳେ ପ୍ରୀତମ ସହିତ ମଧ୍ୟ ଦେଖା ହୋଇଯାଏ । ସେ ମଧ୍ୟ ଟିକିଏ ହସିଦିଏ ଆଉ ପଚାରେ—"ଅଫିସ ବାହାରିଲେ ?"

ଆମେ ହଁ ବୋଲି କହି ଆଗେଇଯାଉ ।

ଦିନେ ପ୍ରୀତମ୍ ପଚାରିଲା—"କଣ ଏବେ ଅଫିସରୁ ଫେରୁଛନ୍ତି ?" ଆମେ କହିଲୁ—"ହଁ"

"ଏତେ ଡେରି ଯେ ?"

"Financial year ending ତ ? ସେଥିପାଇଁ ଡେରି ହୋଇ ଯାଉଛି ।"

"ଚାଲନ୍ତୁ, ମୁଁ ଆପଣଙ୍କୁ ଚା ପିଇଆବ ।"

"ନା-ନା କଣ ଦରକାର । ଆମେ ଚା' କରିନେବୁନି ?"

"ଭି ହୁଁଃ, ମୁଁ ଆପଙ୍କୁ ଚା ପେଇବ । ଆପଣମାନେ ଡ୍ରେସ ବଦଳାନ୍ତୁ । ମୁଁ ଦଶ ମିନିଟରେ ଚା ନେଇ ଆସୁଛି ।"

ଆଉ ଠିକ୍ ଦଶମିନିଟ ପରେ ଚା' ଟ୍ରେରେ ସବୁଯାକ ଜିନିଷ ପତ୍ର ଧରି ପ୍ରୀତମ ଆମ କୋଠରୀରେ ହାଜର ।

ଗୋଟାଏ ଚେୟାରରେ ବସି ସେ ଚାରିକି କ୍ଷୀର ଆଉ ମିଶାଇବାକୁ ଆରମ୍ଭ କଲା ଆଉ ଆମେ ତାକୁ ସେମିତି ଚାହିଁ ରହିଲୁ । ଚା ଦୁଇକପ୍ ଆମ ହାତକୁ ବଢାଇ ଦେଇ ସେ କହିଲା—"ନିଅନ୍ତୁ । ଏମିତି ମୋତେ ଚାହିଁଛନ୍ତି କଣ ?"

ମୁଁ କହିଲି—"ତମେ ଗୁଚ୍ଛାଟାରେ ଯାହା ଏତେ ହଇରାଣ ହେଲ !"

"ହଇରାଣ ନୁହେଁ । ମୋ ମମି ଆପଣମାନଙ୍କୁ ଦେଖି କାହିଁକି କେଜାଣି ବହୁତ ଭଲ ପାଇ ବସିଛି । ବରାବର କହୁଛି—ପିଲା ଦୁଇଟା, କିଏ ସେମାନଙ୍କର ଏଠି ଅଛି ? ଖାଇବା ପିଇବାରେ ହଇରାଣ ହେଉଛନ୍ତି । କହ, ଘରେ ବରଂ ଆମଘରେ ରୋଟି ଖାଇ ନିଅନ୍ତୁ । କିନ୍ତୁ ଆପଣମାନେ କଣ ସବୁଦିନେ ଆମ ଘରେ ରୋଟି ଖାଇବାକୁ ପସନ୍ଦ କରିବେ ? ମୁଁ ବା କିପରି ବାଧ୍ୟ କରିବ ? ସେ ପୁରୁଣା ଲୋକ, ପଞ୍ଜାବର ଦେହାତ ଇଲାକାର, ସେ ତ କିଛି ବୁଝେ ନାହିଁ । ତାର ସେଇ ପୁରୁଣା କଥା ।"

ଆମେ ଚା' ପିଇବାକୁ ଆରମ୍ଭ କଲୁ ।

ସେ ପୁଣି କହିଲା—"ମମୀ ଆସୁଥିବେ । କହିଲେ, ମୁଁ ଯାଉଛୁ ସ୍କୁଲ୍ ।"

କୋଠରୀର ଚାରିଆଡ଼କୁ ସେ ଦୃଷ୍ଟିପାତ କଲା । ଦୁଇଖଣ୍ଡ ଖଟ ବା କୋଠରୀରେ ଗୋଟାଏ ଟେବୁଲ ଓ ଦୁଇଖଣ୍ଡ ଚଉକି ପଡ଼ିଥିଲା । ଗୋଟାଏ ଆଲଣାରେ ଆମର ଲୁଗାପଟା ସବୁ ରହିଥିଲା । ପାଖ ସେଲଫରେ ଆମର ବାକ୍ସ ଦୁଇଟି ଏବଂ ଇତସ୍ତତଃ ହୋଇ ପଡ଼ିଥିଲା ଆମର ଆସବାବ ଉପରେ ଖବରକାଗଜ, ମେଗାଜିନ, ବହି ଇତ୍ୟାଦି ।

ଚାରିଆଡ଼କୁ ଥରେ ଦୃଷ୍ଟି ବୁଲାଇ ନେଇ ସେ କହିଲା - "ଇସ୍, ଆପଣ-ମାନେ ଏ କଣ କରିଛନ୍ତି ? ଏହା ଭିତରେ ରହୁଛନ୍ତି କିପରି ? କିଛି ପଧ ଗୃହା ଟିକିଏ ସଜାଡ଼ି ରଖି ପାରୁନାହାନ୍ତି ? ଖୁବ୍ ଧମ୍‌ରେ ଲୁଗାପଟା ଗୁଡ଼ାକ ତ ଟିକିଏ ସଜାଡ଼ି ରଖିପାରନ୍ତେ ।"

ମୁଁ ହସି ଉଠିଲି—"ସତ କହିବାକୁ ଗଲେ ଆମେମାନେ ବଡ଼ ଅଳସୁଆ ।"

"ଏମିତି କହି ରକ୍ଷା ପାଇଯିବେ ନା ? ସେ ସବୁ ଚାଲିବ ନାହିଁ । ସବୁ ଜିନିଷପତ୍ର ଠିକ୍ ଠିକ୍ ଭାବରେ ରଖିବାକୁ ପଡ଼ିବ ।"

ଏହି ସମୟରେ ସରଦାରଣୀ ଘର ଭିତରକୁ ପ୍ରବେଶ କଲେ । ଆମେ ଛିଡ଼ା ହୋଇ ନମସ୍କାର କଲୁ ।

"ବୈଠୋ, ବେଟା ବୈଠୋ ।" — ସେ ହିନ୍ଦିରେ କହିବାକୁ ଆରମ୍ଭ କଲେ—"ଝିଅକୁ କହିଲି, ସେମାନେ ତୋ ଭାଇ ଭଳି । ଟିକେ ଦେଖ୍ କଣ କରୁଛନ୍ତି, କଣ ଖାଉଛନ୍ତି । ମୁଁ ତ କିଛି ଜାଣିପାରୁନାହିଁ ।"

"ନା, ମା' ଜୀ ଆମର କିଛି ଅସୁବିଧା ହେଉନାହିଁ । ଆମେ ବେଶ୍ ଖୁସିରେ ଅଛୁ ।"

"ତୁ ସେମାନଙ୍କୁ ଦେଖି ଜାଣି ପାରୁନାହୁଁ ?"

ସରଦାରଣୀ ହସି ଉଠିଲେ—"ତୋର ତ ଏମିତି ସମସ୍ତଙ୍କ ସହିତ ଅଛା ।"

"ଅଛା ? ଦେଖୁନାହୁଁ ଏ ତୁମ୍ଭକୁ ? ଏଇଠି ମଣିଷମାନେ ରହନ୍ତି ବୋଲି ତୋର ନିଶ୍ଚୟ ସନ୍ଦେହ ହେଉଥିବ ।"

ଆମେ ବି ହସିଲୁ । ସରଦାରଣୀ ମଧ୍ୟ ।

ଏ ସମୟରେ ପ୍ରୀତମ ଯାଇଁ ଟେବୁଲ ଉପରେ ଥିବା ଆମର ବହି ଓ କାଗଜପତ୍ର, କପ୍, ଗ୍ଲାସ ଇତ୍ୟାଦି ସଜାଡ଼ିବାକୁ ଆରମ୍ଭ କଲା ।

ସରଦାରଣୀ ପୁଣି କହିଲେ—ଆରେ ବେଟୀ, ସବଜୀଟା ଚୁଲ୍ଲରେ ରଖିଆସିଛୁ । ଟି'କେ ଗଲୁ । ମୁଁ ଏଇ ପାଞ୍ଚ ମିନିଟରେ ପିଲାମାନଙ୍କ କଥା ବୁଝିଦେଇ ଯାଉଛି ।"

"ଚଲୁ ଶୀଘ୍ର ଆସିବୁ"— ପ୍ରୀତମ କୋଠରୀରୁ କାମଥିଧା ରଖି ଯିବାକୁ ବାହାରିଲା । "କାଲି ଅଫିସ ଗଲା ବେଳେ ମନେକରି ମୋତେ ଘୁରିକାଠିଟା ଦେଇଯିବେ ।"

ମୋର ପ୍ରଶ୍ନିଳ ମୁହଁ ଉପରେ ଦୃଷ୍ଟିସ୍ଥିର ରଖି ସେ କହିଲା—"ମୁଁ ଆପଣଙ୍କର କିଛି ସେବା କରିବ ନାହିଁ । ପରେ ଆସି ସବୁ ମିଳାଇନେବ ।"

"ଆମେ କଣ ତମକୁ ପରଶଲୁ କାହିଁକି ବୋଲ ?"

ପ୍ରୀତମ ଘରୁ ନିଷ୍କ୍ରାନ୍ତ ହୋଇଗଲା ।

ସରଦାରଣୀ ଆମକୁ କହିଲେ—"ସେ ସବୁଦିନେ ଏହିପରି ଏମିତି ସମସ୍ତଙ୍କ ସହିତ ମିଳିମିଶି ଯାଏ ।"

ସେ ଗୋଟାଏ ଚେୟାର ଉପରେ ବସିଥାଆନ୍ତି । ସମ୍ମୁଖରେ ଆମେ । ଗୋରା ତକ ତକ୍ ଚେହେରା ଉପରେ ବୟସର ହସ୍ତକ୍ଷେପ ବେଶ୍ ସୁସ୍ପଷ୍ଟ । ମୁଣ୍ଡରେ ଅନେକ କେଶ ଧଳା । ଆଖିରେ ଚଷମା । ଅତିମେଦବହୁଳ ଶରୀର । ଏସବୁ ଭିତରେ ମୁହଁରେ ପ୍ରଶାନ୍ତିର ଏକ ଅଭିବ୍ୟକ୍ତି । ସେ ଉପରକୁ ଚାହିଁ କଣ ଦେଖୁଥାଆନ୍ତି—ସିଲିଂଫେନ୍‌ର ଘୂର୍ଣ୍ଣନ ନା ଟ୍ୟୁବ ଲାଇଟର ସୁଶୀତଳ ଆଲୋକ ?

୧୯୮୪ ମସିହା ଜୁନ୍‌ମାସ ୩ ତାରିଖ । ପୁଣି ଅକ୍ଟୋବର ପୁଣି ନଭେମ୍ବର । ଏମିତି ସମସ୍ତ ଘଟଣାଗୁଡ଼ିକର କ୍ରମ ବିକାଶ ଭିତରଦେଇ ଗତିକରି ଆସିଲା ପରେ ସେ କଣ ଧୂଳି ଧୂସରିତ ?

ସେହି ଗୁରୁମୁଖୀ ଧ୍ୱନି ମିଶ୍ରିତ ସ୍ୱରରେ ସେ କହିଲେ ତାଙ୍କର କାହାଣୀ । ବହୁତ ଦିନ ଆଗରୁ, ପ୍ରାୟ ୩୦ ବର୍ଷ ତଳେ ସରଦାରଜୀ ଏଠାକୁ ଆସିଥିଲେ ଜଣେ ଟ୍ରକ ଡ୍ରାଇଭର ଭାବରେ । ସୁଦୂର ପଶ୍ଚିମ ପଞ୍ଜାବର ଏକ କୃଷକର ସନ୍ତାନ ସେ । ଜୀବନ ବଞ୍ଚାଇ ଦିଲ୍ଲୀ ପଳାଇ ଆସିଥିଲେ । ରିଲିଫ କେମ୍ପରେ ଅନେକ ଦିନ ଗଲା । ତାପରେ ଦିନେ ଏଠାକୁ ଆସିଲେ । ଏହି ବଣ ପାହାଡ଼ ପରିବେଷ୍ଟିତ ମାଳଭୂମିର ଆକର୍ଷଣ ତାଙ୍କୁ ବାନ୍ଧିରଖିଲା । ବ୍ରିଜ୍‌ଲାଲ ବଡ଼ୋଦିଆ ଯେତେବେଳେ ଲୁହାପଥର ଉତ୍ତୋଳନ କଣ୍ଟ୍ରାକ୍ଟ ନେଇ ଦିଲ୍ଲୀରୁ ଆସି ଏଠାରେ ପହଞ୍ଚିଲେ, ସେତେବେଳେ ତାଙ୍କ ସହିତ ଦିଲ୍ଲୀରୁ ଯେଉଁ ୧୦।୧୨ ଜଣ ଆସିଥିଲେ, ସେମାନଙ୍କ ମଧ୍ୟରେ ସର୍ଦ୍ଦାର ହରଭଜନ ସିଂ

ଅନ୍ୟତମ । ସେତେବେଳେ ବାଘ ଭାଲୁ ହାତୀ ଆଉ ବନ୍ୟଜନ୍ତୁ ଅଧ୍ୟୁଷିତ ଏହି ମାଳଭୂମିରେ କେତେ ଗୁଡ଼ିଏ ତମ୍ବୁ ପଡ଼ିଲା । କାଠ ଆଉ ବାଉଁଶ ଖୁଣ୍ଟାରେ ଘରସବୁ ତିଆରି ହେଲା । ଡ଼ିନାମାଇଟ୍ ଫୁଟିଲା । ଡ୍ରେଜର ଡମ୍ପର ଆଦିର ଗର୍ଜନରେ ବଣ ପାହାଡ଼ କମ୍ପି ଉଠିଲା । ସର୍ଦ୍ଦାରଙ୍କ ସେତେବେଳେ ସକାଳ ୬ଟାରୁ ରାତି ବାରଟାଯାଏ ଡ୍ୟୁଟି ଏବଂ ଧରି ବସି ଆସନ୍ତି । ଖାଇବାରେ ଠିକଣା ନାହିଁ । ଶୋଇବାକୁ ସ୍ଥାନନାହିଁ । କଠିନ ପରିଶ୍ରମ । ତାପରେ ଏଠି ଗଢ଼ି ଉଠିଲା ସହର । ଅନେକ କୋଠାଘର । ରେଳ ଲାଇନ ପଡ଼ିଲା । ବଡ ବଡ଼ ରାସ୍ତା ତିଆରି ହେଲା । ସରକାର ଆସିଲେ । ଥାନା ତିଆରି ହେଲା । ବଡ ବଡ଼ ବାବୁମାନେ ଆସିଲେ । ଆଇନ କାନୁନ ଆସିଲା ।

ତାପରେ ଦିନେ ବଡ଼ୋଦିଆ ଝଣି କଣ୍ଟ୍ରାକ୍ଟ ରାଞ୍ଚି ଦିଲ୍ଲୀ ଚାଲିଗଲେ ଏବଂ ଗଲାବେଳେ ସରଦାରଜୀଙ୍କୁ ସେ ଚଳାଉଥିବା ଟ୍ରକଟା ଦେଇଗଲେ । ତାପରେ ସରଦାରଜୀ ଆଉ ଅଟକି ନାହାନ୍ତି କି ପଛକୁ ଚାହିଁ ନାହାନ୍ତି । ଏଇ ଜାଗା, ଏଇ ଘରଦ୍ୱାର, ଏଇ ଟ୍ରକ—ଏସବୁ ତାଙ୍କର ହାତର, ତାଙ୍କର କଠିନ ପରିଶ୍ରମର ଫଳ । ସର୍ଦ୍ଦାରଣୀ କି ମୁଁ, କି ପିଲା ଦୁଇଜଣ—ଆମେ କେବେ ହେଲେ ଚିନ୍ତା କରିନାହୁଁ ଯେ ଏ ଆମର ଜନ୍ମସ୍ଥାନ ନୁହେଁ, ଆମେ ଅଲଗା—ସୁଦୂର ପଞ୍ଜାବ କି ଦିଲ୍ଲୀରୁ ଆସିଛୁ । ଆଉ ବା ଆମେ ଚିନ୍ତା କରିବୁ କାହିଁକି ? ନା ଅଛି ଆମର ଘରଦ୍ୱାର ନା ଅଛି ଜମିବାଡ଼ି । ପୈତୃକଭୂମି ଏବେ ପାକିସ୍ଥାନରେ । କେଉଁ ସଂପର୍କ ଆମର ଅଛି ପଞ୍ଜାବ ସହିତ ?

ସେ ପୁଣି କହିଲେ—"କିନ୍ତୁ ବେଟା, ଦିନଗୁଡ଼ାକ ଖରାପ ହୋଇ ଯାଉଛି, ସମସ୍ତ ବଦଳି ଯାଉଛି । ଯେଉଁମାନେ ଆମର ଦୋସ୍ତଥିଲେ ନିଜର ଥିଲେ, ସେମାନେ ତାଙ୍କୁ ଶତ୍ରୁ ଭଳି ବ୍ୟବହାର କରୁଛନ୍ତି । ଆମକୁ ଦେଖିଲେ ମୁହଁ ଫେରାଇ ନେଉଛନ୍ତି । କାଲି ଯେଉଁମାନଙ୍କ ସହିତ ଏତେ ଭଲ ସଂପର୍କ ଥିଲା, ଆଜି ଯଦି ସେମାନେ ଦେଖି ବି ନ ଦେଖିଲା ପରି ଚାଲିଯାଆନ୍ତି, ଆମେ ଚଳିବୁ କେମିତି ? ହେଲେ ବି ମୋର ସେଥିପାଇଁ ଦୁଃଖ ନାହିଁ । ଏହି ପ୍ରୀତମର ସାଥୀମାନେ ଆଜିକାଲି ଆସନ୍ତି ନାହିଁ । ଗୁରଦୀପର ଦୋସ୍ତମାନେ ତାକୁ ପଚାରନ୍ତି ନାହିଁ ।"

କିଛି ସମୟ ନୀରବ ରହି ବୁଢ଼ି ପୁଣି କହିଲେ—"ଆମେ ବୁଢ଼ା ହେଲୁ । ଆମର ଚିନ୍ତା ନାହିଁ । ଏଇ ପିଲା ଦୁ'ଟାଙ୍କ କାମସାରି ପାରିନାହୁଁ । ସେମାନଙ୍କ ପାଇଁ ଚିନ୍ତାରେ ମୋତେ ଦିନରାତି ନିଦ ହେଉନାହିଁ ।"

ଅନେକ ସମୟ ହୋଇ ଯାଇଥିଲା । ବୁଢ଼ି ଉଠିଲେ—"ଅରେ ବେଟା, ବହୁତ ସମୟ ବିତିଗଲା । ବହୁତ୍ କୁଛ ବଦଲ୍ ବଦଲ୍ ଗ ହେଲା । ମତ୍ କୁଛ୍ ସୋଚୋ ବେଟା ।"

ଏହାପରେ କିଛୁଦିନ ବିତିଗଲା । ଆଜି ଏକ ସନ୍ଧ୍ୟାରେ ଦପ୍ତରରୁ ଫେରି ଖଟ ଉପରେ ପଡ଼ି ମୁଁ ଖବରକାଗଜଟାକୁ ଓଲଟ ପାଲଟ କରୁଥାଏ ।

"ପୋଲିସ ଓ ନିରାପତ୍ତା ବାହିନୀ ଗୁଳିରେ ତିନିଜଣ ଆତଙ୍କବାଦୀ ନିହତ ।"

"ଦିଲ୍ଲୀ ରିଲିଫ କେମ୍ପରେ ମୃତ ପରିବାର ବର୍ଗ ପାଇଁ ନୂତନ ଯୋଜନା ।" ଏଇ ସବୁ ସଂବାଦ ପଢ଼ୁଥିଲି ।

କବାଟରେ ଖଟ ଖଟ ଶବ୍ଦ ଶୁଣି ମୁଁ ଉଠିଗଲି । ଦେଖିବା ବେଳକୁ ପ୍ରୀତମ । ସେହିଭଳି ସାଧାରଣ ସେଲଓ୍ୱାର ଓ କମିଜ୍ ପିନ୍ଧିଛି । ପ୍ରାୟ ଆଲୁଳାୟିତ କେଶ, ସେହି ଅଳ୍ପ ଅନ୍ଧକାର ଓ ଅଳ୍ପ ଆଲୋକରେ ତାହାର ଚେହେରାରେ ଥିଲା ଏକ ସନ୍ତ୍ରସ୍ତ ଭାବ । ସେ ପୂର୍ବପରି ଚଳଚଞ୍ଚଳ ନଥିଲା । କଣ୍ଠରୁ ଫୁଟି ଉଠିଲା ଏକ ଆତଙ୍କ ଭରା ଅନୁନୟ—"ଥୋଡ଼ା ଜଲ୍‌ଦି ଆଇୟେ । ପିତାଜୀକା କ୍ୟା ହୋ ଯାତା ହେ—"

"କଣ, ହେଲା କଣ ?"

"ପତା ନହିଁ । କ୍ୟା ହୋ ଯାତା ହେ । ବେଚୈନ ହୋତେ ହେଁ ।"

ଏହା କହି ସେ ଦଉଡ଼ିବାକୁ ଆରମ୍ଭ କଲା ଏବଂ ତା ପଛେ ପଛେ ମୁଁ ମଧ୍ୟ ।

ଘର ଭିତରେ ସରଦାରଜୀ ଗୋଟାଏ ଖଟିଆ ଉପରେ ପେଟକୁ ଚିପିଧରି କେବଳ ଛଟ ପଟ ହେବାରେ ଲାଗିଥାଆନ୍ତି । ବିରାଟ ଶରୀର ଯେପରି ସଙ୍କୁଚିତ ଓ ପୁଣି ପ୍ରସାରିତ ହେଉଛି । ସରଦାରଣୀ ଗୋଟାଏ ଷ୍ଟୁଲ ଉପରେ ବସି ତାଙ୍କର ପେଟ ଓ ଛାତିକୁ ଆଉଁସିବାରେ ଲାଗି ଥାଆନ୍ତି ଏବଂ ତାଙ୍କର ଅସୀମ ଯନ୍ତ୍ରଣାକୁ ଯେପରି ନିଜ ଭିତରକୁ ଟାଣିନେବାକୁ ଚେଷ୍ଟା କରୁଥାଆନ୍ତି । ମୁହଁରେ କାତରତା ସୁସ୍ପଷ୍ଟ କିନ୍ତୁ ଧୈର୍ଯ୍ୟର ସହିତ ସେ ଯେପରି ସରଦାରଜୀଙ୍କ ଯନ୍ତ୍ରଣା ଉପଶମ କରିବା ପାଇଁ ଚେଷ୍ଟା କରୁଥାଆନ୍ତି । ମୁଁ ଲକ୍ଷ୍ୟକଲି ସରଦାରଜୀ ଯେପରି ଶ୍ୱାସରୁଦ୍ଧ ହୋଇ ଯାଉଛନ୍ତି । ଆଲୁଳାୟିତ କେଶଗୁଚ୍ଛ ବିପର୍ଯ୍ୟସ୍ତ । ଶ୍ମଶ୍ରୁବହୁଳ ମୁଖମଣ୍ଡଳ ରକ୍ତହୀନ ପୀତାଭରୁ ଶ୍ୱେତବର୍ଣ୍ଣ ଧାରଣ କରିଛି ।

ମୋତେ ଦେଖି ସରଦାରଣୀ କହିଲେ—"ବେଟା, ମୋତେ ମାଲୁମ ହେଉଛି ସରଦାରଜୀଙ୍କ ଅବସ୍ଥା ଭଲ ନୁହେଁ । ମୁହଁରୁ ଖୁନ୍‌ବାହାରି ଆସୁଛି ।

ଗୁରୁଦୀପ୍ ଆଜ ସକାଳୁ ଭୁବନେଶ୍ୱର ଚାଲିଯାଇଛୁ । ଶୀଘ୍ର ସରଦାରଜୀଙ୍କୁ ହସ୍ପିଟାଲ ନେବାକୁ ହେବ ।"

ପ୍ରୀତମ ସ୍ଥାଣୁପରି ସରଦାରଜୀଙ୍କ ଯନ୍ତ୍ରଣାକାତର ଶରୀର ଆଡ଼କୁ ଚାହିଁ ଛିଡ଼ାହୋଇ ରହିଥିଲା । ମୁହଁରେ ଆତଙ୍କ ଓ ଉଦ୍‌ବେଗ ।

ସେତେବେଳକୁ ଟେକ୍ସି ଆସି ଯାଇଥିଲା । କୌଣସି ପ୍ରକାରେ ସରଦାରଜୀଙ୍କୁ ନେଇ ଆମେ ହସ୍ପିଟାଲରେ ପହଞ୍ଚାଇଲୁ । ତୁରନ୍ତ ତାଙ୍କୁ ଇନ୍‌ଟେନ୍‌ସିଭ କେୟାର ୟୁନିଟରେ ଭର୍ତ୍ତି କରାଗଲା । ସେ ଦିନ ସାରାରାତି ଆମେ ସେଇ ବାରଣ୍ଡାରେ ବସି ରହିଲୁ । ତାପର ଦିନ ରାତି ଡିଉଟି ସାରି ଫେରୁଥିବା ଡାକ୍ତର କହିଲେ —"କାଲି ରାତିରେ ସ୍ପେସାଲିଷ୍ଟ ଆସିଥିଲେ । ଏବେ ଅପେକ୍ଷାକୃତ ଭଲ ଜଣାଯାଉଛି । ତେବେ ପୂରା ଇନ୍‌ଭେଷ୍ଟିଗେସନ ନ ସରିଲା ପର୍ଯ୍ୟନ୍ତ କିଛି କହି ହେବନାହିଁ । ଆପାତତଃ ଯାହା ଡାଏଗ୍ନୋସିସ୍ ହୋଇଛି— ବୋଧହୁଏ ଲିଭର ସିରୋସିସ୍ । ତେବେ ସଠିକ ଭାବରେ କିଛି କହିହେବନି । ଯତ୍ପରୋନାସ୍ତି ଚେଷ୍ଟା ଚାଲିଛି । ଏହି ଇଞ୍ଜେକ୍‌ସନ୍ ଗୁଡ଼ାକ କିଣି ଆଣନ୍ତୁ ।" —ଏକ ଲମ୍ବା ପ୍ରେସ୍‌କ୍ରିପ୍‌ସନ ଧରାଇ ଦେଇ ସେ ବାହାରିଗଲେ ।

ସନ୍ଧ୍ୟାବେଳକୁ ଗୁରୁଦୀପ୍ ଆସିଲା । କିନ୍ତୁ ସେତେବେଳକୁ ସର୍ଦ୍ଦାର ହରଭଜନ ସିଂ ଆଉ ନଥିଲେ । ସେଇ ନିଶ୍ଚିତ ମହାଯାତ୍ରାରେ ସେ ବାହାରି ଯାଇଥିଲେ ।

ସର୍ଦ୍ଦାର ହରଭଜନ ସିଂ ଚାଲିଗଲେ । ତାଙ୍କର ଚିତା ଜଳିଉଠି ପୁଣି ଲିଭିଗଲା । ଗୁରୁଦ୍ୱାରରେ ଅଖଣ୍ଡପାଠ ହେଲା । ଶିଖ୍ ସଂପ୍ରଦାୟର ବହୁବ୍ୟକ୍ତି ବନ୍ଧୁବାନ୍ଧବ ଚିହ୍ନା ଅଚିହ୍ନା ଅନେକ ଲୋକ ଏକତ୍ରିତ ହେଲେ ।

ଆମେ ବି ପୂରା ବାରଦିନ ଯାକ ସମସ୍ତ କ୍ରିୟା କର୍ମରେ ଯୋଗଦାନ କଲୁ । ଅନେକ ଆଲୋଚନାରେ ଭାଗ ନେଲୁ । ହରଭଜନ ସିଂଙ୍କ ବିଚିତ୍ର ବ୍ୟକ୍ତିତ୍ୱ ସମ୍ବନ୍ଧରେ ନାନାଦି ମନ୍ତବ୍ୟ ଶୁଣିଲୁ । ସରଦାରଣୀ ଓ ପ୍ରୀତମକୁ ଘେରି ବାରତେର ଦିନ ଧରି ଅନେକ ବୃଦ୍ଧା, ପୌଢ଼ା ଯୁବତୀ ଆଦିଙ୍କର ଅସଂଖ୍ୟ ପ୍ରକାରର ସାନ୍ତ୍ୱନା ମୂଳକ କଥା ମଧ୍ୟ କର୍ଣ୍ଣଗୋଚର ହେଲା ।

ସରଦାରଣୀ ତେରଦିନ କାଳ ବିଛଣାରେ ମୁହଁମାଡ଼ି ପଡ଼ିଲାପରେ ଦିନେ ଉଠିବସିଲେ ଆଉ କହିଲେ— "ବେଟା, ଯାହା ହେବାର ଥିଲା, ତାହା ହେଲା । ସରଦାରଜୀଙ୍କୁ କେବେ ମୁଁ ଅଟକାଇ ପାରିନଥିଲି, ଆଉ ଏବେ ମଧ୍ୟ ନୁହେଁ । ସେ ଗଲେ । କିନ୍ତୁ ଅବଶୋଷ ଯେ ଜୀବନରେ ଦିନେ ହେଲେ ଟିକିଏ ଶାନ୍ତିରେ ବିଶ୍ରାମ କରିପାରିଲେ ନାହିଁ । ସକାଳ ଛ'ଟାରୁ ରାତିବାରଟା ଯାଏଁ ଅକ୍ଳାନ୍ତ ପରିଶ୍ରମ କରି ମଧ୍ୟ ସେ ଦିନେହେଲେ ଥକିପଡ଼ି ନଥିଲେ ।

ଅଥଚ ଏମିତି ଭାବରେ ଚାଲିଗଲେ ।" ଆଖି ତାଙ୍କର ଅଶ୍ରୁପୂର୍ଣ୍ଣ ହୋଇଉଠିଲା । କଣ୍ଠ ରୁଦ୍ଧ ହୋଇ ଆସିଲା । କ୍ଷଣେ ନୀରବ ରହି ସେ କହିଲେ—"ଏସବୁ ବୋଝ୍ ମୋ ଉପରେ ଲଦିଦେଇ ସେ ଚାଲିଗଲେ । ଗୋଟାଏ ହେଲେ କାମ ଖତମ୍ କରି ପାରିଲେ ନାହିଁ । ଗୃହ୍ଯୁଦ୍ଧପ୍ଟା ଥିଲା । କଣ ସେ କରିବ ? ଏତେ ବଡ଼ କାରବାର ଏତେ ଗୁଡ଼ାଏ ଟ୍ରକ । ପୁଣି……"

ତାପରଠାରୁ ସେ ଅଣ୍ଟାଭିଡ଼ି ଛିଡ଼ାହେଲେ ; ଅଧିକାଂଶ ସମୟରେ ଗେରେଜ ସାମନା ବାରଣ୍ଡାରେ ଗୋଟାଏ ବଡ଼ ଚୌକି ପକାଇ ବସିଥାଆନ୍ତି । କାରବାରଟା ପୂରା ସେ ବୁଝିବାକୁ ଲାଗିଲେ । ମେନେଜର ଠାରୁ ଡ୍ରାଇଭର ଓ କ୍ଲିନ ପର୍ଯ୍ୟନ୍ତ—ସମସ୍ତଙ୍କ ଉପରେ ଖୁବ୍ କମ୍ ଦିନ ଭିତରେ ସେ ନଜର ପୂର୍ଣ୍ଣ କର୍ତ୍ତୃତ୍ୱ ଜାହିର କରି ବସିଲେ ।

ଦିନେ ଅଫିସରୁ ଫେରୁଥିଲା ବେଳେ ସରଦାରଣୀ ଡାକିଲେ—"ଆଓ ବେଟା, ଇଧର ଆଓ ।"

ମୁଁ ଯାଇଁ ପାଖରେ ଥିବା ଆଉ ଗୋଟାଏ ଚୌକିରେ ବସିଲି । ମେନେଜର ସହିତ ସେ କଥା ହେଉଥାଆନ୍ତି—୨୪ ଲିଟର ଡିଜେଲ ଅଧିକ କାହିଁକି ଖର୍ଚ୍ଚ ହେଲା । କେଉଁ କେଉଁ ଟ୍ରକ ଅଧିକ ଡିଜେଲ ଖାଉଛନ୍ତି, ଏବେ ତାକୁ ବାହାର କର ଇତ୍ୟାଦି ।

"ମୁଁ ଜାଣେ, ଏବେ ସେ ଟ୍ରକ ଦୁଇଟା ଫେରିଲା ମାତ୍ରେ ତାଙ୍କୁ ଦେଖ ।"……

"୨୦ ଟିସ୍ ମ୍ବିଂ ପଡ଼ି କେଉଁ କେଉଁ ଗାଡ଼ିରେ ଲାଗିଲା ?"……

"ସେ ଟ୍ରକର ଟଙ୍କା ଜମା ଦେଇ ଆଜି ପରମିଟ ଆଣିଲେ କି ନାହିଁ ?" ତାପରେ ମୋ ଆଡ଼କୁ ଚାହିଁ କହିଲେ—ହାଁ ବେଟା, ଶୁନୋ, ପ୍ରୀତମର ଶାଦି ପାଇଁ ୨୪ ଦିନ ଭିତରେ ଲୋକ ଆସୁଛନ୍ତି ।"

"ଆପଣ ତ ଆଗରୁ କିଛି କହି ନଥିଲେ—"

"ଏଇ ତ ପ୍ରଥମେ ଆସୁଛନ୍ତି । ମୋ ଭାଇ ଦିଲ୍ଲୀରୁ ଖବର ଦେଇଛି । ସେମାନଙ୍କର ଶପ୍ତେଦାର ଭୁବନେଶ୍ୱରରେ ରହନ୍ତି ।"

"ଲଡ଼କା ?"

"ଶୁଣୁଛି ଲଡ଼କା ପଢ଼ାଲେଖା, ବହୁତ ବଡ଼ା କାରବାର । କଣ୍ଟ୍ରାକ୍ଟର ଅଛି ଲୁଧିଆନାରେ କଣ କାରଖାନା ବି ଅଛି ।"

ମୁଁ କହିଲି—"ବହୁତ ବଢ଼ିଆ ।"

"ସେମାନେ ଆସିଲେ ମୁଁ ଖବର ଦେବି । ଶୁଣୁଛି ଯଦି ସେମାନେ ଲଡ଼କୀ ପସନ୍ଦ କରନ୍ତି ତେବେ ଆସନ୍ତା ମାସରେ କାମଟା ସାରିଦେବି ।"

"ଲଡ଼କୀ ତ ନିଶ୍ଚୟ ପସନ୍ଦ କରିବେ—"

"କ୍ୟା ମାଲୁମ ?"

ତାପରେ ସରଦାରଣୀ ଚା ପିଆଇଲେ ଏବଂ ଚା ପିଇସାରି ମୁଁ ଉଠିଲି ।

ସେଦିନ ସକାଳୁ ପ୍ରୀତମ ଗୋଟାଏ ଥାଳିଧରି ଆମ କୋଠରି ଭିତରକୁ ପଶିଆସିଲା । ଏତେ ସକାଳୁ ତାକୁ ଦେଖି ଆମେ ଆଶ୍ଚର୍ଯ୍ୟ ହୋଇଗଲୁ ।

"ଆଜି ଯେ ରାକ୍ଷୀପୂର୍ଣ୍ଣିମା ? କଣ ମନେ ନାହିଁ ?"

ରାକ୍ଷୀପୂର୍ଣ୍ଣିମା କଥା ଅବଶ୍ୟ ମୋର ମନେ ଥିଲା । କାରଣ ଏହା ଆମ ଗାଁର ଏକ ବଡ଼ ପର୍ବ । ତେବେ ଏହି ପର୍ବ ଗହ୍ମାପୂର୍ଣ୍ଣିମା ଭାବରେ ବିଶେଷ ରୂପେ ପାଳନ କରାଯାଏ । ଦୋଳାସ୍ତମାନ ପୁଷ୍ପଶୋଭିତ କୁଞ୍ଜରେ ରାଧାକୃଷ୍ଣଙ୍କୁ ବସାଇ ଉତ୍ସବ ପାଳନ କରାଯାଏ ।

ମୁଁ କହିଲି—"ମନେଅଛି" ।

ଏହି ଦିନ ଭଉଣୀମାନେ ଭାଇହାତରେ ରକ୍ଷାକର୍ତ୍ତା ହିସାବରେ ରକ୍ଷା-ବନ୍ଧନ ବାନ୍ଧନ୍ତି । ଯଦିଓ ଏହି ରକ୍ଷାବନ୍ଧନ ଆମର ପରମ୍ପରାଗତ ନୁହେଁ, ତେବେ ବି ମୋ ଭଉଣୀ ପ୍ରତିବର୍ଷ ପୋଷ୍ଟରେ ରାକ୍ଷୀ ପଠାଏ ଏବଂ ତାହା ସେହିଦିନ ମୋ ପାଖରେ ପହଞ୍ଚେ ।

ପ୍ରୀତମ କହିଲା—ହାତ ଦେଖାନ୍ତୁ, ମୁଁ ରାକ୍ଷୀ ବାନ୍ଧିବାକୁ ଆସିଛି— ।

"ତମେ ରାକ୍ଷୀ ବାନ୍ଧିବ ?"

"କାହିଁକି ? ମୁଁ କଣ ଆପଣଙ୍କର ଭଉଣୀ ନୁହେଁ ?"

ସଂକୀର୍ଣ୍ଣତାର ଖୋଳ ଭିତରୁ ମୁହାଁଇଁଥିବା ଡଳକୁ ଡେଉଁ ଦୌଡ଼ି ପଳାଇଲି ।

ମୁଁ କହିଲି—"ନିଶ୍ଚୟ । ସେହି ସମ୍ପର୍କ ଭଳି ବ୍ୟାପକ, ସୁନ୍ଦର ଓ ମଧୁମୟ ସଂପର୍କ ଆଉ କିଛି ନାହିଁ ।"

ସେ ଥାଳିଟାକୁ ଟେବୁଲ ଉପରେ ଥୋଇ ଗୋଟାଏ ରାକ୍ଷୀ ଉଠାଇଲା ।

"ଡାହାଣ ହାତ ଦେଖାନ୍ତୁ ।"

ମୁଁ ଡାହାଣ ହାତଟା ବଢ଼ାଇ ଦେଲି । ପ୍ରୀତମ ଗୁଣୁଗୁଣୁ ହୋଇ କଣ କହି ମୋ ହାତରେ ଗୋଟାଏ ରାକ୍ଷି ବାନ୍ଧିଲା ଏବଂ ମନୋଜ ହାତରେ ଆଉ ଗୋଟାଏ । ତାପରେ ଥାଳିରୁ ଦୁଇଟି ଲଡ଼ୁ ଉଠାଇ ଗୋଟିଏ ମୋ ପାଟିରେ ଓ ଗୋଟିଏ ମନୋଜ ପାଟିରେ ଦେଲା । ଥାଳିଟାକୁ ଟେବୁଲ

ଉପରେ ରୁଲ୍ ଦେଇ ସେ କହିଲେ—"ବାକିତକ ତୁମେ ଖାଇନେବ । ମୁଁ ଯାଉଛି, ମୋର ଢେର କାମ । ଆଇ ସକାଳୁ କୁଆଡ଼େଯାଇଛି ଯେ ଏଯାଏଁ ଫେରିନାହିଁ ।"

ସେ କୋଠରୀରୁ ବାହାରି ଗଲା ।

ମୁଁ କହିଲି—"ହଇରେ ଆମର ତ କିଛି କରିବା ଦରକାର ।"

ମନୋଜ କହିଲା—"ଆମକୁ ତ କିଛି ଉପହାର ଦେବାକୁ ପଡ଼ିବ ।"

ରାକ୍ଷୀପୂର୍ଣ୍ଣିମାର ମାତ୍ର କେତେ ଦିନ ପରେ, ହଠାତ୍ ଦିନେ ସନ୍ଧ୍ୟାବେଳେ ପ୍ରୀତମ ମଝିଦରଜା ଖୋଲି ଆମ କୋଠରୀରେ ହାଜର । ମୁହଁରେ କପରି ଏକ ବ୍ୟସ୍ତତା । କଣ୍ଠରେ ଆତଙ୍କିତ ହୋଇ ପଡ଼ିବାର ସ୍ୱର । ତାକୁ ଦେଖିବା ମାତ୍ରେ ମୁଁ କହିଲି—"କଣ ହୋଇଛି ? ଏପରି ବ୍ୟସ୍ତ କାହିଁକି ?" ସେ କହିଲା "ଶୀଘ୍ର ଆସନ୍ତୁ । ମା ଡ଼ାକୁଛନ୍ତି । ପୋଲିସ ଆସିଛି । କହୁଛି ଆମ ଘର ସର୍ଚ୍ଚ କରିବ ।"

"କାହିଁକି ? କଥାକଣ ?"

"କେଜାଣି ? ମୁଁ ତ କିଛି ଜାଣିପାରୁ ନାହିଁ । ମା' ସେମାନଙ୍କ ସହ କଥାବାର୍ତ୍ତା କରୁଛନ୍ତି । ମୁଁ ଧାଇଁ ଆସିଲି ଆପଣଙ୍କୁ କହିବା ପାଇଁ ।"

"ହଉ—ଚାଲ ଚାଲ"—କହି ମନୋଜ ଓ ମୁଁ ଉଠିଲୁ ।

ପୋଲିସ ଜିପ୍‌ଟା ଥୁଆ ହୋଇଛି । ତାପଛକୁ ପିକ୍‌ଅପ୍‌ଟାଏ । ବୋଧ ହୁଏ ଆର୍ମଡ୍ ଫୋର୍ସ ମଧ୍ୟ ଅଛନ୍ତି । ଇନ୍‌ସପେକ୍ଟର ସବ୍‌ଇନ୍‌ସପେକ୍ଟର ଏମିତି ମିଶି ୭।୮ ଜଣ ହେବେ ।

ପାଖକୁ ଯାଉ ଯାଉ ଆମେ ଇନ୍‌ସପେକ୍ଟରଙ୍କୁ ଚିହ୍ନି ପାରିଲୁ । ତାଙ୍କ ସହିତ ସଂପର୍କ ନେଇ ଯାହା କିଛି ସୀମିତ ପରିଚୟ । ସେ ମଧ୍ୟ ଆମକୁ ଦେଖି ପାରିଲେ—"ଆପଣମାନେ ? ଏଠି ?"

"ଆମେ ଏଇଠି ଏଇ ପାଖ ଘରେ ରହୁ" —ହାତ ଦେଖାଇ ଇସାରା ଦେଲି ।

"ଆଚ୍ଛା-ଆଚ୍ଛା ।"

ମୁଁ ପଚାରିଲି—"ବିଶ୍ୱାସ ବାବୁ, କଥା କଣ ?"

ସେ ଟିକିଏ ଦୂରକୁ ଡ଼ାକିନେଲେ । "ଆପଣ ଜାଣନ୍ତି ? ଏମାନେ ଖାଲିସ୍ତାନ ସପୋର୍ଟର୍ । ଏମାନଙ୍କର ଗୋଟାଏ ପୁଅ କାନାଡ଼ାରେ ରହେ । ସେ ଖାଲିସ୍ତାନୀ ଦଳରେ ମିଶିଛି । ଦିଲ୍ଲୀରୁ ଖବର ଆସିଛି ଯେ ସେ ଏହା ଭିତରେ କାନାଡ଼ାରୁ ଗୁପ୍ତରେ ଆସି ଭାରତରେ ପହଞ୍ଚିଛି ।"

"ଆପଣ କଣ ଠିକ୍ କହୁଛନ୍ତି ? ହରଭଜନ ସିଂଙ୍କର ତ ଗୋଟାଏ ପୁଅ—ଗୁରୁଦୀପ୍ । ଆଉ ପୁଅଙ୍କ ବୋଧେ ତାଙ୍କର ନାହିଁ ।"

"ଅଛି । ସେ ଅନେକ ଦିନରୁ କାନାଡ଼ାରେ ରହେ ।"

"ଯଦିବା ହୋଇଥିବ ଏମାନଙ୍କ ସହିତ ତାହାର ତ ସଂପର୍କ ନାହିଁ । ଏପରିକି ଚିଠି ପତ୍ରର ସଂପର୍କ ବୋଧେ ବି ନାହିଁ ।"

ଯାହାହେଉ ଆମର ଉପସ୍ଥିତିରେ ହରଭଜନ ସିଂଙ୍କ ଘର ଖାନତଲାସ ସାରି ପୋଲିସ ଦଳ ଫେରିଗଲେ ।

ତାପରଦିନ ପ୍ରୀତମ ଆମକୁ ସବୁକଥା କହିଲା—"ହଁ, ସେମାନଙ୍କର ବଡ଼ ଭାଇ ଅର୍ଥାତ୍ ହରଭଜନ ସିଂଙ୍କର ଜ୍ୟେଷ୍ଠପୁତ୍ର କାନଡ଼ା ଚାଲିଯାଇଛି ପ୍ରାୟ ୧୦ ବର୍ଷ ତଳୁ ଏବଂ ସେଠାରେ ବିବାହ କରି ସେଠାକାର ନାଗରୀକତ୍ଵ ସେ ଗ୍ରହଣ କରିଛି । କଦାଚିତ୍ କେବେ ଚିଠି ଦେଉଥିଲା । ବେଳେବେଳେ କିଛି କିଛି ଟଙ୍କା ବି ପଠାଉଥିଲା । କିନ୍ତୁ ଯେଉଁଦିନଠାରୁ ଖାଲିସ୍ଥାନୀ ଦଳରେ ମିଶିଲା ସେ ଦିନରୁ ତାର କୌଣସି ଖବର ଆମ ପାଖରେ ନାହିଁ । ସେ ଚିଠି ମଧ୍ୟ ଦିଏ ନାହିଁ । ଏପରିକି ତାର ଠିକଣା ବି ଆମକୁ ଜଣାନାହିଁ । ମା' କାଲିଠାରୁ ବହୁତ ଭାଙ୍ଗି ପଡ଼ିଛନ୍ତି । ଘର ଭିତରେ ପୋଲିସ ପଶି ସବୁ ଜିନିଷପତ୍ର ଘାଣ୍ଟିଲା—ଏହା ତାଙ୍କୁ ବହୁତ ବାଧିଛି । ସେ କହୁଛନ୍ତି—ତେବେ କଣ ସ୍ୱେର ଉଚ୍ଚାରିତ ଖାଣ୍ଟି ଅପରାଧୀ ଭଳି ଆମେ ବଞ୍ଚିବା ? ଏମାନେ ଏଣିକି ବରାବର ଏହା କରିବେ । କେଜାଣି ଅବା ଗୁରୁଦୀପକୁ ବି ଖାଲିସ୍ଥାନୀ ବୋଲି ଦିନେ କହିବେ ।"

କେବଳ ସମବେଦନା ଜ୍ଞାପନକରିବା ଓ ଆଶ୍ୱସନା ଦେବାଛଡ଼ା ଆମେ ବା ଆଉ କଣ କରି ପାରିବୁ ? ତେବେବି କହିଲୁ—"ଦେଖିବା ଆମେ ଏସ୍. ପି଼ଙ୍କ ସଙ୍ଗେ ଏ ବିଷୟରେ କଥାବାର୍ତ୍ତା କରିବୁ । ପୁଣି ଯେପରି ଏଭଳି ଘଟଣା ନଘଟେ ।"

ଏ ଘଟଣାର ଦୁଇଦିନ ପରେ ସେଦିନ ସଂଧ୍ୟାବେଳେ ଆମେ ଅଫିସରୁ ଫେରିଲାବେଳକୁ, ସ୍ୱର୍ଗୀୟ ହରଭଜନ ସିଂଙ୍କ ପ୍ରତିଷ୍ଠାନର ମେନେଜର ଜଗତଲାଲ୍ ଯେପରି ଆମପାଇଁ ଅପେକ୍ଷା କରୁଥିଲା ।

ସେ କହିଲା—"ମାଁଜୀ ଆଜି ପ୍ରୀତମ ଓ ଗୁରୁଦୀପ୍ ସହ ହଠାତ୍ ଦିଲ୍ଲୀ ବାହାରିଗଲେ । ସେମାନେ ବହୁତ କାନ୍ଦୁଥିଲେ । ମାଁଜୀ କହିଛନ୍ତି ସେମାନଙ୍କୁ ମାଫ୍ କରିଦେବେ—ଆପଣମାନଙ୍କୁ କିଛି ନଜଣାଇ ହଠାତ୍ ଚାଲି ଯାଇଥିବା ଯୋଗୁଁ । ମାଁଜୀ କହିଛନ୍ତି- କଣ ସବୁ କାମସାରି ଫେରି ଆସିବେ । ବୋଧେ ପ୍ରୀତମର ବାହାଘରଟା ଦିଲ୍ଲୀରେ କରିବେ । ପ୍ରୀତମ କହିଛି ଆପଣଙ୍କୁ କହିବା ପାଇଁ—ଦିଲ୍ଲୀରେ ପହଞ୍ଚି ସେ ଚିଠିଦେଇ ସବୁକଥା ଜଣେଇବ ।"

କାହାଣୀ :

# ପୂର୍ଣ୍ଣ ଅପୂର୍ଣ୍ଣ

## ବିନୋଦ ରାଉତରାୟ

ଉପରକୁ ଚାରିଜଣ । ତଳକୁ ଦୁଇଜଣ । ଏହିପରି ଛଅଜଣରେ ଗୋଟିଏ ଘର । ଉପରର ଚାରିଜଣ ବାହୁ ହୋଇ ଯାଇଥାନ୍ତି । ଦୁଇ ମଝିରେ ଦୁଇଜଣ । ଆହୁରି ଦୁଇ ପାଖକୁ ରହିଲେ ଅବଶିଷ୍ଟ ଦୁଇଜଣ । ତଳେ ଯେଉଁ ଦୁଇଜଣ ରହିଲେ ସେ ଦୁହେଁ ନଡ଼ା ଫୋପାଡ଼ିବେ, ଝଡ଼ାଝଡ଼ି କରିବେ । ନଇ ଚରି ଯୋଗାଇବେ ଓ ବାଉଁଶ ଚିରି ବତା ଯୋଗାଇବେ । ବରଂ ସ୍ଥାନ, କାଳ, ପାତ୍ର ଓ ଘରର ଆୟୋଜନ ଦେଖି ଜଣେ ଦି'ଜଣଙ୍କୁ କମାଇ କିମ୍ବା ବଢ଼ାଇ ଦେଇ ପାରିଲେ କ୍ଷତିନାହିଁ ।

ଜ୍ୟେଷ୍ଠମାସ ଶେଷ ହେବାକୁ ବସିଲାଣି । ଦିନସାରା ଗୁଳୁଗୁଳି ଗରମରେ ଛଟପଟ ଲାଗୁଛି । ଏହା ମଧ୍ୟରେ ଅସରାଏ ଦି' ଅସରା ଭଲ ବର୍ଷା ବି ହୋଇ ସାରିଲାଣି । ଉପରବେଳାକୁ ପ୍ରାୟ ଭୂଇଁ ଓ ଆକାଶକୁ ଏକାଠି କରି ଧୂମାଳି ପବନ ମାଡ଼ି ଆସୁଛି । ମେଘପାଣି ପଡ଼ିଯିବା ପରେ କ୍ଷେତକୁ ଆବୋରି ରହିଥିବା ଚାଷୀମାନେ ହଳ ବାହାର କଲେଣି । କିଏ କମିତି ବିହନ ମଡ଼ାଇ ଗଲେଣି । କଥାରେ ଅଛି ଚାଷ ତରତର, ବଣିଜ ମଠ । ତରବରରେ ଚାଷ ପାଇଁ ଯାଇ ନଗଲେ ଗୋଟାଏ ବର୍ଷ ମୁଣ୍ଡରେ ହାତଦେଇ ବସିବାକୁ ପଡ଼ିବ । ଚଷା ହୁଡ଼ିଲେ ପରା ବରଷେ କାଳ ହୁଡ଼ି ଯିବାକୁ ହୁଏ । ଶହ ଶହ ବର୍ଷ ବିତିଗଲେ ସୁଦ୍ଧା ଏ ଉକ୍ତି ବଦଳି ନାହିଁ । ଏତେବେଳକୁ ଘର ଛପରବନ୍ଧ ପାଇଁ ମୂଲିଆ ମିଳୁଛନ୍ତି କୁଆଡ଼ୁ ? ପ୍ରଥମେ ମୂଲ ଥିଲା ଜଣକୁ ଛଅଟଙ୍କା । ତାହାକୁ ଚାହିଁ ଯେଉଁମାନେ ଆଦ୍ୟ ଫଗୁଣରେ ଅଥବା ପୂର୍ଣ୍ଣିମୀ ପରେ ଘର ଛାଉଣୀ ଛପର କରି ଯାଇଛନ୍ତି, ସେମାନେ ସୁନାପୁଅ ଭଳି କୃତକାର୍ଯ୍ୟତାର ପ୍ରତୀକ । ଛାତି ଫୁଲାଇ ବୁଲୁଛନ୍ତି । ଏଣିକି ମୂଲ ଛଅରୁ ସାତ, ସାତରୁ ଆଠ, ଆଠରୁ ନଅ, ନଅରୁ ବଢ଼ି ଦଶରେ ପହଞ୍ଚିଲାଣି । କେହି କେହି ମଧ୍ୟ ଅଧିକ ଆତୁର ହୋଇ ଚାହା ଓ ଚାପାଟିର ବ୍ୟବସ୍ଥା କରୁଛନ୍ତି । ଘର ଓଲଟି ଦେଲା ପରେ ଛାଉଣୀଆମାନେ ଚାଳରୁ ଓହ୍ଲାଇ ଅଧବେଳିଏ ବାସି ଚାହାପାଣି, ଲୁଣ ମୁଠାଏ ଓ ମୋଟା ରୁଟି ଚାରିପଟ ଖାଇ ପୁଣିଥରେ ଚାଳରେ ଚଢ଼ୁଛନ୍ତି । ବର୍ଷାକାଳ ଯେତିକି ଯେତିକି ନିକଟ

ହୋଇ ଆସୁଛି, ଯେତିକ ସେତିକି ଘର ଭୁଷୁଣୀ ଏକ ମୁଖ୍ୟ ସମସ୍ୟା ହୋଇ ଦେଖା ଦେଇଛି । ଶ୍ରେଷ୍ଠ-ବଡ଼, ଧନୀ-ନିର୍ଧନ, ଥିଲା-ନଥିଲା, ସମସ୍ତେ ଗୋଟିଏ ଡଙ୍ଗାରେ ଯାତ୍ରୀ । ସମସ୍ତଙ୍କ ପାଇଁ ପୂର୍ଣ୍ଣଚନ୍ଦ୍ରର ଦୁଆର ଖୋଲା । ଆଶୁ ଆଦେଶ ପାଳନର ଆଶା ଦେଖାଇ ସେ ସମସ୍ତଙ୍କୁ ହାତ ମୁଠାରେ ରଖିଛି । ଅନ୍ତତଃ ଆଜ୍ଞାଧୀନ ଭଳି ଦେଖାଇ ହୋଇଛି ।

ଘର ଭୁଷୁଣୀଆ ଦଳର ନେତା ପୂର୍ଣ୍ଣଚନ୍ଦ୍ର ଜଣେ ପ୍ରଚଣ୍ଡ ଶକ୍ତିଧର ମଣିଷ । ଫୁରୁ ଫୁରୁ ମୁଣ୍ଡ । ମୁହଁଯାକ ଅଧା ପାଚିଲା, ଅଧା କଞ୍ଚା ରୁଢ଼ ସାଲୁବାଲୁ । ଫୁଙ୍ଗୁଳା ଦେହରେ ମଇଳା ଅପରଛନ୍ନିଆ ଗାମୁଛା ଚାରିହାତ ଗୁଡ଼ାଇ ହୋଇ ବଞ୍ଚିବାକୁ ଶିଖିଛି । ଶିଖିଛି ପାଞ୍ଚଜଣଙ୍କ ଭିତରେ ଜଣେ ହୋଇ ଚଳିବାକୁ । ଶିଖିଛି ଆଙ୍ଗୁଳି ଚଳାଇ ଅର୍ଥ ଉପାର୍ଜନ କରିବାକୁ । ନିଜର ଶ୍ରେଷ୍ଠିଆ ଭବିଷ୍ୟତର ଏକ ପରିପୂର୍ଣ୍ଣ ଚିତ୍ର ଆଙ୍କିବାକୁ । ଏହି ଦୁଇ ଦିନ ମାସରେ ସେ ଘର ଭୁଷୁଣୀ କରି ଅନେକ ଗୁଡ଼ିଏ ପଇସା କମାଇଲାଣି । ଚଳୁଟିଏ ହେଲେ ବସିଯାଇ ନାହିଁ । ଦୈନିକ ସନ୍ଧ୍ୟାବେଳକୁ ତାର ଦାଣ ପାଖରେ ଥୁଆ ହୋଇଯାଉଛି ବଇନା । କାମ ଖୋଜିବାକୁ ପଡ଼ୁନାହିଁ, କିମ୍ବା ଚିନ୍ତା କରିବାକୁ ପଡ଼ୁନାହିଁ । ବୁଦ୍ଧନୀ ଗତ ହେଲେ କେତେ ପୁଅ ବାର! ପାହାନ୍ତା ପହରୁ ଦଳବଳ ନେଇ ଘର ଓଲଟିବା କାମ ଆରମ୍ଭ କରିଦେଇ ଥାଏ । ଆକାଶରୁ ଶୀତୁଳିଆ ପବନ ସହିତ ମଲ୍ଲୀଫୁଲ ଭଳି ଶୁଭ୍ର ଜ୍ୟୋତ୍ସ୍ନା ଝରିହୋଇ ପଡ଼ୁଥାଏ । ନେହି ଅନୁସାରେ ବଇନା ରଖିଲାବେଳେ ଘର-ବାଲାଙ୍କୁ ଏହି ସାମାନ୍ୟତମ ମୂଳତତ୍ତ୍ୱ ସମ୍ବନ୍ଧରେ ଯଥା ସମ୍ଭବ ସତର୍କ ରହିବା ସତରେ ବୁଝାଇ ଦେଇଥାଏ । ଅଗ୍ନିର ଶେଷ ରେଖାଭଳି ଗୋଟିଏ ସ୍ୱର୍ଣ୍ଣ-ରେଖା ପୂର୍ବ ଆକାଶରେ ଫୁଟି ଉଠିଲା ବେଳକୁ ଓଲଟା କାମ ଶେଷକରି ଓହ୍ଲାଇପଡ଼େ ଚାଳରୁ । ନିତ୍ୟକର୍ମ ଶେଷ କଲା ପରେ ଭୁଷୁଣୀ ଆରମ୍ଭ କରି ଦେଲେ ସାତଟା କିମ୍ବା ଆଠଟା ବେଳକୁ ସବୁ କାମ ଫତେ । ଆମ୍ବ ଡାଳଟାଏ ଚାଳରେ ଗୁଞ୍ଜିଦେଇ ହଳଦୀ ପାଣି ଦୁଇଚଲ ପକାଇ ସେ ବାବଦକୁ ଅଧୁଲିଟିଏ ଅଣ୍ଟାରେ ଖୋସି ପୂର୍ଣ୍ଣଚନ୍ଦ୍ର ବାହାରି ପଡ଼େ ଆଉ ଜଣକର ଘରକୁ । ଏହିପରି ଭାବରେ ଝରଦାସ୍ତ ସୂର୍ଯ୍ୟ ମୁଣ୍ଡ ଉପରେ ଥିବା ଭିତରେ ବାହାପିଟି ଦିନକୁ ଦୁଇଟି ଘର ଭୁଷୁଣୀ କରି ପାରିଲେ ଦୁଇଟି ମୂଲ ମିଳିଯିବା ସ୍ୱାଭାବିକ । ପୁଅଟି ଏବେ ତାର ପଛକୁ ଲାଗି ଆସିଲାଣି । ତାକୁ ସାଙ୍ଗରେ ନେଇ ତଳ ମୂଲିଆ ଭାବେ ଲଗାଉଛି । ଚାଳ ଉପରକୁ ଚଢ଼ାଉ ନାହିଁ । ଏଣୁ ବାପ-ପୁଅ ଦୁହେଁ ଦୁଇ ପରସ୍ତ ଠିକା ଭୁଷୁଣୀ କରି ଦିନକୁ ଅନ୍ତତଃ ଚାରିଟି ମୂଲ ଘରକୁ ଆଣୁଛନ୍ତି । ଯେତିକି ଟଙ୍କା ଅଧିକ

ମିଳୁଛୁ ସେତକ ଖଟଣି ବଢ଼ି ଯାଉଛୁ । ସବଂହରା ନିଠମୂଲିଆର ଜୀବନରେ ଏହା ଆମଦାନୀର ମାପ ! କାମ ପଛରେ ଅଣନିଃଶ୍ୱାସୀ ଧାଉଁବାର ଫଳ ।

ପଇସା ଯେତେ ଉପାୟରେ ଆସେ, ତାହାକୁ ସେତକ ସହଜରେ ଖର୍ଚ୍ଚପତ୍ର କରିବା ପାଇଁ ପୂର୍ଣ୍ଣ ସମ୍ଭାର, ପରମ୍ପରା ଓ ଅଭିଜ୍ଞତାପୁଷ୍ଟ ଆତ୍ମାକୁ ବାଧେ । ନଥିଲା ଘରକୁ ତାର ଏବେ ଟିକେ ମୂଲ ମିଳୁଛୁ । ଏପରି ବେଳ ଆସିବ ଯେତେବେଳେ କୌଣସି ପାଇଟି ଯୁଟିବ ନାହିଁ । ଏକାନ୍ତ ପରିତ୍ୟକ୍ତ, ଅବହେଳିତ, କରୁଣ ଅସହାୟ ଅବସ୍ଥାରେ ହାତଗୋଡ ବାନ୍ଧି ବସିବାକୁ ପଡ଼ିବ । ସେହି ଦୁର୍ଦ୍ଦିନ ପାଇଁ ପଇସାଟିଏ ହାତରେ ନଥିଲେ କିଏ ମୁହଁକୁ ଅନାଇବ ? ଗାଂଜିଆରେ ଟଙ୍କାଟିଏ ପଡ଼ିଥିଲେ ଇଜ୍ଜତ ରଖିବ । ନିଠ ମୂଲିଆର ଜୀବନ ପୋଖରୀର ଭସା ଦଳପରି । ସ୍ଥିରତା ନାହିଁ । ଏହି ମୌଳିକତମ, ସାଧାରଣତମ ସରଳତମ, ସାମାନ୍ୟତମ କଥାକୁ ପିଲାଏ ବୁଝନ୍ତି ନାହିଁ ।

ପୁଅ ବରଜୁ, ଟୋକା ଟାକଲିଆ । ଚେହେରା ସୁନ୍ଦର, ଆଖି ତେଜସ୍ୱାନ । ସରଳ ଓ ନିଷ୍କପଟ । ମନରେ ତାରୁଣ୍ୟର ଅମାପ ଉତ୍ସ । ଚଢ଼େଇ ଛୁଆ-ଭଳି ତାର ଘୁଅପେଟ ଖୁଙ୍କି ଡେଣାରେ ପର କଅଁଳି ଆସିଲାଣି । ଡେଣା ଝାଡ଼ିଦେଇ ଦଗ ଦଗକୁରେ ଉଡ଼ି ଆସିବାକୁ ମନ ତାର ବ୍ୟାକୁଳ । ଦୈନନ୍ଦିନ ଜୀବନରେ ଅପ୍ରସ୍ତିକର ପୁନରାବୃତ୍ତି ତାକୁ ଭଲ ଲାଗୁନାହିଁ । ଅବଶ୍ୟ ବାପାଙ୍କ କଥାକୁ ଅମାନ୍ୟ କରେନାହିଁ । ଗତର ଖଟେଇ କାମ କରେ । କିନ୍ତୁ ସାଙ୍ଗ ସାଥିମେଳେ ସହକ ମହକ କରିବାକୁ ମନ ତାର କନକନ ହୁଏ । ଭଲ ଜାମାପେଣ୍ଟ, ଭଲ ଲୁଙ୍ଗି, ଗଞ୍ଜି ପାଇଁ ତାର ଲୋଭ ହୁଏ । ଏପରିକି ହାଟରୁ ବାସନା ସାବୁନ ଟିକେ ଆଣି ଦେହରୁ ମଳି ଛଡ଼ାଇ ଚକ୍‌ଚକ୍ ହେବା ପାଇଁ ବାହାର ପଡ଼େ । ସେଥିପାଇଁ ବାପର ମହାମୂଲ୍ୟ ଅଭିଜ୍ଞତା ପ୍ରସୂତ ଆଚରଣକୁ ସବୁବେଳେ ବରଦାସ୍ତ କରିପାରେ ନାହିଁ । ମନରେ ସରଳତା କୁଟୀଳ ହୋଇଯାଏ । ସଂସାରର ଜଡ଼ତା, ନିଷ୍ଠୁରତା, ଅସମର୍ଥତା ଯେପରି ନିର୍ଦ୍ଦୋଷ, ନିଷ୍କପଟ, ବାପକୁ ସ୍ନେହ ପାଳିତ ପୁଅ ଚକ୍ଷୁରେ ସବୁ ପ୍ରକାର ରୁଚ ହୀନତା ଓ ରୁକ୍ଷତା ଭିତରକୁ ଓଟାରି ନିଏ ।

ବରଜୁ ମାଆ ଯମୁନା । ଭରି ପାରିବାର ଲୋକ । ବ୍ୟବହାର ମିଠାଳିଆ । ଘରକୁ ଘରଣୀ ପଟେ । ଯିମିତ ଗୁଣିକ, ସିମିତ ଚରୁଣ୍ଣ । ସଂସାରର ଚିନ୍ତା ତାକୁ ସବୁବେଳେ ଯୋକଭଳି କାମୁଡ଼ି ଧରି ରକ୍ତ ଶୋଷୁଛୁ । ଅନାହାର, ଅର୍ଦ୍ଧାହାର, ଅନାଦର, ଲାଞ୍ଛନା, ପୂତଗନ୍ଧ ଭରା ଲୁଆଁଣିଆ ଜୀବନର ଅପ୍ରଶସ୍ତ ସର୍ପିଳ ପଥ ଅତିକ୍ରମ କରି ଅନେକ ଦୂର ଆସିଲାଣି । ନିଜର ସବୁ ସ୍ୱାଧୀନତା, ସୁବିଧା ଓ ସୁଯୋଗକୁ ବଳିଦେଇ ଗୋଟିଏ ପରିବାରର ବନ୍ଧନ,

ଦାରିଦ୍ର୍ୟ ଓ ଦୁର୍ଯୋଗକୁ ମୁଣ୍ଡକୁ ନେଇଛି । ସେ ବାପ-ପୁଅ ଦୁହିଁଙ୍କୁ ସମତୁଲ କରି ଚଳାଇ ଆଣେ । ବାପକୁ ବାପ ମନ୍ତ୍ରେ, ପୁଅକୁ ପୁଅମନ୍ତ୍ରେ ବୁଝାଏ । ନିଜର ନିମିତ୍ତ କୌଣସି କାମନା ନାହିଁ, ଆଶା ନାହିଁ, ଇଚ୍ଛା ନାହିଁ କିମ୍ବା ଆକାଂକ୍ଷା ନାହିଁ । ଅନ୍ୟର ହିତ ନିମନ୍ତେ, ପରିବାରର ସେବା ନିମନ୍ତେ ନିଜକୁ ତିଳତିଳ କରି ବଳିତାଟି ଭଳି ଜାଳିଦେଇ ଅନ୍ଧାରୁଆ ପରିବେଶକୁ ଉଜ୍ଜ୍ୱଳ କରୁଛି । ନିଜର ଶକ୍ତି ଅନୁସାରେ ନିଜ ମୁହଁରୁ ହସ ଗାର ଲିଭାଇ ଅନ୍ୟ ମୁହଁରେ ହସ ଉକୁଟାଉଛି । ସେଥିରେ ତା'ର ସୁଖ, ଆନନ୍ଦ, ଗର୍ବ ଆଉ ଘରଣୀ ପଣିଆ ।

ପଇସା କିଛି ହାତରେ ରହିବାରୁ ପୂର୍ଣ୍ଣଚନ୍ଦ୍ର ଏହା ମଧ୍ୟରେ ଧର୍ମ କର୍ମକୁ ମନ ବଳାଇଲାଣି । ବୈଶାଖ ପୂର୍ଣ୍ଣିମା ବେଳକୁ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ଶ୍ରୀଜଗନ୍ନାଥ ଦର୍ଶନ କରି ଆସିଛି । ତାର ସନ୍ଦୁକ ଭଳି ବଛର ମୂଳେ ମହାପ୍ରସାଦ କୁଣ୍ଡୁଆ ଦିଟା ଉଗୁଡ଼ା ହୋଇଛି । ପେଡ଼ିରେ ସାଇତା ହୋଇଛି ନିର୍ମାଲ୍ୟ କେତେ ମୁଠି । ପୁଣି ଭାବିଛି ରଜକମେଳ ବେଳକୁ ଯିବ ନିଜ ସାଙ୍ଗ ଘରଯାଏ । ସେଠାରୁ ଦର୍ଶନ କରି ଆସିବ ଆଖଣ୍ଡଳ ମଣିଙ୍କୁ । ସିଏତ ପ୍ରତ୍ୟକ୍ଷ ଠାକୁର । ଡାକିଲେ 'ଓଁ' କରନ୍ତି ବୋଲି ଲୋକମାନେ କୁହାକୁହି ହୁଅନ୍ତି । ପଞ୍ଚାନନ ମେଳାର ଖ୍ୟାତି ଚତୁର୍ଦ୍ଦିଗରେ । ସେଥି-ପାଇଁ ଦୁଇଗୁଣ କାମକୁ ଏହା ମଧ୍ୟରେ ବଢ଼ାଇ ସାରିଲାଣି ତିନିଗୁଣ ଯାଏ । ମୁଣ୍ଡ ଉପରେ ଆକାଶବ୍ୟାପୀ ଶେଷ ଗ୍ରୀଷ୍ମର ଉତ୍ତପ୍ତ ଖର ଦୀପ୍ତିକୁ ଅକାତରରେ ଆଦରି ନେଇଛି ।

ଏବର୍ଷ ରଜ ପୂର୍ବରୁ ଆସି ଯାଉଛି ଶ୍ରବଣା । ଏଣୁ ଶ୍ରବଣା ପାଞ୍ଚଦିନ ଛାଉଣୀ ଛପର ବନ୍ଦ ହୋଇଯିବ । ପାଞ୍ଜି ଖଡ଼ା ଫିଟାଇ ପଣ୍ଡିତ ପୁଅ କହୁଛନ୍ତି ଯେ, ଏହି ସମୟରେ ତୃଣ, କାଷ୍ଠାଦି ଛେଦନ ନିଷେଧ । ଯେଉଁମାନେ ଲମ୍ବରେ ତେଲ ଦେଇ ଶୋଇଥିଲେ, ସେମାନେ ଶ୍ରବଣା ଓ ରଜ ପୂର୍ବରୁ ଛାଉଣୀ ଛପର ଧନ୍ଦା ତୁଟାଇ ଦେବାକୁ ବ୍ୟଗ୍ର ହେଲେଣି । ସେହି ଅନୁ-ପାତରେ ପୂର୍ଣ୍ଣଚନ୍ଦ୍ର ମୂଲ ବାବଦରେ ଜଣକୁ ଗୋଟିଏ ଛପର ପିଛା ଦଶଟି ଟଙ୍କାଲେଖା ଅଣ୍ଟାରେ ନ ଖୋସିଲେ ଅତ୍ୟନ୍ତ ସ୍ପଷ୍ଟ ଓ ରୂଢ଼ ଭାଷାରେ ନାସ୍ତିବାଣୀ ଶୁଣାଇ ଦେଉଛି । କୁଞ୍ଚିତ ଓ ରେଖାଙ୍କିତ ମୁଖମଣ୍ଡଳର ଶିଥିଳ ମାଂସପେଶୀକୁ କଠୋର କରି କଥାବାର୍ତ୍ତା କରୁଛି । ଦରଦାମ ଛୁଣ୍ଡାଉଛି । ଦୁଇଟା ଘର ଛପର ସାରିଲା ପରେ ଗ୍ରୁଇ ନେଉଟାଣି ବେଳକୁ କାହାର କମିଠ ଗୁହାଳଟାଏ ନବା ଉପି ଗୁଳିଆଟାଏ ସଜାଡ଼ି ଛପର କରିବା କାମ ହାତକୁ ନେଉଛି । ପୁଅକୁ ସାଙ୍ଗରେ ଧରି ମାତି ଯାଉଛି ସେଥିରେ ।

ସତେ ଯିମିତ ଲୋଭ ଦୁର୍ଦମ, ଆଉ ମନ ଦୁର୍ବଳ । ମନର ଲୋଭ ଦୁବ-ଘାସ ଚେରଗଲା ଉଙ୍କେଇ ଉଙ୍କେଇ ବଢ଼ୁଛି । ସହସ୍ର ଅଯତ୍ନ ସତ୍ତ୍ୱେ ତାର ମୃତ୍ୟୁ ନାହିଁ ।

ଏ ଅଞ୍ଚଳରେ ଗ୍ରୁହଣୀ ଉପର ପାଇଁ ସାଧାରଣତଃ ଦୁଇଟି ଦଳ । ଗୋଟିଏ ପୂର୍ଣ୍ଣଚନ୍ଦ୍ରର ଦଳ, ଅନ୍ୟଟି ଯଦୁନାଥର ଦଳ । ଯଦୁନାଥ ବେଳ-କାଳ ଦେଖି ବାଉଶମାନଙ୍କୁ ନେଇ ତାର ମାତବରିଆ ଦଳଟାଏ ଗଢ଼ିଛି । ସେ ପୂର୍ଣ୍ଣ ସହିତ ତାଳ ପକେଇ ନାମ କରିବାରେ ଓସ୍ତାଦ । ଏବେ କାଲୁ ତାର ଦଳଟି ହାତ ବାନ୍ଧ ବସିଛି । ଅଧିକ ମୂଲର ଲୋଭ ଦେଖାଇ ବାଉଶ ମାନଙ୍କ ମଧ୍ୟରୁ ଦୁଇ ତିନିଜଣ ନିଷ୍ଠାପର କର୍ମୀଙ୍କୁ ପୂର୍ଣ୍ଣ ନିଜଆଡ଼କୁ ଟାଣି ଆଣିଛି । ସେଥିପାଇଁ ସବୁ ପଥିକ, ସମାନ ଧର୍ମୀ ଯଦୁନାଥ—ରାଗ, କ୍ରୋଧ, ପ୍ରତିହିଂସାରେ ଗରଗର ହୋଇ ବାରକଥା କହି ବୁଲୁଛି ଗାଆଁସାରା । ବେଳେବେଳେ ନାସାପୁଟ ସ୍ଫୀତ କରି ପୂର୍ଣ୍ଣର ଅବିବେକତା ପାଇଁ କଡ଼ା କଡ଼ା ଗାଳିପଦ ଶୁଣାଇ ଦେଉଛି । ତା ଆଖିରେ ଦୁଃଖୀ ଲୋକହେଲେ ମଧ୍ୟ ପୂର୍ଣ୍ଣ ଅବିଶ୍ୱାସୀ, କୃତଘ୍ନ ଓ ସ୍ୱାର୍ଥଲିପ୍ସୁ । ସେ ସବୁଠାରୁ ବଳି ଅଧମ କାର୍ଯ୍ୟରେ ଲିପ୍ତ । ନ୍ୟସ୍ତସ୍ୱାର୍ଥର ଆଘାତରୁ ଏଭଳି ବିଷୋଦ୍‌ଗୀରଣ ଚାଲିଥାଏ ।

ପୂର୍ଣ୍ଣଚନ୍ଦ୍ର ନିର୍ବିକାର । ସତେ ଯେମିତି ଗୋଟାଏ ଜଡ଼ ବସ୍ତୁ । ଆଡ଼ୁଆ ଉଡ଼ା ନାହିଁ କି ଢାଇଦା କଟକଣା ନାହିଁ । କଳ ଉଦଗାଳ ପ୍ରତି ଆଦୌ ଭ୍ରୂକ୍ଷେପ ନାହିଁ । ଗୋଟାଏ ହାତରେ କେତେ ତାଳି ବାଜିବ ? ପଟେ ଚକରେ କେତେ ପେଷି ହେବ ? ଯିଏ ସାଙ୍ଗସାଥି ନେଇ ଦିନକୁ ତିନି ଚାରିଟା ଉପର ଗ୍ରୁହଣୀ ବିରିବା ପାଇଁ କବାବ ଦେଉଛି, ତାର ଅଲଣା ବଥାକୁ ବେଳ କାହିଁ ? ଯେଉଁଲୋକ ଲାଞ୍ଚ ନେଉଛି, ମିଛ କହୁଛି, ଚୁଗୁଲି କରୁଛି, ଧପ୍‌ପାଉଛି, ସେ ଲୋକ ଯଦି ଗାଆଁରେ ଗୁଡ ଫୁଲାଇ ଚାଲୁଛି ତାହାହେଲେ ଅନ୍ୟ ଦଳର ଦୁଇଟା ମୂଲିଆଙ୍କୁ ଅଧିକ ମୂଲ ଯୋଗାଇ ଦେବାରେ ଅପରାଧ କେଉଁଠି ? ଯେଉଁମାନେ ଅଧିକ ପଇସା ଆଶାରେ ତା ଦଳରେ ଆସି ମିଶିଲେ, ସେମାନଙ୍କର ଭୁଲ ରହିଲା କେଉଁଠି ? ସେଥି-ପାଇଁ ଗଗନ ପବନ ଥରାଇବା ବାହିଁକି ? ବରଂ ଉପସ୍ଥିତ ପରିପ୍ରେକ୍ଷୀରେ ଏହା ଏକ ପ୍ରକାର ବ୍ୟବହାରିକ ବନ୍ଦୋବସ୍ତ । ସେଥିପାଇଁ ଚକିତ, ଲଜ୍ଜିତ, ଦୁଃଖିତ ହେବାର କୌଣସି କାରଣ ନାହିଁ । ସେ କୌଣସି ଉଚିତ୍ୱାନ ମିଥ୍ୟାଚାର କାମ କରିନାହିଁ । ମୁଣ୍ଡଝାଳ ତୁଣ୍ଡରେ ମାରି ସାତ ସକାଳୁ ସଞ୍ଜ ଯାଏ ବିତାଉଛି କ୍ଲାନ୍ତିହୀନ ଜୀବନ । ଅଧିକ ଦୁଇଟା ଲୋକ ନେଇ ଗଲେ ପୁଣି ନିଜର ଖଟଣି ଊଣା ପଡ଼ୁନାହିଁ ।

ମନକୁମନ ଯେତେ ବୁଝାଇଲେ ମଧ୍ୟ ଯଦୁନାଥର ପୌରୁଷ ଚେତନ ମନ କଥାଟାକୁ ଆଦୌ ସହଜ ଭାବରେ ଗ୍ରହଣ କରି ପାରୁନାହିଁ । ପୂର୍ଣ୍ଣିର ଏହି ଘୋରତର ଅବୈଧ କର୍ମ ପ୍ରତି ତାର ବିବେକ ସମ୍ପୂର୍ଣ୍ଣ ପରାଙ୍ମୁଖ । ଏଣୁ ଅସୌଜନ୍ୟତାପୂର୍ଣ୍ଣ ଅନୈତିକ କାରବାରର ପ୍ରତିଶୋଧ ନେବାପାଇଁ ରାଗରେ ଦାନ୍ତ କଡ଼ମଡ଼ କରୁଛି । ଈର୍ଷାରେ ଜଳିପୋଡ଼ି ଯାଉଛି । ଦିନେ ସୁଯୋଗ ଉଣ୍ଡି ଛଳାଇକରି ଯମୁନା କାନରେ ପକାଇଲା — “ଭାଇସିନା ତୀର୍ଥ କରି ଆସିଲେ, ଭାଉଜର ସେଥିରେ ଯାଏ କେତେ, ଆସେ କେତେ ?”

“ଗିଏ ମୁଠା ମୁଠା ଟଙ୍କା କମାଉଛି, ତାର ତୀର୍ଥ କରିଯିବା ଶୋଭା ପାଏ । ମୁଁ କିଏ, ଆଉ ତୀର୍ଥକ୍ଷେତ୍ର କିଏ ? ଏହି ଘରଦ୍ୱାର, ଛୁଆପିଲା, ଗାଈ ବାଛୁରୀ, ଗଛବୃଛ ମୋର କୋଟିତୀର୍ଥ । ଏହିଠାରେ ଘର ଭିତରର ଚୂଲିମୁଣ୍ଡ ଭଲ ତ ମୁଁ ଭଲ । ଆଉ କେଉଁଥିରେ ପ୍ରୟୋଜନ କଣ ? ଦଶବର୍ଷକୁ ଆସି ପଶିଛୁ ଯେ କଣ୍ଟାବାଳ ପାଚିଲା ହେଲାଣି । ବାପ-ପୁଅ ଦିହେଁ କାନ୍ଧରେ ନେଇ ଚଉଳ ପଡ଼ିଆ ମଶାଣିରେ ଫୋପାଡ଼ି ଦେଇ ଆସିଲେ ଜୀବନ ମୋର କୃତାର୍ଥ !” — ଯଦୁନାଥର ତେଜୋଦୀପ୍ତ ନିଶୁଆ ମୁହଁକୁ ମୁହୂର୍ତ୍ତେ ପର୍ଯ୍ୟନ୍ତ ଭ୍ରୂକୁଞ୍ଚନ କରି ଚାହିଁଲା ପରେ ସ୍ନେହାଳ କଣ୍ଠରେ ଉତ୍ତର ଦେଲା ଯମୁନା ।

ଏଥର ଯଦୁନାଥ ଛୁଗୁଲାଇ କରି ଶ୍ଳେଷ ମଧୁର କଣ୍ଠରେ କହିଲା— “ମଲା ! ଗେରସ୍ତ-ଘରଣୀ ଦୁଇପ୍ରାଣୀ ଏକାଠି ଚକାଡୋଳାଙ୍କ ରତ୍ନବେଦୀ ଉପରେ ଦର୍ଶନ କରି ବାଇଶି ପାହାଚରେ ମାହାଦ କଣିକାଏ ତୁଣ୍ଡରେ ଦେଲେ ପରା ମୋକ୍ଷ ହୋଇ ଯାଆନ୍ତି । ଏକଥା କଣ ଭାଇଙ୍କୁ ଅଜଣା କି ?”

“ଭାଇ ଜାଣିଛି କି ନାହିଁ ସେକଥା ଭାଇ କହିବ । ମୁଁ ସେ ଜବାବ ଦେବି କିଆଁ ? ମୁଁ କଣ ଭାଇର ମନ ମଧ୍ୟରେ ପଶିଛି ?” ତୀକ୍ଷ୍ଣ ଶାଣିତ ଆଘାତ ହାଣି ଏଥର ବାଟଭାଙ୍ଗି ଚାଲିଗଲା ଯମୁନା । ଯଦୁନାଥ ମଧ୍ୟ କଥାଟାକୁ ଅଧିକ ଦୂର ଲମ୍ବାଇବା ପାଇଁ ଆଗ୍ରହୀ ହେଲାନାହିଁ । ଯେତିକି ମଞ୍ଜି ବୁଣିଛି ସେହି ଗଛ ହେବାକୁ ବିଳମ୍ବ ଘଟିବ ନାହିଁ — ଯଦି ଉପଯୁକ୍ତ ପରିମାଣରେ ଆଲୋକ, ପାଣି, ପବନ ଲାଭ କରେ । ବିବେକୀ ଲୋକଙ୍କ ପାଇଁ ଆକାର ଇଙ୍ଗିତ ହିଁ ଯଥେଷ୍ଟ । ଯମୁନାର କୌତୁକ ସ୍ନିଗ୍ଧ ମୁହଁ ଆଡ଼କୁ ଚାହିଁ ସବୁ ଜାଣି ନେବାକୁ ଯଦୁନାଥକୁ ଅଧିକ ସମୟ ଲାଗିଲା ନାହିଁ । ଯେତେବେଳେ ନିଜର ଉନ୍ନତି ବାଧାପ୍ରାପ୍ତ, ସେତେବେଳେ ଅନ୍ୟର କିଛି କ୍ଷତି କରି ପାରିଲେ ସନ୍ତୋଷ ଆସେ ।

ଯେତେବେଳେ ଯମୁନା ବୟସର ଝିଅମାନେ ଦୋଳି ଖେଳି, ପୁଚି ଖେଳି, କାନ୍ଦିଆ ଗୀତ, କହୁଡ଼ି ଓ ତାଆସର ମାଡ଼ କରି ଆବେଗପ୍ରବଣ ସ୍ୱରରେ ସଉକ ମଉଜରେ ଦିନ କଟାଉ ଥିଲେ, ସେତେବେଳେ ସେ ଆବେଗ କଂପିତ ଦୃଷ୍ଟିରେ ଚାହିଁ ରହୁଥିଲା ଶାଶୁର ଗୋଡ଼ଧୁଆ ପାଣିକୁ । ଆଶାର ବାଲିବନ୍ଧ ବାନ୍ଧୁଥିଲା ଭାଗ୍ୟର ଲହଡ଼ି ପାଖରେ ମନର ମମତା ଦେଇ । ପରିବାର ମଧ୍ୟରେ ସବୁ ପ୍ରଥମେ ଆଖିଖୋଲି, ତାହା ବନ୍ଦ କରୁଥିଲା ସର୍ବଶେଷରେ । ମରିବା ପର୍ଯ୍ୟନ୍ତ ଶାଶୁ ହାତରୁ ଚାଲିସ୍ତବ ଛୁଡ଼ ନଥିଲେ । ନଣନ୍ଦ ନାହିଁ କି ଦିଅର ନାହିଁ । ତଥାପି ଶାଶୁ ତା' ହାତକୁ ମହାର୍ଘ ଚାବିକାଠି ମାଳକ ବଢ଼ାଇ ଦେବାକୁ କୁଣ୍ଠିତ । ଚାରିଟା କି ପାଞ୍ଚଟା ପିଲାର ମାଆ ହେଲା ପରେ ବି ଶାଶୁଙ୍କ ହାତକୁ ଲଜ୍ଜାବନତ ମୁଖରେ ଚାହିଁ ରହୁଥିଲା ତେଲ ଟୋପାଟାଏ କିମ୍ବା ଲୁଣ ଟିକେ ପାଇଁ । ଶାଶୁ ଯେତେବେଳେ ମଇଁଷି ବେକର ଘଣ୍ଟି ଭଳି ଦେଶୀ କମାର ହାତର ଲମ୍ବଲମ୍ବ ଚାବି କେଇଟା ବାହା ମୂଳରେ ବାନ୍ଧି ମଝି ଦାଣ୍ଡରେ କମର ଝୁଙ୍କାଇ ଚାଲି ଯାଉଥିଲେ, ସେତେବେଳେ ତାଙ୍କର ମୁରବିପଣିଆ ଫୁଟି ଉଠୁଥିଲା । ବୋହୂ ହାତକୁ ପେଡ଼ି ପେଟରାର ଚାବିନେଥା ଦେଇ ଦେଲେ ସେ ଉପରମୁହାଁ ହୋଇଯିବ । ଇନ୍ଦ୍ର, ଚନ୍ଦ୍ର, ମାନିବ ନାହିଁ । ଓଲଟି ପୁଅକୁ ହାତରେ ରଖି ପଡ଼ କାଟିବାର ବ୍ୟବସ୍ଥା କରିବ ନାହିଁ ବୋଲି କିଏ କହିବ ? ଜୀବନର ପୁଂଜିଭୂତ ବ୍ୟର୍ଥତା, ଅଶାନ୍ତି, ଅସମ୍ପୂର୍ଣ୍ଣତା ମଧ୍ୟରେ ଲୁହାର ଚାବି ନେଥାକୁ ମୁଠାଇ ଧରି ନିଜର ଶ୍ରେଷ୍ଠତ୍ୱ ବଜାୟ ରଖିବା ଯେପରି ଥିଲା ଅନ୍ତରର ଅନିର୍ବାଣ ଅଭିଳାଷ । ସେତେବେଳର ଜୀବନର ଛୁଛାଢଛୁଛ ଘଟଣାସବୁ ମନେ ପଡ଼ିଯାଏ । ଉଚ୍ଛୁଳା ଯୌବନର ରସଭରା ଦିନ ଗୁଡ଼ିକୁ ଭୁଲି ହୁଏ ନାହିଁ । ସତେ ଯେମିତି ଅମୂଲ୍ୟ ଓ ମହତ ସମ୍ପତ୍ତି ସବୁ ଭୁଲିଗଲେ ଜୀବନ ନିରର୍ଥକ ।

ଦେଖିବା, ଶୁଣିବା, ଜାଣିବାର ବାହାରେ ଶାଶୁଙ୍କ ମୁରବି ପଣିଆର ଯେଉଁ ପ୍ରଭାବ, ତାହା ଏଯାଏ ଭୁଲି ହୋଇ ନାହିଁ । ସେହି ଦୁର୍ଦ୍ଦମନୀୟ ପ୍ରଭାବର ପରିସମାପ୍ତି ପରେ ଘରର ସବୁ ଦାୟିତ୍ୱ ସିଧାସଳଖ ଯମୁନା ମୁଣ୍ଡରେ ଅଜାଡ଼ି ହୋଇ ପଡ଼ିଲା । ବାର ହନସ୍ତା ମଧ୍ୟରେ ବନ୍ଧୁବାନ୍ଧବ, କୁଆପିଲି, ହାନିଲାଭ ସବୁକୁ ମାପିଚୁପି ଚାଲିଏ । ନାନା ଯୋଜନା ଦେଖାଇ ଗୋଟିଏ ମୁହୂର୍ତ୍ତି ହାତଗୋଡ଼ ଯୋଡ଼ି ବସିପାରେ ନାହିଁ । ବରଂ ଗତର ଖଟେଇ କାହାର ଗାଈ ଦୁହିଁଦେଇ, କାହାର କାନ୍ଥ ପଟେ ଲିପିଦେଇ, କାହାର ଧାନ ଗହଣିଏ କୁଟିଦେଇ ଏଓଳି ସେଓଳି ହୋଇ ଯାହା ପାଏ, ସେତିକ ତାର ସଂପୂର୍ଣ୍ଣ ବ୍ୟକ୍ତିଗତ । ଯାତଗଣ୍ଠି ଦେଇ ସାଇତି ରଖେ ।

ଏହା ଭବିଷ୍ୟତ ଉନ୍ନତମାନ ଜୀବନର ଯୋଜନା ଗୋଟିଏ । ସେଥିରୁ ପର ଖର୍ଚ୍ଚରେ ଲଗାଏ ନାହିଁକି ପୂର୍ଣ୍ଣିକୁ ତାର ଗନ୍ଧ ସୁଦ୍ଧା ବାରିବାକୁ ଦିଏ ନାହିଁ । ବିଷସ୍ପୃଷ୍ଟା ଠଉରାଇ ଧାରିଲେ ମଧ୍ୟ ପୂର୍ଣ୍ଣି କେବେ ଆପତ୍ତି ଉଠାଇବାର ଶୁଣାଯାଏ ନାହିଁ । ସେହି ଅସପୂର୍ଣ୍ଣ ପାଣ୍ଠିରୁ ତାର କେବେକେବେ ସାବୁନ ଖଣ୍ଡେ, ମୁଣ୍ଡ ଫିତା ଟାଏ, ପିଲଙ୍କ ପାଇଁ ଶୁନପାମ୍ପୁଡ଼ି କିଣି ଆତ୍ମସନ୍ତୋଷ ଲାଭ କରିଥାଏ ; ଏଣିକି ପିଲାଏ ଟିକେ ପାରିବାର ହେବାରୁ ଲୁଲୁଡ଼ା ରୁଣିଟା କିମ୍ବା ଛେଳିପଟେ ପାଳି ନିଜର ହାତ ଟକ୍‌କଣ କରୁଛି । ତାହା ବି ଯାଉଛି ପିଲଙ୍କ ନାଆଁରେ । ଏ କ୍ଷେତ୍ରରେ କେହି ତାର ପ୍ରତିଦ୍ୱନ୍ଦ୍ୱୀ ନାହିଁ କିମ୍ବା କେହି ତାକୁ ଈର୍ଷା କରେ ନାହିଁ ।

ଯଦୁନାଥକୁ ଆଡ଼େଇ ଗୁଳିଗଲା ପରେ ତାର ଅପମାନସୂଚକ କଥା କେଇପଦ ଯମୁନାର ଶାନ୍ତ ନିଶ୍ଚିନ୍ତ ମନ ମଧ୍ୟରେ ଚକ୍‌କାଭଳି ଅଟକି ଗଲା । ଭାବନାର ଝଙ୍କାର ତୋଳିଲା । ଆଗକୁ ପଛକୁ କେତେ କଣ ସେ ଭାବିଲା । ସତେ ଯେମିତି ଯଦୁନାଥର କଥାକୁ ନଭାବିଲେ ଆଉ ତାର ଚଳିବ ନାହିଁ । ମନ ଭାରି ଅସ୍ଥିର ! ମନରେ ଦୋଦୋପାଞ୍ଚ ଅନସ୍ଥାର ଅବସାନ ଘଟାଇବା ପାଇଁ ବହୁତ ଏପାଖ ସେପାଖ ହେଲା ।

ମନକୁ ଯେତେ ରଗଡ଼ିଲେ ଦାଗ ଲିଭୁନାହିଁ । ଘାଆ, ବଥ, ଯାଦୁ କିମ୍ବା ବଇଁଥିର ଦାଗ ଯେପରି ଟକ୍‌କଣ ଚମଡ଼ାରେ ଖୁଣ ରଖିଯାଏ, ଯଦୁନାଥର ଇଙ୍ଗିତ ସେହିପରି ଖୁଣ ରଖିଦେଇ ଗଲା ଯମୁନାର ପରିଚ୍ଛନ୍ନ ମନ ଉପରେ । ଶେଷକୁ ସ୍ଥିର କଲାଯେ ସେ ମଧ୍ୟ ସାହାଣ୍ଡାର୍ଥ କରିବାକୁ ଯିବ । ନିଜର ଉପାର୍ଜନ, ନିଜର ଶକ୍ତି, ନିଜର ସାମର୍ଥ୍ୟ କଣ, ତାହା ଦେଖାଇ ଦେବ ଭୁର ଯଦୁନାଥକୁ । ପୂର୍ଣ୍ଣିର ଗୋଟିଏ ହେଲେ କାଣି କଉଡ଼ିରେ ହାତ ଲଗେଇବ ନାହିଁ । ଘରର ମଣିଷ ଯଦି ମନର ମନର ମଣିଷ ହୋଇଥାନ୍ତା, ମନର ତରଙ୍ଗ ମାପି ପାରୁଥାନ୍ତା, ତେବେ ତାକୁ କିଏ କାହିଁକି ବାରକଥା ମଝି ଦାଣ୍ଡରେ କହି ଯାଆନ୍ତା ? କିଏ କାହିଁକି ଉପରେ ପଡ଼ି କଥାରୁ ବଢ଼ି ଭଳି ବ୍ୟବହାର ଦେଖାନ୍ତା ? ଏଥିକୁ ରାଗରୋଷ, ମାନ-ଅଭିମାନ, ଆପତ୍ତି ଅଭିଯୋଗ, ଅଳି ଅଝଟ କରି ଲାଭ କଣ ? ଗୋଡ଼ହାତ ସଚଳ ଅଛି । ପିଲାଛୁଆ ବି ବଡ଼ ହୋଇ ଗଲେଣି । ବୟସ ତଳକୁ ଖସି ଗଲଣି । ଆଉଟ ରହି ମନ ରଞ୍ଜାଇବାର ଦିନ ଗଲଣି ମହଲି । ଠାକୁରା ହେମନ୍ତ କାଳରେ ହନୁହାଡ଼ ହିଁ ସାର । ଶେଷ ବସନ୍ତରେ ଝଁଗ ବଉଳର ତେହେରାରେ ଆଉ କଣ ଥାଏ ଲାବଣ୍ୟ ନା ଥାଏ ସୌରଭ । ସିଝା ଗାତରେ ପକାଇଲେ ଗ୍ରେର ସୁଦ୍ଧା ଛୁଇଁବ ନାହିଁ । ଏଣିକି ନିଜ ପିଙ୍ଗରେ ମାଟି ତାଡ଼ିବ ନିଜେ । ନିଜ ମନକୁ ପାଇଲାପରି, ନିଜ ମନକୁ ମାନିଲାପରି

ପିଲ ତୁଆଙ୍କୁ ଯେଉଁ ସାହାଯ୍ୟ କରିବ । ସେଥିପାଇଁ ତାର ଅଛି ଅଫୁରନ୍ତ ସାହସ । ଏକା ଯଦୁନାଥ ନାହିଁକ, ଗାଆଁ ସାରା ସମସ୍ତଙ୍କୁ ବିସ୍ମିତ, ସ୍ତମ୍ଭୀଭୂତ ଓ ମନ୍ତ୍ରମୁଗ୍ଧ କରି ଦେଖାଇ ଦେବ, ଚେତାଇ ଦେବ, ହେଜାଇ ଦେବ ସେ ସେ ଅଯୋଗ୍ୟା, ଅକର୍ମଣ୍ୟା, ଅବାଞ୍ଛନୀୟା ନୁହେଁ । ସେ ହାତଗୋଡ଼ ହଲାଇଲେ କିଛି ଅଭାବ ରହେ ନାହିଁ କି କାହା ଉପରେ ନିର୍ଭର କରିବାକୁ ପଡେନାହିଁ ।

ଆତ୍ମ-ଶକ୍ତିର ଚୈତନ୍ୟବାନ ଜୀବ ହେଉଛି ଏହି ମଣିଷ । ସବୁ-ପ୍ରକାର ବିଭବ ଓ ଜାଗତିକ ସମ୍ପନ୍ନତା ମଧ୍ୟରେ ବାସକରି ସୁଦ୍ଧା ଆତ୍ମ-ଶକ୍ତି ଉପରେ ଯାହାର ଅବିଚଳିତ ଆସ୍ଥା ନାହିଁ, ତାହାର ଜୀବନ ହିଁ ଗୋଟାଏ ପଥର ତଳେ ଚାପିହୋଇ ରହିଥିବା କେଉଁଏ ଦୁବଘାସ ଭଳି । ଯମୁନାର କଳ୍ପନା ଉଚ୍ଛାଟିତ ଓ ଉଦୀପ୍ତ ହୋଇ ଉଠିବାକୁ ଅଧିକ ସମୟ ଲାଗିବ ନାହିଁ ।

ସେଦିନ ହୋଇଥାଏ ଦେବସ୍ନାନ ପୂର୍ଣ୍ଣିମା । ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ନାନ ମଣ୍ଡପକୁ ବିଜେ କରନ୍ତି । ଅତ୍ୟଧିକ ଗ୍ରୀଷ୍ମତାପ ପ୍ରବାହ ସହିତ ଶୀତଳ ଜଳରେ ସାର୍ଥକ ସ୍ନାନ ଦ୍ୱାରା ଜ୍ୱରଗ୍ରସ୍ତ ହୋଇ ପଡ଼ନ୍ତି । ସେଥିପାଇଁ ଅନ୍ତ୍ୟନ ଏକପକ୍ଷ ପର୍ଯ୍ୟନ୍ତ ପାଚନ ପାଣିର ବ୍ୟବସ୍ଥା କରାଯାଏ । ମଣିଷର ସମାଜ ବ୍ୟବସ୍ଥା ଓ ସ୍ୱାସ୍ଥ୍ୟ ସେବା ଅନୁରୂପ ଦେବତାଙ୍କୁ ସୁଦ୍ଧା ଚଳପ୍ରଚଳ ହେବାକୁ ହୋଇଥାଏ । ଏହି ସ୍ମରଣୀୟ ପୂର୍ଣ୍ଣିମାଦିନ ପରମ ଭକ୍ତ ଚରମ ସାଧକ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସଖା ଅଚ୍ୟୁତାନନ୍ଦ ଦାସ ନେମ୍ଭାଳ ଗ୍ରାମର ଉପକଣ୍ଠରେ ଦେହରକ୍ଷା କରିଥିଲେ । ତାଙ୍କର ସମାଧି ସେଠାରେ ଅଛି ଓ ପ୍ରତିବର୍ଷ ଦେବସ୍ନାନ ପୂର୍ଣ୍ଣିମା ଦିନ ମେଳା ବା ଯାତ୍ରା ହୁଏ । କିମ୍ବଦନ୍ତୀ ଅଛି ଯେ ସ୍ୱୟଂ ଶ୍ରୀଜଗନ୍ନାଥ ଭକ୍ତଙ୍କୁ ଦର୍ଶନ ଦେବାପାଇଁ ପ୍ରତ୍ୟେକ ବର୍ଷ ସ୍ନାନ ପୂର୍ଣ୍ଣିମା ଦିନ ମଧ୍ୟରାତ୍ରରେ ପୁରୁଷୋତ୍ତମ କ୍ଷେତ୍ରର ଅଚ୍ୟୁତାନନ୍ଦଙ୍କର ସମାଧି ପୀଠକୁ ବିଜେ କରନ୍ତି । ନେମ୍ଭାଳ ଗାଦି ମୁହୂର୍ତ୍ତକ ପାଇଁ ଚୂଆ, ଚନ୍ଦନ, ଅଗୁରୁ, କସ୍ତୁରୀବାସରେ ମହକି ଉଠେ । ଶ୍ରୀକ୍ଷେତ୍ର ପାଲଟି ଯାଏ । ଯେଉଁ ଭକ୍ତବୃନ୍ଦ ସ୍ନାନ ମଣ୍ଡପରୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଭରୁ ବଞ୍ଚିତ ହୋଇ ଆନ୍ତି, ସେମାନେ ବିହ୍ୱଳ ବିମୋହିତ ଅନ୍ତରରେ ଏହି ଗାଦି ପୀଠ ଦର୍ଶନ କରି ପୁଣ୍ୟ ଭାଗୀ ହୁଅନ୍ତି । ଏହି ଦୃଷ୍ଟିକୋଣରୁ ନେମ୍ଭାଳ ଯାତ୍ରାର ଗୌରବ ଚିରକାଳ ଘରେ ଘରେ, ଯୁଗେ ଯୁଗେ ମୁହେଁ ମୁହେଁ ଅକ୍ଷୁର୍ଣ୍ଣ ।

ଏହି କାଳ୍ପନିକ କାହାଣୀଟି ଯମୁନା ମନର ନିଭୃତ କୋଣରେ ଖୁବ କୌତୁହଳ, ଉତ୍ତେଜନା, ଔତ୍ସୁକ୍ୟ ଓ ଆନନ୍ଦ ସୃଷ୍ଟି କଲା । ଭିତରର ପବନ ତାକୁ କଲା ଅସମ୍ଭାଳ । ଚଞ୍ଚଳ ହୋଇ ଉଠିଲା ହୃତ୍‌ପିଣ୍ଡ । ସେ ସ୍ଥିର କରି ପକାଇଲା ଯେ ପୁରୁଷୋତ୍ତମ କ୍ଷେତ୍ରଯାଏ ପିନ୍ଧା ଯାଇ ପାରିବ

ନାହିଁ, କିନ୍ତୁ ଲେମ୍ବାଳ ପର୍ଯ୍ୟନ୍ତ ଯାଇ ଚର୍ମଚକ୍ଷୁ ପବିତ୍ର କରି ପାରିବ । କୋଷ ମଧ୍ୟରେ କ୍ଷାଟଭଳି ନିଷ୍ଫଳ ମନ ଯେବେ କେତେକାଳ ଆଉ ଘର କଣରେ ପଡ଼ି ରହିବ ? କେତେକାଳ ନାସ୍ତମାନ୍ତବର୍ତ୍ତୀ ଚାରି ଦେଉଡ଼ିରେ ବାନ୍ଧି ହୋଇ ସଂସାର ମେରୁ ଖମ୍ବରେ ଗୁରିପାଖରେ ବୁଲୁଥିବ ? ଏଥିରୁ ଅଲଗା ହେଲେ କଣ ଲୋକଙ୍କ ଖରାପ ହେବିବ ? ଅଜ୍ଞିତ ମନରେ ବ୍ୟାକୁଳତା, ଆବେଗ ଓ ଆକର୍ଷଣ ବଢ଼ିବା ସଙ୍ଗେ ସଙ୍ଗେ ହଠାତ ଗ୍ରୁଏଁ ଗ୍ରୁଏଁ ବଢ଼ିଗଲା । ଯମୁନା ଜାଗ୍ରତ ହୋଇ ଉଠିଲା । ଦେହ ରୋମାଞ୍ଚିତ ହେଲା । ହୃଦୟ ଭୀଷଣ ଭାବେ ଆନ୍ଦୋଳିତ ହେଲା । ସେହି ଘାତ-ପ୍ରତିଘାତ ଭିତରେ କାଳଆର କ୍ରୋଧ ଅଦୃଶ୍ୟଭାବେ ହିଙ୍ଗିଲା ।

ଲେମ୍ବାଳତ ମୋଟେ ଦେଡ଼କୋଶ ବାଟ ବୋଲି ସମସ୍ତେ କହୁଛନ୍ତି । ପାଇଟିର ପାହାଡ଼ ଭିତରେ ମୁଣ୍ଡଗୁଞ୍ଜି ପଡ଼ିଥିଲେ, ପଡ଼ି ରହିଥିବ । ବେଗିବେଗି ଗୋଡ଼ ବଢ଼ାଇ ଚାଲିଗଲେ ଗାଦି ଦର୍ଶନ କରି ସହଳ ଫେରି ଆସି ପାରିବ । ଯନ୍ତ୍ରଚାଳିତ ପରି ନିଜେ ପ୍ରସ୍ତୁତ ହେବାକୁ ଅଧିକ ସମୟ ଲାଗିଲା ନାହିଁ । ଦୁଇଟି ପେଣ୍ଡି କୁକୁଡ଼ାକୁ ବନ୍ଦୀ କରିଦେବା ପାଇଁ କିଛି ଅଧିକ ସମୟ ଲାଗିଲା ନାହିଁ । ଗ୍ରାଇ ଲେଉଟାଣି ବେଳକୁ ବୁଝ ତେଲ ଘଷି କେଶକୁ ସଜାଡ଼ି ଦେଇ ଫିତାଟି ଟାଣିକରି ବାନ୍ଧିଲା । ଚଉଡ଼ା ସୁନ୍ଦରରେ ସିନ୍ଦୁରର ଅରୁଣ ଗାରଟିଏ ଯତ୍ନରେ ଦେଲା । ପେଡ଼ି ଲୁଗା ପିନ୍ଧି ସାନ ଝିଅଟିକୁ କାଖକରି ବାହାରିଗଲା ଦୃପ୍ତ ଗତିରେ । ଧର୍ମବନ୍ଧା ତନର ଅଚିହ୍ନା ଜଣାଶୁଣା କର୍ମସୂଚୀ ଗୁରି ପାଖରେ ପଡ଼ିରହିଥିଲା । ପଡ଼ିରହି ଥାଉ ସେ । ମନର କୌତୂହଳ ପାଖରେ, ଆଶା ଓ ଅଭିଳାଷ ପାଖରେ ତାହା ତୁଚ୍ଛ । ଫେରିଲା ପରେ ଯାହାହେବ ।

କାହାକୁ ଅପେକ୍ଷା ନାହିଁ କିମ୍ବା କାହାରି ଅନୁମତି ଲୋଡ଼ାନାହିଁ । କମାର ସାହି, ମହାନ୍ତି ସାହି, ଜେନା ସାହିରୁ କେତେ ମାଇପେ ବାହାରକୁ ବାହାରି ଯାଉଛନ୍ତି ପିଲା କୁଆଧରି । ହର୍ଷ ଉଲ୍ଲାସ ପୂର୍ଣ୍ଣ ଧାଡ଼ି ଧାଡ଼ି ଲୋକଙ୍କର ଯେଉଁ ବିଚିତ୍ର ବର୍ଣ୍ଣାଢ୍ୟ ଦଉଡ଼ି ଲମ୍ବି ଲମ୍ବି ଯାଉଛି ସେହି ଦଉଡ଼ି ସହିତ ଯମୁନା ସିଧାସଳଖ ସାମିଲ ହୋଇଗଲା । ନିଃସଂକୋଚରେ ମିଶିଗଲା ଅପରିଚିତ ଓ ଅପରିଚିତ ଲୋକଙ୍କ ଗହଳରେ । ନିଜ ଗୁରିପାଖରେ ଚଳମାନ ଜୀବନର ଚହଲ ଗୁଡ଼ିକ ତାହାକୁ ଅତ୍ୟନ୍ତ ସ୍ପଷ୍ଟ ଦେଖାଗଲା । ସତେ ଯିମିତି ପୁରୁଣା ଯମୁନା ସହିତ ବର୍ତ୍ତମାନର ଯମୁନାର କୌଣସି ସାମଞ୍ଜସ୍ୟ ନାହିଁ । କୌଣସି ସମ୍ବନ୍ଧ ନାହିଁ । କେବଳ ରୂପାନ୍ତର ନୁହେଁ, ଯମୁନାର ଜନ୍ମାନ୍ତର ଘଟିଛି । ସାହସ ଦମ୍ଭ, ନିଷ୍ଠା, ଆଉ ମନର ଆବେଗ ଯଥେଷ୍ଟ ବଢ଼ି ଯାଇଛି ।

ବାଧାବନ୍ଧନ ନମାନି ଯମୁନା ମତୁଆଳି ହୋଇ ବହୁଛି ଉଜାଣି । କାନରେ ତାର ପଡୁଛି ମୋହନ ମୁରଲୀର ମଧୁର ମୂର୍ଚ୍ଛନା ।……

ଠନଠନିଆ ଘର ଗୃହିଣୀ ମାଗ ଠନ କୋଡ଼ି ଟଙ୍କା ଅଣ୍ଟାରେ ଖୋସି ମାଇ ସଂକର କଅଁଳ ଆଲୁଅରେ ପୂର୍ଣ୍ଣଆସି ପହଞ୍ଚିଲା ବେଳକୁ ଦେଖିଲା ଘରେ ତାଲା ଝୁଲୁଛି । ନଡ଼ିଆ ପତର ନହଳ ଭିତରୁ ଗ୍ରୁଣି ହୋଇ ଜହ୍ନ ଆଲୁଅ ବନ୍ଦୁ ବନ୍ଦୁ ଝରିପଡ଼ୁଛି ସ୍ତରଥାଡ଼େ । ଯିବା ଆସିବା, ଖାଇବା ପିନ୍ଧିବା, ଦେଖିବା ଶୁଣିବା, ବୋଲିବା ଶୋଇବା, ସବୁର ଭିତରେ ଯାହାର କୁଶଳୀ ହାତ ଅନବରତ କାର୍ଯ୍ୟରତ ଥାଏ, କେବଳ ତାର ହିଁ ଦେଖାନାହିଁ । ମୁହଁ ଉପରେ ତାର ଯୁଗପତ୍‌ ଫୁଟି ଉଠିଲା ବିରକ୍ତି, ବ୍ୟସ୍ତତା, ଉଦ୍‌ବେଗ ଓ ଦାମ୍ପତ୍ୟକ ଉତ୍କଣ୍ଠାର ଚିହ୍ନ । ହୁଏତ କାହାର ଘରକୁ କୌଣସି କାର୍ଯ୍ୟ ଉପଲକ୍ଷେ ଯାଇଥିବ ମନେକରି ପୁଣି ବିରକ୍ତି ଭରା ଆତୁର ଓ ବିକଳ ହୋଇ ଖୋଜି ବାହାରିଲା ବେଳକୁ ପଡ଼ିଶା ଘରର ଝିଅବୋହୂ ଗୁହଅଣି ଥୋଇ ଦେଇ ଖବରଦେଲେ ମାଆ ତାର ଲେମ୍ବୁଲ ଯାତ୍ରାକୁ ଯାଇଛି ବୋଲି । ଏଥର କଥାଟା ପାଣି ଭଳି ସ୍ୱଚ୍ଛ ହୋଇଗଲା ।

କେବେହେଲେ ଯିଏ ବାଡ଼ଘର ଓ ପରିବାର ଠାରୁ ମୁହଁ ଉପରକୁ ଉଠାଇ କୌଣସି ଆଡ଼କୁ ମନବଳାଇ ନାହିଁ, ନିଜ ସଂସାର ମଧ୍ୟରେ ଜୀବନର ଗମ୍ଭୀର ସ୍ୱାଦ ଆସ୍ୱାଦନ କରିଛି, ନିଜ ଆଖିର ଚତୁଃସୀମା ମଧ୍ୟରେ ଆତ୍ମଯାତ ହୋଇ ଆସିଛି, ସେ ଏପରି ଲଗାମ ଛଡ଼ା ହୋଇ ହଠାତ୍‌ ଯାତ୍ରାକୁ ବାହାରି ଯିବା ପାଇଁ ମନ ବଳାଇବାର ହେତୁ ଖୋଜି ପାଉନଥିଲା ବିରଞ୍ଚି ।

“ବୟସ ଗଡ଼ିଗଲେ ମାଇପଙ୍କ ମଧ୍ୟରୁ କାହାର କାହାର ଏହିପରି ମୁଣ୍ଡ ଗୋଳମାଳ ହୋଇଯାଏ”—ପୁଣି କହିଲା । କହିବା ସଙ୍ଗେ ସଙ୍ଗେ ତା ଓଠ ଦୁଇଫାଳ କାନପର୍ଯ୍ୟନ୍ତ ଲମ୍ବିଗଲା । □□□

□ ଅଧ୍ୟକ୍ଷ, ଗଭର୍ଣ୍ଣମେଣ୍ଟ କଲେଜ ଅଫ
ଆର୍ଟସ ଏଣ୍ଡ କ୍ରାଫଟ
ଖଲ୍ଲିକୋଟ, ଗଂଜାମ

**କାହାଣୀ :**

# ॥ ଜୟ ପରାଜୟ କେନ୍ଦ୍ରର ମଣିଷ ॥

**ଚିତ୍ତରଞ୍ଜନ ତ୍ରିପାଠୀ**

---

ବାପାଙ୍କର ଲୁହ ଛଳଛଳ ଲାଲ ଆଖି, ଚିତ୍କାର ଓ ଧମକରେ ପୁରୁଣା କୋଠା ଦୋହଲୁଛି। ବାତାବରଣରେ ଆକ୍ରମଣ, ଏବଂ ଦୁଃଖ ସମାଧାନ କରାଇ ଦେବାର କଏ କଏ ଆଗ୍ରହ। କୃଷ୍ଣ ପ୍ରସାଦ ଅଚଳ ମହାମେରୁ। ପ୍ରବଳ ପରାକ୍ରମରେ ହୋଇଛି ସବୁ ଆକ୍ରମଣ। ଘର ଭିତରେ ଜେଜେମା, ମା', ଖୁଡ଼ୀ, ଭଉଣୀମାନଙ୍କର କାନ୍ଦର ଗୋଟାଏ ଗୋଟାଏ ପର୍ବ ଚାଲିଛି ମଝିରେ ମଝିରେ। ଶହ ଶହ ବର୍ଷର ବୁନିଆଦ, ଅଚଳାଚଳ ସଂପତ୍ତି ଓ ରାଜକୀୟ ଢାଞ୍ଚା ତ୍ୟାଗକରି ଗୋଟେ ପରମ୍ପରା ଭାଙ୍ଗି କୃଷ୍ଣପ୍ରସାଦ ଚାକିରି ଉଦ୍ଦେଶ୍ୟରେ ସହର ଚାଲିଯିବେ, ଏ ସମସ୍ୟା ଉପରେ ଖଣ୍ଡଯୁଦ୍ଧ ଏବଂ ନାଟକୀୟ ପରିବେଶର ସୃଷ୍ଟି। ଗୋଟେ ବ୍ୟର୍ଥତା ଓ ପରାସ୍ତ ମାନସିକ ଦୁଃସ୍ଥିତି ଭିତରେ ବାପା ଗର୍ଜନ କରନ୍ତି ମଝିରେ ମଝିରେ—ଆଠ ଦଶ ହଜାର ପିଲାଙ୍କ ପ୍ରତିଯୋଗିତାରେ ତୁ ପ୍ରଥମ ହୋଇଛୁ, ଏଥିପାଇଁ ତୋର ଏ ଗର୍ବ ! ଏସବୁ ତ୍ୟାଗକରି ଚାଲିଯିବା ପାଇଁ ତୋମନ ଉଦ୍‌ବିଗ୍ନ। କିନ୍ତୁ ଏଠି ଜୀବନ ତମାମ ଆଠ ଦଶ ହଜାର ଲୋକଙ୍କର ସମ୍ମାନୀୟ ବ୍ୟକ୍ତି ହୋଇ ରହିବୁ, ପୂଜା ପାଇବୁ। ଚାଷ ବାସ ଦେଖ। ମାଛ ପୋଖରୀ ଓ ନଡ଼ିଆ, ଆମ୍ବ, କଦଳୀ, କମଳା ଲେମ୍ବୁ ବଗିଚା। ଗାଈ ମଇଁଷି ଗୋଠ। 'ଗୋଟେ ଖଣ୍ଡ ରାଜ୍ୟର ସମ୍ମାନୀୟ ବ୍ୟକ୍ତିରୁ, ଅଥଚ ପରର ଗୋଲାମି ପାଇଁ ଯିବୁ ? ପରପାଖରେ ମଥାନତ କରିଠିଆ ହେବୁ ? ଏହା ନିଶ୍ଚିତ ତୋ ପୂର୍ବପୁରୁଷ ମାନଙ୍କ ପାଇଁ ଲଜ୍ୟାକର କଥା।

କୃଷ୍ଣ ପ୍ରସାଦ ଗୋଟିଏ କଥା ହିଁ ଦୋହରାଇଛନ୍ତି—"ବାପା ! ମୋ ଦେହରେ ଅମାପବଳ, ମୁଣ୍ଡରେ ବୁଦ୍ଧି। ମୋ ଜୀବନକୁ ମହାନ୍ ବା ମହତ୍ତର କରିବାରେ ଏ ଚାକିରି ଏକ ସୁଯୋଗ। ମୁଁ ଗୋଟିଏ ପୁଅ ହୋଇ ବାହାରକୁ ଚାଲିଯିବା ଦ୍ୱାରା ସବୁ ସେବାରୁ ବଞ୍ଚିତ ହେବ, ଏଥିପାଇଁ ଦୁଃଖିତ।"

ବାପା ଶେଷ କଥା ଜଣାଇଦେଲେ, "ଏହା ଦ୍ୱାରା ଜୀବନରେ ଖାଲି ଦୁଃଖ ହିଁ ପାଇବୁ ବୋଲି ମୋ ମନ କହୁଛି। କେବେ ଏ ସଂପତ୍ତି ଭୋଗ କରି ପାରିବୁନି। ପ୍ରମାଣ କରାଇଦେ', ଚାକିରି କରି କିପରି ଆମ ପରିବାରର ଟେକ ରଖିବ !"

କୃଷ୍ଣ ପ୍ରସାଦ ପଢ଼ିକରି ଠିଆ ହୋଇଛନ୍ତି ଗୋଟେ ପୃଥିବୀକୁ । ସାମ୍ନାରେ ଗୋଟେ ଭିନ୍ନ ପୃଥିବୀ । ପଛରେ ହାଓଶାଳପରି କୋଠା, ବଡ଼ଦାଣ୍ଡପରି ଗାଁ ଦାଣ୍ଡ, କଳକଳ ନାଦରେ ବହି ଯାଉଥିବା ନଦୀ । ନାଟକେନ୍ଦ୍ର ପରି ନୀଳ ଜଳରେ ଭର୍ତ୍ତି ପୋଖରୀ । ରଙ୍ଗୀନ ମାଛ ତା' ଭିତରେ । ଶହ ଶହ ଏକର ଧାନଜମି । ଗାଁର ଜାନଜାତରା ପିନ୍ଧନ ସ୍ମୃତି । ଏ ପୃଥିବୀ ତ ଏକେଇରେ ସୀମିତ ନୁହଁ । ନିଜ ସଂକଳ୍ପ ବ୍ୟତୀତ କିଛି ସାଙ୍ଗରେ ନେବାକୁ ଦ୍ରବ୍ୟାଦ ନାହିଁ ଏବେ । ସ୍ୱକୀୟର ମୋହ, ନିଜକୁ ପ୍ରତିଷ୍ଠିତ କରାଇବାର ନେଇ, ଓ ବିଶ୍ୱାସରେ ଘାଣ୍ଟି ହେଉଛୁ ଏ ମଣିଷ ।

ତା ପରବର୍ତ୍ତୀ ସମସ୍ତ ବିବାହର ସମସ୍ତ । ଏ ସଂପର୍କିତ ସମସ୍ୟାର ସମାଧାନ ପାଇଁ ବାପା' ମା' ଙ୍କଠୁ କୃଷ୍ଣ ସଖା ସହୋଦରଙ୍କ ଅନୁରୋଧ, ଚାହିଦ ନୁହ ଛଳଛଳ ଆଖି, ଜେଜେମା'ର ଆତ୍ମହତ୍ୟା କରିବାର ଧମକକୁ ଦେଖାଇ କରି ବହୁବର୍ଷପରେ ଭୂମିକମ୍ପ ପରି ଅକସ୍ମାତ୍ ଦିନେ ଚିଠିଟିଏ ଲେଖିଛନ୍ତି କୃଷ୍ଣ ପ୍ରସାଦ,—ସେ ବିବାହ କରିବେ । ଅଶ୍ଚର୍ଯ୍ୟ ଓ ଅବିଶ୍ୱାସର ଏକ ବଡ଼ କୋଠା ଭିତରୁ ନିର୍ଗତ ହୋଇ ସମସ୍ତ ଗ୍ରାମବାସୀଙ୍କ ଶରୀର ସ୍ପର୍ଶକରି ବିଲୀନହେଲା ଗ୍ରାମ ସୀମାନ୍ତରେ । ସୂଚନା ଅଣିଲା କୃଷ୍ଣ ପ୍ରସାଦଙ୍କଠୁ ସେ ନିକଟବର୍ତ୍ତୀ ଏକ ଗ୍ରାମରେ ବିବାହ କରିବେ । ଅବେଗରେ ପ୍ରତୀକ୍ଷା କଲେ ଗ୍ରାମବାସୀ ବନ୍ଧୁ ପରିଜନ । କିଏ ସେହି ଭାଗ୍ୟବତୀ ନାରୀ ? କୃଷ୍ଣ ପ୍ରସାଦଙ୍କ ନିଷ୍ଠୁର ମନ ଆପଣେଇ ପାରିଥିବା ଯୁବତୀ କିଏ ? ସେ ନିଜ ମସ୍ତିଷ୍କରେ ବିବାହ ପରି ଏକ ସମସ୍ୟାକୁ ଏତେ ବର୍ଷ ଧାରଣ କରିବା ପରେ ଏବଂ ଏହାର ସମାଧାନର ସୂତ୍ର ନିଜେ ଖୋଜିବା ଭିତରେ, ପ୍ରେମ ପ୍ରେମର ଚିନ୍ତା ବାଣହେବା କଥା । କିଏ କିଏ ଗୁପ୍ତରେ ଫୁଟ ଫାଟ ହେଲେ ତାଙ୍କ ପରିବାରର ଅଲକ୍ଷ୍ୟରେ । ସ୍ୱୀକାର ଯେ ଏଥିପାଇଁ ଦାୟୀ ଏହା ମଧ୍ୟ ସର୍ବସମ୍ମତି କ୍ରମେ ସ୍ଥିର ହେଲା ।

ଏବଂ ଏପରି ଏକ ଘୋଷଣାନାମାର ବହୁଦିନ ପର୍ଯ୍ୟନ୍ତ ନିଜ ଲୋକସହ ଗ୍ରାମର ନିର୍ବାହ ଜନତାଙ୍କୁ ସନ୍ତୁଳିତ ଅବସ୍ଥାରେ ଗ୍ରୁଢ଼ ପ୍ରକଷ୍ଟ ନାଟକୀୟ ଭଙ୍ଗୀରେ ସର୍ବସମ୍ମୁଖରେ ଦିନେ ନିଜ ନିଷ୍ପତ୍ତି ବ୍ୟାଖ୍ୟାକଲେ—ଅରୁନ୍ଧତୀ ତାଙ୍କ ଅର୍ଦ୍ଧାଙ୍ଗିନୀ ହେବ । ଏଥିରେ ଆତ୍ମୀୟ ସ୍ୱଜନ ଯେତେହେଲେ ତଟସ୍ଥ ହେଲେ, ତତୋଧିକ ଆଶ୍ୱସ୍ତ ହେଲେ ଯେ' ତାଙ୍କ ପିତାପ୍ରପିତାମହ ଯେପରି ଜୀବନ କାଳ ଭିତରେ, ପ୍ରତ୍ୟେକେ ଐଶ୍ୱରିକ ଶକ୍ତିର ଅଧୀଶ୍ୱର ପରି କିଛି କିଛି ଅଲୌକିକ କାର୍ଯ୍ୟ ପ୍ରଦର୍ଶନ କରି ଦେଶବାସୀଙ୍କୁ ଚମତ୍କୃତ କରାଇଦେଉ-ଥିଲେ, ସେପରି ସେ ଅରୁନ୍ଧତୀଙ୍କୁ ବିବାହ କରି ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ସୃଷ୍ଟି କରିଛନ୍ତି ।

ତାଙ୍କ ଜେଜେବାପା ନଦୀ ସେପଟେ ଶିବିର ସ୍ଥାପନ କରି ଗୁଳି ଚାଳନ ବେଳେ ବ୍ରିଟିଶ୍ ସୈନିକମାନଙ୍କୁ ଅତର୍କିତ ଆକ୍ରମଣ କରି ଚକିତ୍‌କୃତ ଯୁଦ୍ଧ କୌଶଳ ପ୍ରଦର୍ଶନ ପୂର୍ବକ ବିଜୟୀ ହେବା ବେଳେ ନିଜ ଅସାବଧାନତାରୁ ଧରାପଡ଼ିଥିଲେ ଏବଂ ଶହୀଦ ହେଲେ । ଅନ୍ୟ ଜଣେ ପୂର୍ବପୁରୁଷ ବିକ୍ରମାଦିତ୍ୟପରି ଅତ୍ୟନ୍ତ ଚତୁର, ନ୍ୟାୟବନ୍ତ, ବୀର ଓ ଦୟାଳୁ ଥିଲେ । ବହୁ କଳହସହ ଗ୍ରାମ୍ୟ ବିବାଦର ସମାଧାନ କରାଇ ପରିବାରର ନାଁ ରଖିଥିଲେ । ତାଙ୍କର ଅନ୍ୟ ଜେଜେ ଥିଲେ ମହାତାନ୍ତ୍ରିକ । ସେ ସୁବର୍ଣ୍ଣ ଶିବଲିଙ୍ଗ ଓ କାଳୀମୂର୍ତ୍ତି ପ୍ରାପ୍ତ ହୋଇଥିଲେ ଏବଂ ସେ ଜୀବିତ ଥିବା ପର୍ଯ୍ୟନ୍ତ ସେ ଅଞ୍ଚଳରେ ହଇଜା, ମହାମାରୀ, ବସନ୍ତ ରୋଗର ପ୍ରାଦୁର୍ଭାବ କମ ଥିଲା । ଥରେ ବଢ଼ନ୍ତା ନଈ ଗାଁର ସୁରକ୍ଷାରେ ବିପଦ ସୃଷ୍ଟି କଲାବେଳେ ଗାଁ ତରଫରୁ ଗୁଡ଼ହାଣ୍ଡି, ପାଟପଥା, ସୁନାଟଙ୍କା, ଗୁହଳ ବିସର୍ଜନରେ ବି ନଈ ତୃପ୍ତ ନ ହେବାରୁ ସେ ଉତ୍କ୍ଷିପ୍ତ ହୋଇ ସାମାନ୍ୟ ମାତ୍ର ଧୂଳିରେ ବଢ଼ନ୍ତା ନଈର ଗର୍ବ ଖର୍ବିଥିଲେ । ଗାଁରେ ପ୍ରତିବର୍ଷ ଅଗ୍ନିର ଉତ୍ପାତକୁ ମଧ୍ୟ ସେ ସାମାନ୍ୟ କୁଟାଖିଅଟିଏ ଫୋପାଡ଼ି ଆୟତ୍ତ କରାଇ ପାରୁଥିଲେ । ନିଜ ସନ୍ତାନଙ୍କୁ ବହୁ ଗୁଣିତ ବ୍ୟକ୍ତିଗତ ସମ୍ପତ୍ତିକୁ ମଧ୍ୟ ଆଖି ବୁଜିଆ ଭାବେ ବଢ଼ାଇ ପାରିଥିଲେ । ତାଙ୍କ ବାପାଙ୍କର ବି ଏପରି ଉଦ୍ଦେଶ୍ୟ ଥିଲା ଯେ କୃଷ୍ଣ ପ୍ରସାଦ ତନ୍ତ୍ରଶିକ୍ଷାକରି ଜନସେବା ସହ ଅଲୌକିକ କାର୍ଯ୍ୟ ସଂପାଦନା କରି ପରିବାରର ଟେକ ରଖିବେ । ଦେଶ ସ୍ୱାଧୀନ ପାଇବା ପରେ ମନ୍ତ୍ରୀ, ବ୍ୟବସାୟୀ, କଳାବଜାରୀ, ଶିଳ୍ପପତି, ମୁନାଫାଖୋର ଗୋଷ୍ଠୀ ବ୍ୟତୀତ, ଅନ୍ୟ କୌଣସି ପରିବାର ମଣିଷଲାଗି ନିଜ କରାମତି ଓ ବୁଦ୍ଧି ବିଦ୍ୟା ବା ଐଶ୍ୱରିକ ଶକ୍ତିର ପ୍ରଦର୍ଶନର ପ୍ରୟୋଜନ ନଥିବା ବେଳେ କୃଷ୍ଣ ପ୍ରସାଦ ଗୋଟେ ଅସମ୍ଭବ କାଳ ମୋଟି ଏବଂ ବହୁଝିଅ ଜନ୍ମିତ ଯନ୍ତ୍ରଣାରେ ଜର୍ଜରିତ ଦରିଦ୍ର ପିତାର ଦୁଃଖ ଲାଘବ କରି ନିନ୍ଦିତ ଗୋଟେ ଆଦର୍ଶ ଦେଖାଇଛନ୍ତି ବୋଲି ଗ୍ରାମବାସୀମାନେ ମତ ଦେଲାବେଳେ, ତାଙ୍କ ବାପା ଗୁଙ୍କରି କରିବା ଠାରୁ ଏହା ତାଙ୍କ ପରିବାର ପ୍ରତି ଅଃଭରି ଅପମାନ ବୋଲି କହୁଥିଲେ ।

ଦାମୀ ଯୌତୁକ, ବହୁ ଉପଢୌକନ, ସ୍ଥାବର ଅସ୍ଥାବର ସଂପତ୍ତି ତଥା ସନ୍ତାନର ବୋଝ ବୋହିଁଇ ହେବାପରି ବହୁ ପରିବାର ଆତୁରତାରେ ତାଙ୍କ ସମ୍ମତି ତଥା ନିଜ ନିଜ ଝିଅର ଭାଗ୍ୟକୁ ପ୍ରତୀକ୍ଷା କରିଥିଲେବି କୃଷ୍ଣ ପ୍ରସାଦ ସମସ୍ତଙ୍କ ଆଶା ଆକାଂକ୍ଷାକୁ ମୂଳପୋଛ କଲେ । ବାପାଙ୍କର ମାନସିକ ଅବସ୍ଥା ଓ ବିସ୍ଥାନପ୍ରତି ସେ ପଛେଇ ଠିଆ ହେବା ସ୍ପଷ୍ଟ ହେଲା ।

ବିନା ଆଡ଼ମ୍ବର, ଯୌତୁକ, ଉପଢୌକନ ଓ ଭେଟିରେ ତାଙ୍କ ବିବାହ ସଂପନ୍ନ ହେଲା । ଏହା ଏକ ବହୁ ଚର୍ଚ୍ଚିତ ଘଟଣା ହେଲା ସେ ଅଞ୍ଚଳରେ ।

ଅରୁନ୍ଧତୀଙ୍କ ପିତା ମହାତାନ୍ତ୍ରିକ ଏବଂ ତାଙ୍କ ଅବଶିଷ୍ଟ ସମସ୍ତ ବିବାହ ଯୋଗ୍ୟା ଝିଅମାନଙ୍କ ସହ କୃଷ୍ଣ ପ୍ରସାଦଙ୍କ ଯୌନ ସଂପର୍କ ଥିବାର ଅତି ଦ୍ରୁତଗତିରେ ପ୍ରଚାରିତ ହେଲା ।

ଏହା ପରଠାରୁ ଗାଁ ଦାଣ୍ଡ ମାଡ଼ିବା ତାଙ୍କ ଜୀବନରେ ଆଉ କେବେ ଘଟି ନାହିଁ । ବାପା' ମା'ଙ୍କ ଅକାଳ ମୃତ୍ୟୁରେବି ଶୃଙ୍ଖଳିକ ସ୍ତ୍ରୀରେ ଉପସ୍ଥିତ ସଂପର୍କରେ ଏକ ନିର୍ଦ୍ଦେଶନାମା ବାପାଙ୍କ ଠାରୁ ରେଜିଷ୍ଟ୍ରି ଡାକରେ ବିବାହ ପରେ ପରେହିଁ ପାଇ ସାରିଥିଲେ । ନିଜ ସ୍ଥାବର ଅସ୍ଥାବର ସଂପତ୍ତି, ବନ୍ଧୁ ପରିଜନ, ଓ ସମାଜ କଲ୍ୟାଣ ପାଇଁ ଦାନଦେଇ ମୃତ୍ୟୁବେଳକୁ ସମସ୍ତ ବନ୍ଧନରୁ ମୁକ୍ତଥିଲେ ବି ସୁବର୍ଣ୍ଣ ଶିବଲିଙ୍ଗ ଓ କାଳୀମୂର୍ତ୍ତିଙ୍କୁ ନିଜଘରେ ପୂଜା କରିବା ଅକ୍ଷମତା ପ୍ରକାଶ କରି ଗ୍ରାମ ମନ୍ଦିରରେ ଦେଲା ବେଳେ ବି ତାଗିଦ୍ କରିଥିଲେ,—ଭବିଷ୍ୟତରେ ଯଦି କେବେ କୃଷ୍ଣ ପ୍ରସାଦର ସଦ୍‌ବୁଦ୍ଧି ଉଦ୍ରେକ ହୁଏ, ଏ ମୂର୍ତ୍ତି ଦୁଇଟି ତା ହାତରେ ଅର୍ପଣ କରାଯିବ ।

ଚାକିରି ଜାଲରେ ରୁଦ୍ଧହୋଇ ଘୂରିଛନ୍ତି ସହରରୁ ସହର । ସାଥିରେ ଅରୁନ୍ଧତୀ । ସ୍ୱାମୀଙ୍କ ସେବା, ଇଚ୍ଛା, ଯତ୍ନ ପାଇଁ ନିଜ ଜୀବନର ବଳମସ୍ତରେ ବାଜି ରଖିଛନ୍ତି । ଗୋଟିଏ ପୁତ୍ର ସନ୍ତାନ ପ୍ରସବ ପରେ ସ୍ୱାମୀଙ୍କ ଇଚ୍ଛାରେ ପରିବାର ସୀମିତ ରଖିବା ନିଷ୍ପତ୍ତିରେ ସେ କୁଣ୍ଠାବୋଧ କରିନାହାନ୍ତି ।

ବହୁ ବର୍ଷପରେ କୃଷ୍ଣପ୍ରସାଦ ଥରେ ପଶ୍ଚାଦ୍‌ବଲୋକନ କରିଛନ୍ତି । ନିଜଦମ୍ଭ, ଆତ୍ମାଭିମାନ, ଆତ୍ମବିଶ୍ୱାସ, କ୍ରମଶଃ ସମୟକ୍ରମରେ ଦୁର୍ବଳ ହୋଇ ପଡ଼ିଛି । ସମସ୍ତ ପ୍ରଚେଷ୍ଟାରେ ବି ସେ ଉପରିସ୍ଥ କର୍ମକର୍ତ୍ତା, ସଂପର୍କିତ ମନ୍ତ୍ରୀ, ବା ରାଜନୈତିକ ନେତାମାନଙ୍କୁ ସନ୍ତୁଷ୍ଟ କରାଇ ପାରିନାହାନ୍ତି । ନିଜ କର୍ମଦକ୍ଷତା, ନିଷ୍ଠା, ସମୟାନୁବର୍ତ୍ତିତା, ସଚ୍ଚୋଟତା ବହୁ ସମୟରେ ବିପଦ ହିଁ ସୃଷ୍ଟି କରିଛି । ଥରେ ଦୁଇଥର ଚାକିରିରୁ ସସ୍‌ପେଣ୍ଡ ବି ହୋଇଛନ୍ତି । ଦରଦାମ ବୃଦ୍ଧି ବେଳେ ନିଜ ପୈତୃକ ସଂପତ୍ତିର ଅସ୍ୱଚ୍ଛ ବଟେଇ ଯୋଗୁଁ ଉତ୍କଟ ଆର୍ଥିକ ସଂକଟ ଘଟିଛି । କାର୍ଯ୍ୟ କ୍ଷେତ୍ରରେ ଅଲୌକିକ ଘଟଣା ଘଟାଇ ନିଜପ୍ରତିଷ୍ଠା ପାଇଁ ମୃଗତୃଷ୍ଣା ପରିଣାଟିବା ସାର ହୋଇଛି ।

ନିଜର ଅଭାବବୋଧ, ଅସହାୟତା, ନିଜକୁ ପ୍ରତିଷ୍ଠା କରାଇବାର ଅକ୍ଷମତା, ସର୍ବୋପରି ଦାରିଦ୍ର୍ୟ ତାଙ୍କୁ ବିଷମ ମାନସିକ ଦୁଃସ୍ଥିତି ଭିତରେ ଯୋଇଦେଇଛି । ପ୍ରତିମୁହୂର୍ତ୍ତରେ ଜୀବନସହ ସାମ୍ନା ହେବାବେଳେ ଗୋଟେ ଅଜାଣତ ଭୟ ଓ ଉଦ୍‌ବିଗ୍ନତା ଆକ୍ରମଣ କରୁଛି । ନା ଜୀବନକୁ ସେ' ଠିକ ରୂପେ ସାମ୍ନା କରିପାରୁଛନ୍ତି ନା ସେଠୁ ଫେରିବାର ସୁଯୋଗ ବା ସାହସ ଅଛି ? ଅହେତୁକ ଚିନ୍ତା ମନରେ ବାନ୍ଧିହୋଇ ଯାଉଛି । ଅରୁନ୍ଧତୀଙ୍କୁ

ଏକଥାଟା ସୂଚେଇ ଦେବାପାଇଁ ଯାଉଛନ୍ତି ଯେ' ଏ ଦେଶରେ ବର୍ତ୍ତମାନ ସାଧୁ ସନ୍ଥଙ୍କର ପ୍ରାଦୁର୍ଭାବ ବେଶି । ଜୀବନର ଏ ବିଷମ ସମସ୍ୟାର ମୁକ୍ତିପାଇଁ ସାଧୁ ହୋଇଯିବା ଭଲ । ପରମୁହୂର୍ତ୍ତରେ ଅନ୍ୟ ଏକ ପନ୍ଥା ସଂପର୍କରେ ମନନା କରୁଛୁ । ସେ ତନ୍ତ୍ର ଶିଖିବେ । ବାପା ନିଶ୍ଚିତରେ ବୁଦ୍ଧିମାନ, ଜ୍ଞାନୀ ତଥା ତ୍ରିକାଳଦର୍ଶୀ ଥିଲେ । ସୁବର୍ଣ୍ଣ ଶିବଲିଙ୍ଗ ଓ କାଳୀମୂର୍ତ୍ତି ତାଙ୍କ ହାତରେ ସମର୍ପି ଦେବାର ନକଲଟିଏ ତାଙ୍କ ପାଖରେ ରହିଛି । ତନ୍ତ୍ର ସଂପର୍କିତ ତାଳପତ୍ର ପୋଥି ଗାଁରୁ ନେଇଆସିବା ସ୍ଥିର କରନ୍ତି । ତା'ର କରାମତରେ ସେ ପୃଥିବୀର ସବୁଲୋକଙ୍କୁ ବଶ କରାଇ ପାରିବେ । ନିଜକୁ ଗୋଟେ କର୍ତ୍ତବ୍ୟକର୍ମୀ, ବୋଲି ପ୍ରମାଣିତ କରିବା ସହ ବଂଶର ଟେକରଖି ପାରିବେ ।

କିନ୍ତୁ ସେପରି କିଛି ହୋଇ ପାରିନାହିଁ ।

ହାଇସ୍କୁଲ ପରୀକ୍ଷାରେ ସଦ୍ୟ ପାସକରିଥିବା ପୁଅ ନିଜ କଥାରେ ଅଟଳ ଅଛି । ସେ ଏକ ଦୂରବର୍ତ୍ତୀ ସହରର ମହାବିଦ୍ୟାଳୟରେ ଅଧ୍ୟୟନ ପାଇଁ ଯିବ । ଅରୁନ୍ଧତୀ ବହୁବାର ଏ କଥାଟି ବୁଝେଇଛନ୍ତି - ଏଠିକାର ମହାବିଦ୍ୟାଳୟ ବି ନିମ୍ନମାନର ନୁହେଁ । ଏଠୁ ବି ବହୁ ପିଲା ପ୍ରତିଯୋଗିତାରେ ସର୍ବଭାରତୀୟ ସ୍ତରରେ ନାଁ କମାଇଛନ୍ତି । ପୁଅ ଚାଲିଯିବା ପରେ ଆମେ ନିଶ୍ଚିତ ଅସହାୟ ବୋଧ କରିବୁ । ତୋ ଖାଇବା, ରହିବା, ଦେହ ପା' ଚିନ୍ତାର ବିଷୟ ହେବ । ଏତେ ଅର୍ଥ ଯୋଗାଡ଼ କରିବା ବାବାଙ୍କ ପାଇଁ ସମସ୍ୟା ।

ପୁଅ ନିଜ କଥାରେ ଅଟଳ ।

ବ୍ୟାପାରଟି ଅତ୍ୟନ୍ତ ଜଟିଳ ହୋଇ ପଡ଼ିଛି । ପୁଅ ଘରକୁ ଧ୍ୱଂସ କରିଦେବାର ଧମକ ଦେଇଛି । କୃଷ୍ଣପ୍ରସାଦ ଅରୁନ୍ଧତୀଙ୍କୁ ଏକାନ୍ତରେ ବୁଝେଇଲେ— ଆମ ପରିବାରର ସମସ୍ତ ସଦସ୍ୟ କିଛି ନା କିଛି ଅଲୌକିକ ପ୍ରତିଭା ପ୍ରଦର୍ଶନ କରିଛନ୍ତି । ସମ୍ଭବତଃ ନିଜ ପ୍ରତିଭା ଏ ରାଜ୍ୟରେ ବିକଶିତ ହୋଇନପାରେ, ଏଠିକାର ଶିକ୍ଷାନୀତି, ଅନୁଷ୍ଠାନ ବା ଶିକ୍ଷକ ମାନଙ୍କର ମନୋବୃତ୍ତି ଭଲ ନୁହେଁ । ପୁଅକୁ ସ୍ୱାଧୀନ କରାଇବା ଉଚିତ । ଭବିଷ୍ୟତରେ ପୁଅ ନିଶ୍ଚିତ ବଂଶର ନାଁ ରଖିବ ।

ସାମ୍ନାର ଏକ ଭୟଙ୍କର ଦୁର୍ଘଟଣା ଘଟିଯିବାର ସମ୍ଭାବନାରେ କୃଷ୍ଣପ୍ରସାଦ ଆତଙ୍କିତ ହୋଇ ପଡ଼ିଛନ୍ତି । ଧାର କରଜରେ ପୁଅ ଉଚ୍ଚ ଶିକ୍ଷାପାଇଁ ଏକ ଦୂରସ୍ଥ ସହରକୁ ଯାତ୍ରା କରିଛି । ଏକ ବିଶ୍ୱାସର ବନ୍ଧନରେ ସେ ଜୀବନଭରି ସନ୍ତୁଳ ହୋଇଛନ୍ତି । ପୃଥିବୀରେ ଅହରହ ସଂଘର୍ଷ ହୁଏ, ଜୟ ବା ପରାଜୟ ପାଇଁ ସମୟ ବା ପରିସ୍ଥିତିର ଚିନ୍ତା ନଥାଏ । କିନ୍ତୁ ପରାଜୟର

ଲମ୍ବା ଘଣ୍ଟାରେ ଅରଟିଏ ବି ଜମ୍ବୁର ଶୁଭଶଂଖ ବାଜିବ ଏବଂ ତାହା ଏପରି ଚମତ୍କୃତ ଏବଂ ଓଜନଦାର ହେବ, ଯାହା ଲିପିବଦ୍ଧ ହୋଇ ରହିବ ପୃଥିବୀ ଇତିହାସରେ ।

ଦିନ କେତେବେଳେ ସେ ଦେବାଳୟ ପଶ୍ଚିମ ଦ୍ୱାରରେ ଠିଆ ହେଲେ । ଅର୍ଥ ତା କର୍ମମନ୍ଦିର ସବୁ ଦ୍ୱାର ଖୋଲିଦେଲ । ସେ ଯେପରି ସହଜ ଭାବେ ଜୀବନ ବଢାଇବାର କଳ୍ପନା କରିଥିଲେ ସଂପ୍ରତି ତାହା ମହାବଳ ବାଘପରି ଆକ୍ରମଣ କରୁଛି । କୃଷ୍ଣ ପ୍ରସାଦଙ୍କ ଦମ୍ଭ ବା ସାହସ ନାହିଁ ତା'ର ସାମ୍ନା କରିବାକୁ ।

ଅକସ୍ମାତ୍ ଏକ ସାମାନ୍ୟ ଦୁର୍ଘଟଣାରେ ଅସୁସ୍ଥ ହୋଇ ପଡ଼ିଛନ୍ତି । ତାହା କ୍ରମଶଃ ପକ୍ଷାଘାତ ରୋଗକୁ ଗତି କରିଛି । ଡାହାଣ ଅଙ୍ଗଟା ଅଚଳ ହୋଇ ପଡ଼ିଛି । ବହୁ ଡାକ୍ତର ପରାମର୍ଶ କଲେ ବି ଅର୍ଥର ଅଭାବ ଯୋଗୁଁ ଆଶାନୁରୂପ ଉନ୍ନତି ଦେଖାଯାଉନାହିଁ । ସେ ଶୋଇଛନ୍ତି ଶେଜରେ ମାସମାସ । କ୍ରମଶଃ ମାନସିକ ବିକୃତି ପରିଲକ୍ଷିତ ହୋଇଛି । ସମଗ୍ର ସମସ୍ତ ସଂଜ୍ଞାହୀନ ଭାବେ କଟାଇବାରେ ପସନ୍ଦ କରୁଛନ୍ତି ।

ସମୟେ ସମୟେ ମନଭିତରେ ପ୍ରବଳ ଉତ୍ତେଜନା ମାଡ଼ିଆସେ । କପାଳ ବେକ ମୁଣ୍ଡାରେ ଝାଳ ଜକେଇ ଆସେ । ଡୋଳା ବଡ଼ ବଡ଼ ଆକାରରେ ଆଖି-ପତା ଠେଲି ଉପରକୁ ଚାଲି ଆସିବା ପରି ଦେଖାଯାଏ । ମୁହଁରୁ ଅସ୍ପଷ୍ଟ ଭାଷା ନିର୍ଗତ ହୁଏ । ଦୁର୍ବଳ ଗ୍ଳପରେ ପବନରୁଦ୍ଧ ଆସେ । ସମସ୍ତ ଚେଷ୍ଟା ବ୍ୟର୍ଥ ହୁଏ । ଶରୀର ଶଯ୍ୟାଠାରୁ ଉପରକୁ ଉଠିଯାଏ । ସାମାନ୍ୟ ପ୍ରକୃତିସ୍ଥ ହେଲେ ସେ କହନ୍ତି, ସଂପ୍ରତି ସେ ଏକ ସ୍ୱପ୍ନ ଦେଖିଛନ୍ତି ଯେ ବାପା ଅଭୟ ମୁଦ୍ରାରେ ଠିଆ ହୋଇଛନ୍ତି ଏବଂ ତାଙ୍କ ଗ୍ରୁସ୍ତାଇନ ତଳେ ନିରାପଦରେ ନିଜ ଆସ୍ଥାନ ଠିକ୍ କରିବାରେ ସେ ପ୍ରବଳ ପ୍ରଚେଷ୍ଟା ଚାଲୁ ରଖିଛନ୍ତି । କିନ୍ତୁ ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଉଛି—"କୃଷ୍ଣ ପ୍ରସାଦ ! ତୁ ଆମ ବଂଶର ସନ୍ତାନ ନୁହଁ । ତୋର ଏଠି ସ୍ଥାନ ନାହିଁ ।"

ପୁଅର ବହୁ ଧମକ ପୂର୍ଣ୍ଣଚିଠି ଟଙ୍କା ପଠାଇବା ପାଇଁ । ସ୍ୱାମୀଙ୍କର ଏପରି ଅବସ୍ଥା । କାର୍ଯ୍ୟାଳୟରୁ ସେପରି ସାହାଯ୍ୟ ବା ସହାନୁଭୂତି ମିଳନାହିଁ । ପ୍ରାତଃରେ ଅରୁନ୍ଧତୀ ଜୀବନ ସହ ସାଲିସ କରିନପାରିବା କ୍ଷୋଭରେ ମିୟମାଣ ହୋଇ ଦ୍ୱାରରେ ଠିଆହୋଇ ଆଖି ଘୂରାଉଥିଲେ ସହର ରାସ୍ତାରେ । ହଠାତ୍ କାହା ସଂସ୍କୃତ ଶ୍ଳୋକ ଆବୃତ୍ତିରେ ସ୍ୱପ୍ନାବସ୍ଥାରୁ ପ୍ରକୃତିସ୍ଥ ହୋଇ ଦେଖିଛନ୍ତି—ସାମ୍ନାରେ ଏକ ଯୁବକ । ଗେରୁଆ ବସ୍ତ୍ରରେ ଶରୀର ଆଚ୍ଛାଦିତ । ଗୋରାତକ ତକ ଦେହ । ମୁହଁରେ ଗ୍ରେଟ ଗ୍ରେଟ ଦାଢ଼ୀ ଓ ସ୍ଥିରଦୃଷ୍ଟି । ଯୁବକ ହଠାତ୍

ପ୍ରଣିପାତ ପୂର୍ବକ ଅନୁରୋଧ କରିଛନ୍ତି—"ମା ! ଆପଣଙ୍କର ସେବାପାଇଁ ମୋର ଏ ଆଗମନ ।"

ଆର୍ଦ୍ର କଣ୍ଠରେ ଅରୁନ୍ଧତୀ ଉତ୍ତର ଦେଇଛନ୍ତି—"ମୋର କି ସେବା କରିବେ ପୁତ୍ର ! ଭିତରକୁ ଆସନ୍ତୁ ।"

ବସୁବସୁ ପ୍ରବକ କହିଲେ—"ମା ! ଆପଣଙ୍କ ମୁଖମଣ୍ଡଳ ଦର୍ଶନ କରି ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଛି ଯେ ଆପଣ ବର୍ତ୍ତମାନ ଯେଉଁ ମାନସିକ ଅସ୍ଥିରତାରେ ଅଛନ୍ତି ତା'ର ସମାଧାନ ଅତ୍ୟନ୍ତ କଷ୍ଟକର ବ୍ୟାପାର । ମୁଁ ଏକ ସୂଚନା ଦେଉଛି ଏସଂପର୍କରେ । ପୂର୍ବଜନ୍ମରେ ଆପଣ ନଦୀକୂଳେ ଭ୍ରମଣରେ ରତ ଥିବାବେଳେ ଏକ ଦୁର୍ଦ୍ଦାନ୍ତ ଷଣ୍ଢ ଆପଣଙ୍କୁ ଆକ୍ରମଣ କରିବା ଉଦ୍ଦେଶ୍ୟରେ ନିଜକୁ ପ୍ରସ୍ତୁତ କରୁଥିଲା । ଆପଣଙ୍କ ସ୍ୱାମୀ ସେତେବେଳେ ଆପଣଙ୍କର ଏପରି ସଂକଟ ଜନକ ପରିସ୍ଥିତି ଦେଖି ଏକ କାଷ୍ଠରେ ଷଣ୍ଢର ପିଠିରେ ଆଘାତ କଲେ ତା' ଫଳରେ ଷଣ୍ଢର ମେରୁଦଣ୍ଡ ଭାଙ୍ଗିଗଲା । ଏବଂ ଆପଣ ରକ୍ଷାପାଇଥିଲେ ବି ଷଣ୍ଢର ଅଭିଶାପ ଯୋଗୁ ଆପଣଙ୍କ ସ୍ୱାମୀ ଏ ଜନ୍ମରେ ପକ୍ଷାଘାତ ରୋଗରେ ସଢ଼ୁଛନ୍ତି । ଆପଣ ସେତେବେଳେ ଅବିବାହିତା ଥିଲେ ବି ସାମାଜିକ ଚଳଣିରୁ ଆପଣ ଦୁହିଁଙ୍କ ବିବାହ ହୋଇ ପାରିନଥିଲା । କିନ୍ତୁ ପରସ୍ପର ଆସନ୍ତା ଜନ୍ମରେ ବିବାହ କରିବା ଇଚ୍ଛା ପ୍ରକାଶ କରିଥିଲେ । ଏହା ବ୍ୟତୀତ ଆପଣଙ୍କ ପୁଅ ମଧ୍ୟ ଦୂରରେ ଅବସ୍ଥାନ କରୁଛନ୍ତି । ତାଙ୍କ ପ୍ରତି ମଧ୍ୟ ବିପଦର ସୂଚନା ମିଳେ ।

ଅରୁନ୍ଧତୀ କାତର କଣ୍ଠରେ ମିନତି କଲେ—"ଏହାର ନିରାକରଣର ଉପାୟ କହନ୍ତୁ ନାହିଁ । ମୋ ଯୋଗୁଁ ଗୋଟିଏ ଉଜ୍ଜଳ ପରିବାର ଧ୍ୱଂସ ହୋଇଛି ।"

"ମା ! ଏହା ବିଧି ନିର୍ଦ୍ଦିଷ୍ଟ । ଏଠୁ ମୁକ୍ତି ପାଇବା ଉପାୟ ଅତ୍ୟନ୍ତ କଷ୍ଟକର ।"

"ମୋ ଜୀବନ ଦେବାପାଇଁ ମୁଁ ପ୍ରସ୍ତୁତ ବାପା !"

"ଆପଣଙ୍କ ପୂର୍ବ ପୁରୁଷମାନଙ୍କ ଦ୍ୱାରା ପୂଜିତ ସୁବର୍ଣ୍ଣ ଶିବଲିଙ୍ଗ ଓ କାଳୀ-ମୂର୍ତ୍ତି ଗ୍ରାମର ଏକ ମନ୍ଦିରରେ ଅପୂଜା ଅବସ୍ଥାରେ ଅଛନ୍ତି । ଆପଣ ତାହା ଏଠିକୁ ଆଣିବେ । ଏଠି ପୂଜାକର୍ମ ଆରମ୍ଭ କରିବା ! ଶିବ ପୂଜା ଦ୍ୱାରା ଅଭିଶାପରୁ ମୁକ୍ତ ହେବେ । କାଳୀ ପୂଜା ଦ୍ୱାରା ସାଂପ୍ରତିକ ସଂକଟଜନିତ ପରିସ୍ଥିତିରୁ ମୁକ୍ତି ପାଇବେ । ଏହା ଦ୍ୱାରା ଐଶୀରିକ ଶକ୍ତି ପ୍ରାପ୍ତ ହେବାର ସମ୍ଭାବନା ଅଛି । ଏହା କୃଷ୍ଣପ୍ରସାଦ ନ ଜାଣିବା ଭଲ । ମୁଁ ଏହି କୋଠରୀରେ ଆପଣ ଫେରିବା ଯାଏଁ ପ୍ରତୀକ୍ଷା କରିଛି । ବର୍ତ୍ତମାନ ଆପଣ ଯାତ୍ରା କରନ୍ତୁ ।"

ରୁକ୍ମଣୀ ହାତରେ ସ୍ୱାମୀଙ୍କ ଦାୟିତ୍ୱ ନ୍ୟସ୍ତକରି ଅରୁନ୍ଧତୀ ସେତେବେଳେ ଗ୍ରାମାଭିମୁଖେ ଯାତ୍ରାକଲେ ।

ସଂଧ୍ୟା ପୂର୍ବରୁ ଫେରିବାରେ ତାଙ୍କର ବିଳମ୍ବ ଘଟିନାହିଁ । ତରବରରେ ସହରେ ପୂଜା ସାମଗ୍ରି ଯୋଗାଡ଼ କରିଛନ୍ତି । ଏଥିପାଇଁ ତାଙ୍କୁ ଏକମାତ୍ର ସମ୍ବଳ ବେକର ସୁନାଚେନ୍‌ଟି ବିକ୍ରି କରିବାକୁ ପଡ଼ିଛି ।

ମଧ୍ୟ ରାତ୍ରିରେ ଅକସ୍ମାତ୍ କୃଷ୍ଣପ୍ରସାଦ ଚେଇଁଛନ୍ତି । ଅରୁନ୍ଧତୀଙ୍କୁ ନିକଟକୁ ଡ଼ାକି କହିଛନ୍ତି—"ଏପରି ଅର୍ଥ ସଂକଟରେ ମୋ ରୋଗ ଭଲ ହେବାର ସମ୍ଭବନା ନାହିଁ । ମୋର ଶେଷ କଥାଟି ରଖିବ ? ଆସନ୍ତା କାଲି ଗାଁକୁ ଯାଇ ମୋ ପରିବାରର ଶେଷସମ୍ବଳ ସୁବର୍ଣ୍ଣ ଲିଙ୍ଗ ଏବଂ କାଳୀ ମୂର୍ତ୍ତିଟି ଆଣିବ । ଗୋଟିଏ ବିକ୍ରି କଲେ ଆମେ ପ୍ରଚୁର ଅର୍ଥ ପାଇବା ।"

ଅରୁନ୍ଧତୀ ଚମକିଲା ପରି କହିଛନ୍ତି—"ତମ ରୋଗ ଭଲ ହେବ ଏଥିପାଇଁ ତଥିଁ ଦେବତା ବିକ୍ରି କରିବା ଦରକାର ନାହିଁ ।"

କୃଷ୍ଣ ପ୍ରସାଦ କହିଲେ—"ମୃତ୍ୟୁ ମୋର ନିକଟତମରେ ପହଞ୍ଚି ଗଲାଣି ଓ ଏହା ମୁଁ ଜାଣେ ।"

ଅରୁନ୍ଧତୀ ସବୁ ତମାମ ବିକ୍ରି କରି ଅର୍ଥ ଯୋଗାଡ କରିବା ଏବଂ ପୂଜାକରି ଆଶିଷ ମାଗିବା, ଏପରି ମାନସିକ ଦ୍ୱନ୍ଦ୍ୱରେ ଅତିଷ୍ଠ ହୋଇ ପଡ଼ିଛନ୍ତି । ସୂର୍ଯ୍ୟୋଦୟ ପୂର୍ବରୁ ନିତ୍ୟକର୍ମ ସାରି ବୈଠକରୁମ ଖୋଲି ଆସିଛନ୍ତି ପୂଜାର ବ୍ୟବସ୍ଥା ପାଇଁ । ମୁଖ୍ୟ ଦ୍ୱାର ଉନ୍ମୁକ୍ତ ଅଛି । ଚିଠିଟିଏ ଥୁଆ ହୋଇଛି ଟେବୁଲ ଉପରେ—"ଅଲୌକିକ କାର୍ଯ୍ୟ ପ୍ରଦର୍ଶନରେ ଆମ ବଂଶ ପରଂପରାର ଏକ ଉଜ୍ଜ୍ୱଳ ଇତିହାସ ଅଛି । ସଂପ୍ରତି ଏ ସୁବର୍ଣ୍ଣ ଅକ୍ତିଆର କରିବାରେ ମୁଁ ସକ୍ଷମ ହେଲି ଏହା ନିଶ୍ଚିତରେ ବିଧିନିର୍ଦ୍ଦିଷ୍ଟ । ବାବାଙ୍କର ଦେହାନ୍ତ ହେବା ପୂର୍ବରୁ ମୁଁ ନିଶ୍ଚିତ ଦୂରେଇ ଯିବ । ମୁଁ ଯେପରି ଜୀବନରେ ଗଢକରୁଛି ମୋର ପ୍ରଚୁର ଅର୍ଥ ଆବଶ୍ୟକ । ମୋ ଫେରନ୍ତା ପଥକୁ ପ୍ରତୀକ୍ଷା ନକଲେ ଭଲ । ବାବାଙ୍କର ଆରୋଗ୍ୟ ପାଇଁ ମନ୍ଦିରରେ ପୂଜା ଅର୍ଚ୍ଚନା କରିବା ଉଚିତ ।"

କୃଷ୍ଣ ପ୍ରସାଦ ଡାକୁଛନ୍ତି—"ଅରୁନ୍ଧତୀ ! ଅରୁନ୍ଧତୀ !"

□ ଗୁରୁଦ୍ୱାର ଭବନ
ଗିରିରୋଡ଼, ବ୍ରହ୍ମପୁର-୫

ଗଳ୍ପ :

# ବିଭୀଷଣ

ଜ୍ଞାନରଞ୍ଜନ ନାୟକ

ଏଇ ଯେମିତି ଗ୍ରେଟ ଛୁଆଟା ଗୋଡ଼ କଚାଡ଼ି ପିଟି ହେଲେ ମା' ଭାବେ ତାକୁ କଷ୍ଟ ଲାଗୁଛି । ସେ ତାକୁ କୋଳକୁ ଉଠାଇ ନିଏ । ଆଉଁସି ଦେଇ ଟିକେ ଖେଳ କରେ ବା କ୍ଷୀର ପିଆଏ । ସେମିତି ଏଇ ଧରିଯାଉ ସେ ଶିଶୁଟି ବଡ଼ ହୋଇଗଲା । ମନେ କରିଯାଉ ସେ ବାଳକଟିଏ ହେଲା କିମ୍ବା ତା'ଠୁ ଟିକେ ଅଧିକା ବଡ଼ ହୋଇଗଲା । ସେତେବେଳେ ତା ମନରେ ଦୁଃଖ ଆସିଲେ ସେ ତା ସାଙ୍ଗ ପାଖରେ ଯାଇ ଫୁସ୍ ଫୁସ୍ ହୋଇ କହି କହି କରି କେତେ କଥା କହିପକାଇବ । ତାପରେ କିଛି ସମୟ ଗଡ଼ିଗଲେ ଦୁଇ ବନ୍ଧୁଙ୍କ ଥଟ୍ଟା-ମଜ୍ଜାରେ ସେ ଦୁଃଖ କୁଆଡ଼େ ମନରୁ ଖସିଯିବ । ଧରନ୍ତୁ ସେ ବାଳକଟା ପୁଣି ବଡ଼ ହୋଇଗଲା । ସେ ବାହା ହେଲା । ତେଣୁ ତାର ସେମିତି ଦୁଃଖ ସମୟ ଆସିଲେ, ସେ କ'ଣ କରିବ ନା ତା ସ୍ତ୍ରୀକୁ କହିବ । କି ତା ସ୍ତ୍ରୀ ମନରେ କିଛି ଊଣା ହୋଇଗଲେ ସେ ତା ସ୍ୱାମୀକୁ କହିବ । ତାପରେ ପରସ୍ପର ବୁଝାବୁଝି ହେବେ, ବା କେଉଁ ଜିନିଷଟା କି ହାର ଊଣା ଅଛି ଭରଣା କରିବେ । ତାଙ୍କ ଦୁଃଖ କି ସେଇଠି ଶେଷ । ତେବେ ଯଦିଓ ସବୁ ଦିନ ପାଇଁ ନୁହେଁ, କିଛି ଦିନ ପାଇଁ ତ !

ମଣିଷମାନଙ୍କର ମନରେ ସ୍ଥିରସାମ୍ୟ ରଖି ଚଳିବା ପାଇଁ ପ୍ରକୃତିର ଏହା ଗୋଟେ ବିଚିତ୍ର ନିୟମ ।

ମାତ୍ର ମୁଁ ଏଠି ଯାହା କଥା କହୁଛି, ସେ କିନ୍ତୁ ଭିନ୍ନରକମର ଥିଲା । ଶିଶୁ ହୋଇ ମା' କୋଳରେ କାନ୍ଦିବାର ସମୟ ସେତେବେଳକୁ ନଥିଲା କି ବାଳକ ହୋଇ ସାଙ୍ଗଙ୍କୁ ଦୁଃଖ ଜଣେଇବାର ବୟସ ବି ନଥିଲା । ପୁଣି ବାହା ହୋଇ ସ୍ତ୍ରୀକୁ ଦୁଃଖ ଜଣେଇବା ସମସ୍ତ ଯୋଗ୍ୟତା ମଧ୍ୟ ହାସଲ କରି ନଥିଲା । ମୋଟ ଉପରେ ସେ ଥିଲା ମଝି ଦରିଆର ଯାତ୍ରୀ । ଏ କୂଳ ଛାଡ଼ିଥିଲା କିନ୍ତୁ ସେ କୂଳରେ ପହଞ୍ଚି ନଥିଲା । ଏମିତି ଅବସ୍ଥାରେ ତା ନିଜ ଦୁଃଖ ସେ ନିଜେ ଶୁଣିଥିଲା ଆଉ ବୁଝି ଥିଲା ବି ।

ସେ ପଢୁଥିଲା ବି. ଏ. ଶ୍ରେଣୀରେ । ବାପା-ମା'ଙ୍କର ମଝିଆଁ ପୁଅଥିଲା । ତା ମା'ଙ୍କ କୋଳରେ ବି ଆହୁରି ଯୋଡ଼ିଏ ସନ୍ତାନ ଥିଲେ । ସେମାନେ

ଥିଲେ ତାର ବଡ଼ଭାଇ ଆଉ ସାନ ଭଉଣୀ । ସେମାନଙ୍କ ଭାଗ୍ୟ କିନ୍ତୁ ଏଇ ହତଭାଗ୍ୟ ମଝିଆଁ ଠାରୁ ଉନ୍ନତ ଥିଲା । ବଡ଼ପୁଅ ଥିଲା ମା'ର ଗେହ୍ଲା; ଆଉ ସାନଝିଅ ଥିଲା ବାପର ଗେହ୍ଲା । ଅଥଚ ଏହି ହତଭାଗାଟାକୁ ସ୍ନେହ କରିବାକୁ ଭଣ୍ଡାର ଥିଲା ଫାଙ୍କା !

ପିଲାଟା କୁଆଡ଼େ ଛୋଟ ବେଳେ ଭାରି ଦୁଷ୍ଟ ଥିଲା । ସେ କଳଙ୍କକୁ ହଜାଇବାର ଚେଷ୍ଟା କରିବ ଆଜି ଯାଏ ଲିଭେଇ ପାରିନି । ଛୋଟ ସମୟରେ ସେଇ ବଦନାମ ପାଇଁ ଗାଳି ଯେ ଶୁଣୁଥିଲା ତାହା ନୁହେଁ ମାଡ଼ ବି ସହୁଥିଲା । ବାପା ଖୁବ୍ ପିଟନ୍ତି । ବୋଉଙ୍କ ପାଟିକୁ ଯାହା ଆସେ ସେ ଗାଳି କରନ୍ତି । ବଡ଼ଭାଇ ବା ବାଦ୍ ଯା'ନ୍ତେ କୁଆଡ଼େ ? ଆଉ ସାନଭଉଣୀ ଯିଏ ତା' ଠାରୁ ବେଳେ ବେଳେ ଅପମାନିତ ହୁଏ, ସିଏ ବା ଏଭଳି ସୁଯୋଗକୁ ହାତ ଛଡ଼ା କରିବ କାହିଁକି ? ସତେ ଯେମିତି ସଭିଙ୍କ ଛେପ ପକାଇବା ପାଇଁ ମଝିଆଁ-ମାନେ ଗୋଟାଏ ଲେଖା ଅଳିଆ ଗଦା ।

ସମୟ ଥିଲା ଯେତେବେଳେ ବୋଉ କହୁଥିଲା, ଗାଳି ଦେଉ ପଛେ ମାଡ଼ ବେଳେ ତ ଅଟକ କରୁଥିଲା ; ରାଗିଥିଲେ ବୁଝେଇ-ସୁଝେଇ ଖୁଆଉ ଥିଲା । ସେ କିନ୍ତୁ ଆଜି ଆରପାରିରେ । ଏବେ ଯଦି କେବେ ସେମିତି ସମୟ ଆସେ, କେହି ଯଦି ଜଣେ ଖାଇବାକୁ ଡାକେ, ଅନ୍ୟ ଜଣେ ଚଢ଼ାଗଲା ତା'ର ଉତ୍ତର ଦିଏ,—"ଡାକ୍‌ନା ତାକୁ ନଖାଉ । ଏତେ ଖୋସାମତ୍ କ'ଣ ପାଇଁ ? ଆଉ ବେଶୀ ଡାକିଲେ ତା ଫୁଟାଣି ବଢ଼ିଯିବ ।"

ଏଇ ତିନି ବର୍ଷ ତଳେ ସେ ଯେତେବେଳେ ମାଟ୍ରିକ୍ ପାସ୍ କରିଥିଲା, ସେତେବେଳେ ବଡ଼ଭାଇ କୌଣସି ଏକ ସହରର ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପକ ଥିଲେ । ବାହା ବି ହୋଇ ସାରିଥିଲେ । ପାଖରେ ଭାଉଜ ଥିଲେ । ଭାଉଜ ବି ସେଇ ସହରର କୌଣସି ଏକ ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ମାତ୍ର ସେ ସହରର ଝିଅ ସେ ନଥିଲେ । ସେ ଥିଲେ ଗାଁର ଝିଅ । ଆଉ ସେଇଠୁ ହିଁ ସେ ପ୍ରଥମେ ଚାକିରି ଜୀବନ ଆରମ୍ଭ କରିଥିଲେ ଏକ ସହକାରୀ ଶିକ୍ଷୟିତ୍ରୀ ଭାବେ । ବିବାହ ପରେ ଏଠାକୁ ଆସିଥିଲେ ଆଉ ନୂଆକରି ଗଢ଼ି ଉଠିଥିବା ବାଳିକା ଉଚ୍ଚ ବିଦ୍ୟାଳୟର ପ୍ରଧାନ-ଶିକ୍ଷୟିତ୍ରୀ ପଦଟାକୁ ଚଟାପଟ ମାଡ଼ି ବସିଥିଲେ ଭାଇଙ୍କ ସହାୟତାରେ ।

ଲିଭିଂ-ସାର୍ଟିଫିକେଟ ଆଣି ସାରିଲା ପରେ ବାପା ତାକୁ ଉପଦେଶ ଦେଇଥିଲେ,—"ଭଲ ନମ୍ବର ତ ଅଛି । ତୁ ତୋ ଭାଇ ପାଖକୁ ଚାଲିଯା । ତା'ର କଲେଜରେ ପଢ଼ିବୁ । ସୁବିଧା ହେବ । ଦି' ଜଣ ତ ରୋଜଗାର କରୁଛନ୍ତି । ଖର୍ଚ୍ଚ ତ କିଛି ନାହିଁ । ଯାହା ସେ ୬ମାସର ପିଲାଟା ତାପାଇଁ ବା କ'ଣ ଖର୍ଚ୍ଚ ହଉଥିବ ? ଯା, ତୁ ସେଇଠି ଆରାମରେ ପଢ଼ି ପାରିବୁ ।"

ବାପାଙ୍କ ଠାରୁ ଅନୁମତି ଆଶୀର୍ବାଦ ସଂଗ୍ରହକରି ଏକାଠି ମୁଁ ଶୀଘ୍ରରେ ମୁଣ୍ଡେଇ ଧାଇଁ ଥିଲି ସହରକୁ ସାଇ-ସାହବଙ୍କ ପାଖକୁ ପାଠ ପଢ଼ିବା ପାଇଁ । ଯାହା ହେଉ, ଆଇ. ଏ. ଶ୍ରେଣୀଟା ଭଲ ଭାବରେ କଟିଗଲା । ହେଲେ ବି ଏଟା କ'ଣ ହେଲା କେଜାଣି, ସବୁ ଗଡ଼ବଡ଼ ହୋଇଗଲା । ସବୁବେଳେ ଖାଲି ସାଇ-ସାହବ ଦୁଇଜଣଙ୍କର କଟିମିଟି ହିଁ ସାର ହେଲା ।

ସାହବଙ୍କର ତ ଦୁନିଆ ଫରମାସି, "ଆଜି ସ୍କୁଲ ନାହିଁ । କାଲି କୋଇଲ ନାହିଁ । ସଂଧ୍ୟା ବେଳକୁ ପଢ଼ିବା ନାହିଁ ଇତ୍ୟାଦି ।" ଦୁନିଆ କାମ । ସେଥିରେ ପୁଣି ପାଠପଢ଼ା ଭିତରେ କେତେବେଳେ ପୁଅ କାନ୍ଦିଲଣି ଧର । ନାଇଁତ ତାଙ୍କ ମୁଣ୍ଡ ବଥାଉଛି ଆଜି ଔଷଧ କିଣିଦିଅ । କେତେବେଳେ କୋଉଁ କାରଣରୁ ରାଗ ହେଲଣିତ ସବୁ ଦୋଷ ହିଁ ଏଇ ହତଭାଗାଟା ଉପରେ । ସାହବଙ୍କ ଫରମାସି ପୂରଣ ନହେଲେ କୌଣସି ଆଳରେ ବି ହେବିଲି ସାଇଙ୍କ ଠାରୁ ମାଡ଼ ମିଳିବ । ଏସବୁ ତ କମିବାର ନାହିଁ । ବରଂ ଦିନକୁ ଦିନ ବଢ଼ି ଚାଲିଛି ।

ଏସବୁ କଥା ସେ ବା କାହାକୁ କହିବ । କହିଲେ ବା ଲାଭ କ'ଣ ? ବରଂ କ୍ଷତି, ଏଣେ ପୁଣି ଅସହ୍ୟ କଥାରେ ଅଛି, "କହିଲେ କୁଳ-କୁଟୁମ୍ବକୁ ଲାଜ ନ କହିଲେ କୁଳକ୍ଷୟି ଯାଉଛି ।"

ବେଳେବେଳେ ଭାବେ ଗାଁକୁ ଚିଠି ଦେବ । ସବୁ ବୃତ୍ତାନ୍ତ ବାପାଙ୍କୁ ଅବଗତ କରାଇବ । କିନ୍ତୁ ବାପା କରିବେ ବା କ'ଣ ? କିଛି ଉପଦେଶ ଦେଇ ଚିଠି ଖଣ୍ଡେ ପଠେଇ ଦେବେ । ଫଳାଫଳ ଭୟଙ୍କର ହୋଇଯିବ । ସାଇ-ସାହବଙ୍କ ଆଗରେ ସେ ସମ୍ମୁଖରେ ବିଦ୍ରୋହୀ ହୋଇଯିବ । ସେଥିରେ କ'ଣ ବା ଲାଭ ? ମନ ବି ବିଦ୍ରୋହ କରେ । ପାଠ ଛାଡ଼ିଦେବା ଇଚ୍ଛାହିଁ ବି ଆସେ ମନକୁ ଚାଲିଆସେ । ପରେ ପୁଣି ଭାବେ ଏ ଘୋଡ଼ା ଦୌଡ଼ ଯୁଗରେ ପାଠ ହିଁ ତ ସର୍ବସ୍ୱ । ତାକୁ ଛାଡ଼ି ସେ କରିବ କ'ଣ ? ବରଂ ଆଉ କିଛି ଦିନ ସେମିତି ଚଳେଇ ନେବା ହିଁ ଭଲ ହବ । ପରେ ଦେଖାଯିବ ଯାହା ।

କିନ୍ତୁ ଭାବୁଥିଲା ଯାହା, ସେଇଆ ହିଁ ଦିନେ ଘଟିଲା । ସେଦିନ ବାପାଙ୍କ ନିକଟରୁ ଗୋଟେ ଚିଠି ଆସି ପହଞ୍ଚିଥିଲା, ବାପା ଲେଖିଥିଲେ, "ସାଇ-ସାହବ ଶାସନ କରିବେନି ତ ଆଉ କରିବ କିଏ ? ତାଙ୍କ କଥାମାନି ଚଳ । ମନଦେଇ ପଢ଼ାପଢ଼ି କର, ତା ହେଲେ ତୁ ଦିନେ ବଡ଼ ମଣିଷ ହେବୁ । ଦୁନିଆ ବାହାବା କହିବ । ତାହେଲେ ତୋର ମାନ ବଢ଼ିବ ଆଉ ମୋର ବି......।" ବାସ୍ ଆଉ ପଢ଼ି ପାରିଲାନି । ଗୋଟାଏ ସୂକ୍ଷ୍ମ ବିଦ୍ୟୁତ ତରଙ୍ଗ ଦେହରେ ଖେଳିଗଲା । ଦୁନିଆରେ ବଡ଼ ମଣିଷ ହେବାକୁ ହେଲେ ଏମିତି ପ୍ରତିଦିନ ତାକୁ ସାଇ-ସାହବର କେତେ ନନସେନସ ଆଦେଶ ପାଳିବାକୁ ହବ ? ଦରକାର ନାହିଁ ସେମିତି ବଡ଼ ମଣିଷ ପଣିଆ ।

ଯେଉଁ ଘର ଭାଇର ରକ୍ତର ସଂପର୍କ ଭିତରେ ଟିକିଏ ମମତା ନାହିଁ, ଯେଉଁଠି କେଉଁଜଣଙ୍କର ବ୍ୟକ୍ତିଗତ ସ୍ୱାର୍ଥପାଇଁ ଅନ୍ୟ ଏକ ବ୍ୟକ୍ତି ନିର୍ଯାତିତ ହୁଏ, ସେଭଳି ପରିବାରରେ ବଡ଼ମାନଙ୍କୁ ସମ୍ମାନ ଦେଇ ବଡ଼ ମଣିଷ ହେବା ଗୋଟାଏ ସ୍ୱପ୍ନ ମାତ୍ର ।

ଏକ କ୍ଷୀଣ ଉତ୍ତେଜନାରେ କେଇ ବାପ୍ପ, ଚରମ ଅଶ୍ରାବ୍ୟ ଗାଳି ଦେଇ ଆସି ଚଟି ଉପରେ ଚନ୍ଦ୍ରପଣ୍ଡାଙ୍କ ମାରିଥିଲେ ।

ସହସା ଘର ଭିତରୁ କେଉଁ କାମନେଇ ପଶି ଆସିଥିବା ଭାଉଜ ଏ ସବୁକୁ ଅଚରେ ଅବିଷ୍କାର କଲେ । ଲୁହଗୁଡ଼ାକୁ ଲୁଚାଇବାକୁ ଚେଷ୍ଟାକରି ବି ସେ ବିଫଳ ହୋଇଥିଲା । ଜବରଦସ୍ତ ଭାଉଜ ଚଟିଟିକୁ ଛଡ଼େଇ ନେଲେ । ଥରେ ଚଟି ଉପରେ ଆଖି ବୁଲାଇ ଆଣି ପ୍ରଚଣ୍ଡ ରାଗରେ ଘରୁ ଧୂମକେତୁ ଭଳି ଚାଲିଗଲେ । ଯିବାବେଳେ ସେ କହୁଥିବାର ଶୁଣାଯାଉଥିଲା, “ବାପ୍ପାଙ୍କରେ ଏଠି ମନ୍ତ୍ରଣା ଚାଲିଛି । ଆଜି ଆସନ୍ତୁ, ପଚାରିବି । କେତେ ଦିନ ଏମିତି ଅନ୍ନଦେଇ ଗୋଟାଏ ବଣ୍ଠାପଣ ପାଳିବେ ?”

ସେ କିନ୍ତୁ ଆଖିବନ୍ଦ କରି ଭାବୁଥିଲା ଅନ୍ୟକଥା । ସେ ଗୁଡ଼ିକ ସବୁ ବିଗତ ଦିନରେ । ଯେତେବେଳେ ସେ ଥିଲା ଗାଁ ସ୍କୁଲର ନବମ ଶ୍ରେଣୀର ଛାତ୍ର ଆଉ ବର୍ତ୍ତମାନର ଏଇ ଭାଉଜ ସେଠି ଥିଲେ ଜଣେ ସହକାରୀ ଶିକ୍ଷୟିତ୍ରୀ । ବର୍ତ୍ତମାନ ଭଳି ସମ୍ପର୍କ ସେମାନଙ୍କ ମଧ୍ୟରେ ନଥିଲା । ଥିଲା, କେବଳ ଭାଇଙ୍କ ସହିତ ତାଙ୍କର ବିବାହ ପାଇଁ ମାମୁଁଙ୍କ ଗୋଟାଏ ପ୍ରସ୍ତାବ । ବସ୍ ସେତିକି ! ସେଦିନରେ ସେହି ସ୍ନେହ ଆଜି ମଧ୍ୟ ତା ପାଇଁ ଅଭୁଲା ହୋଇ ରହିଛି ।

ସ୍ୱାର୍ଥ ପାଇଁ ମଣିଷ କେତେ ବେଳେ ଦେବତା ପୁଣି କେତେବେଳେ ଦାନବ ।

ଆଜି ସେ ଗଳଗ୍ରହ ହୋଇଛି; କାରଣ ତା'ର ବୟସ ବଢ଼ିଛି । ତାର ଖର୍ଚ୍ଚ ବି ଯଥେଷ୍ଟ ବଢ଼ି ଯାଇଛି । ଆଉ ତାର ସମସ୍ତ ଖର୍ଚ୍ଚ ଯେହେତୁ ସେମାନେ ସବୁ ବହନ କରୁଛନ୍ତି ସେଇଥିଲାଗି ସେ ଗଳଗ୍ରହ ।

ଭାଇଙ୍କର ପାଟି ଆରଘରେ ଶୁଭୁଥିଲା, କିଛି ଠକ୍-ଠାକ ଭଙ୍ଗାରୁଜାର ଶବ୍ଦ ବି । ଭାଉଜଙ୍କର ପରାମର୍ଶକୁ ଭାଇ ବୋଧେ ଏତେ ଶୀଘ୍ର କାର୍ଯ୍ୟକାରୀ କରିପାରୁ ନାହାନ୍ତି । ସେଇଥି ପାଇଁ ପ୍ରଳୟ ଚାଲିଛି ।

ଏଥର ଛିଡ଼ା ହେଲା । ପ୍ରଳୟକୁ ବଢ଼ିବାକୁ ନଦେଇ ସାମନା କରିବାକୁ ଚେଷ୍ଟାକଲା । ଧୀରେ ପାଦ ବଢ଼ାଇଲା । ଘର ଭିତରେ ପଡ଼ିଥିବା ଇତସ୍ତତଃ କାଗଜ ଗୁଡ଼ିକୁ ଦେଖି ପ୍ରଶ୍ନ କଲା,—“ଏସବୁ କ'ଣ ଏମିତି ପଡ଼ିଛି ?”

ଉତ୍ତରରେ ମିଳିଲା ଏକ ବ୍ରହ୍ମାସ୍ତ୍ରଡ଼ା । ଗର୍ଜିଉଠି ଭାଇ କହିଲେ,—"ସବୁ ତୋର ପାଇଁ । ତୁ ଗୋଟାଏ ତାମସା ଆରମ୍ଭ କରିଛୁ । ଏଠି ଭଲ ଲାଗୁନଇ ଗାଁକୁ ଚାଲିଯା । ଅନେକ ଜମି ପଡ଼ିଛି ଚାଷ କରିବୁ..... ।"

ଅସମାପ୍ତ କଥାର ମଝିରେ ହଠାତ୍ ଭାଉଜ ବଜ୍ର କଣ୍ଠରେ ଘୋଷଣା କଲେ "ତାଭଳି ବଦ୍ମାସଣ ଘରୁ ନଯିବା ଯାଏ ମୁଁ ଅନ୍ନ-ଜଳ ସ୍ପର୍ଶ କରିବନି ।"

ଚିଡ଼ି ଉଠି ଭାଇ ଭାଉଜଙ୍କୁ ଚୁପ୍ ହେବାକୁ କହିଲେ । ଭାଉଜ ରାଗରେ ଗରଗର ହୋଇ ଅନ୍ୟ ଘରକୁ ଚାଲିଗଲେ । ଟିକିଏ ଦମ ନେଇ ଭାଇ ପଚାରିଲେ,—"ପଢ଼ାପଢ଼ି କେମିତି ଚାଲିଛି ?"

"ଠିକ୍ ଚାଲିଛି" ସେ କହିଲା— ।

ତାପରେ ନୀରବ । ବେଶ୍ କିଛି ସମୟ ନୀରବରେ କଟିଗଲା ପରେ ଭାଇ ପୁଣି କହିଲେ,—"ଏଠି ଖୁଣ୍ଟଟା ଭଳି କାହିଁକି ଛିଡ଼ା ହେଉଛୁ ? ଯାଉନୁ ପଢ଼ିବୁ ?" ଚୁପ୍‌ଚାପ ପଢ଼ା ଘରକୁ ଏଥର ଫେରିଲା । ପଢ଼ାଘର ଟେବୁଲ ଉପରେ ପଡ଼ିଥିବା ପୁରୁଣା ବହିଟାର ପୃଷ୍ଠା ଓଲଟାଉ ଓଲଟାଉ ହଠାତ୍ ହାତ ଅଟକି ଗଲା । ବହୁଦାନର ଗୋଟାଏ ପୁରୁଣା ଫଟୋ ରହିଥିଲା ସେଥିରେ । ସେଥିରେ ଥିଲା ଭାଇ ତାକୁ କାଖେଇ ଧରିଥିବାର ଏକ ଯୁଗଳ ଦୃଶ୍ୟ । ଆଉ ଥରେ ଭଲ କରି ଚାହିଁଲା । ଟପ୍ ଟପ୍ କେଇ ବୁନ୍ଦା ଲୁହ ଫଟୋ ଉପରେ ପଡ଼ି ନଷ୍ଟ ହୋଇଗଲା । ଆଖିମଳି ଆଉ ଥରେ ଚାହିଁଲା ବେଳକୁ ଫଟୋ ଉପରେ ପଡ଼ିଥିବା ସେହି ଲୁହ ବିନ୍ଦୁ ଗୁଡ଼ିକରେ ସେ କେବଳ ନିଜର ଅସ୍ପଷ୍ଟ ପ୍ରତିବିମ୍ବ ହିଁ ଦେଖିଥିଲା ।

☐ ଶକ୍ତିନଗର, ଘର ନଂ - ୫୬
ରାଉରକେଲା-୧୪

ହିନ୍ଦୀ
କାହାଣୀ

# ନେତାର ସ୍ଥାନ

## ପାଂଡେୟ ବେଚନ ଶର୍ମା 'ଉଗ୍ର'

ଶୈଶବରୁ ଆରମ୍ଭ କରି ଗ୍ରାଜୁଏଟ ହେବାଯାକେ ଅର୍ଥାତ୍ ଆଠବର୍ଷର ଅଜ୍ଞାନ ଅବସ୍ଥାରୁ ତେଇଶି ବର୍ଷର ଅପରିପକ୍ୱ ଅବସ୍ଥା ପର୍ଯ୍ୟନ୍ତ ସେ ଦୁଇଜଣ ଯାକ ପରସ୍ପରର ଘନିଷ୍ଠ ବନ୍ଧୁ ଥିଲେ । ଦୁହେଁ ଅତ୍ୟନ୍ତ ତେଜସ୍ୱୀ ଏବଂ ଦେଶର ଉଜ୍ଜ୍ୱଳ ତାରକା ଥିଲେ । ଦୁହିଁଙ୍କର ଦେଶ ଗୋଟିଏ, ପ୍ରଦେଶ ଗୋଟିଏ । ଦୁହେଁ ଗୋଟିଏ ନଗର, ଗୋଟିଏ ସାଇରେ ରହୁଥିଲେ । ଦୁହିଁଙ୍କର 'ଆଶ୍ରମ' ଏକ ଏବଂ ଧର୍ମ ବି ଏକ ।

ଦୁହେଁ ଅତ୍ୟାଚାରର ପୀଡ଼ିତ ଦେଶର ସନ୍ତାନ । ଉଭୟେ ଏପରି ରାଜାଙ୍କ ଛତ୍ରଛାୟା ତଳେ ବାସ କରୁଥିଲେ, ଯାହାର ଅଙ୍ଗୁଳି ନିର୍ଦ୍ଦେଶରେ ଦେଶର ଅମଲା ଅଧିକାରୀମାନେ ଅଶାନ୍ତିରେ କାଳ କଟାଉ ଥିଲେ । ସେ ଏପରି ରାଜା, ଯିଏ ମଣିଷ ହେଲେବି ମଣିଷ ବିରୁଦ୍ଧରେ ହିଂସା, ଦ୍ୱେଷ ପ୍ରଚାର କରୁଥିଲେ । ମଣିଷ ହୋଇ ମଣିଷକୁ ଗ୍ରାସ କରିବା ପାଇଁ ସେ ରାଜା ପ୍ରସ୍ତୁତ ରହୁଥିଲେ । ଦୁହିଁଙ୍କର ଜନନୀ ଜନ୍ମଭୂମି ପରାଧୀନ ଥିଲା । ଦୁହିଁଙ୍କର ନାମ ମୁଁ କହିବି ନାହିଁ । ଦୁହିଁଙ୍କର ଦେଶର ନାମ ମଧ୍ୟ ବର୍ତ୍ତମାନ ପାଇଁ ଗୋପନ ରହିଥାଉ ।

ଦୁହେଁ ଥିଲେ ମାନବଧର୍ମୀ । ସେମାନଙ୍କ ହୃଦୟରେ ମନୁଷ୍ୟତା ପାଇଁ ଅଶେଷ ପ୍ରେମ ଭରି ରହିଥିଲା, ଜୀବନ ସଂଗ୍ରାମରେ ବିଜୟଲାଭ ପାଇଁ ଉତ୍ସାହ ଥିଲା । ଈଶ୍ୱରଙ୍କ ସୃଷ୍ଟିର ଦୁଃଖ-ଶୋକ ଜର୍ଜରିତ ସମସ୍ତ ଜୀବମାନଙ୍କ ପାଇଁ ହୃଦୟରେ ଦୟା ଥିଲା ଏବଂ ପ୍ରତିକୂଳ ଅବସ୍ଥା ସହିତ ସଂଗ୍ରାମ କରିବା ପାଇଁ ମନପ୍ରାଣରେ ଶକ୍ତି ଥିଲା ।

ସ୍ୱଦେଶର ଉପକାର ତଥା ଉଦ୍ଧାର ପାଇଁ ଦୁହେଁ ସବୁବେଳେ ଚିନ୍ତା କରୁଥିଲେ । ଦେଶପ୍ରେମରେ ଦୁହେଁ ପାଗଳ ଥିଲେ ।

"ପଢ଼ାପଢ଼ିତ ଶେଷ ହେଲା । ଏଣିକି ଭବିଷ୍ୟତ ଜୀବନର ପ୍ରସ୍ତୁତି । ତେବେ କେଉଁ ଲକ୍ଷ୍ୟ ଆଉ ଉଦ୍ଦେଶ୍ୟ ନେଇ ଆଗେଇବା ?" ଦିନେ ତାଙ୍କ ଭିତରୁ ଜଣେ ଅନ୍ୟକୁ ପଚାରିଲା ।

"ଆମେ ଚାକିରି କରିବା ନାହିଁ ।" ଅନ୍ୟ ଜଣକ କହିଲା ।

"କିନ୍ତୁ ସବୁଠାରୁ ପ୍ରଧାନ ଆବଶ୍ୟକ କଥା ହେଲା ଯେ, ଆମେ ଆଦୌ ବିବାହ କରିବା ନାହିଁ।" ପ୍ରଥମ ବନ୍ଧୁ କହିଲା।

"ସେ ତ ଠିକ୍ କଥା। ଆମେ ବିବାହ କରିବା ନାହିଁ, ଚାକିରି କରିବା ନାହିଁ, ଏହା ସ୍ଥିର ହେଲା। ତା' ପରେ......?"

"ମନୁଷ୍ୟ, ରାଷ୍ଟ୍ର, ସମାଜ ଏବଂ ପ୍ରାଣୀମାନଙ୍କର କଲ୍ୟାଣ କାମନା ଓ ପ୍ରଯତ୍ନ ହିଁ ଆମର ବ୍ରତ ହେବ।" ପ୍ରଥମ ବନ୍ଧୁ କହିଲା।

"ହଁ, ମନୁଷ୍ୟ, ରାଷ୍ଟ୍ର, ସମାଜ ଓ ପ୍ରାଣୀମାନଙ୍କର କଲ୍ୟାଣ କାମନା ଓ ପ୍ରଯତ୍ନ ହିଁ ଆମର ବ୍ରତ ହେବ।" ଅନ୍ୟ ଜଣକ ସମର୍ଥନ କଲା।

"ଆମେ ସତ୍ୟ, ନ୍ୟାୟ ଏବଂ ପ୍ରେମର ପ୍ରଚାରକ ହେବା। ଅସତ୍ୟ, ଅନ୍ୟାୟ ଏବଂ ଦ୍ୱେଷର ବିରୋଧ କରିବା।"

"ଆମେ ମଣିଷ ମାତ୍ରକେ ସମସ୍ତଙ୍କୁ ସାହସ ଦେଇ କହିବା — "ଭାଇମାନେ, କାହାକୁ ଡରୁଛ? ତୁମର ରାଜା କିଏ? କିଏ ତୁମକୁ ଶାସନ କରୁଛି? ସ୍ୱର୍ଗର ଦେବତା ହେଲେବି ତୁମମାନଙ୍କୁ ଅପମାନିତ କରିବାର ଅଧିକାର ସେମାନଙ୍କର ନାହିଁ। ତେବେ ଭୟ କଣ? ନିର୍ଭୟ ହୁଅ। ଆଖି ଖୋଲ......।" ଦ୍ୱିତୀୟ ବନ୍ଧୁ କହିଲା।

"ଆଉ ସାରା ଦେଶ ହିଁ ହେବ ଆମର ପରିବାର। ଆମର ନିବାସ ସ୍ଥାନ ହେବ ଏଇ ଭୂମଣ୍ଡଳ। ଆତ୍ମ-ବିଜ୍ଞାପନର ପ୍ରଚାର କରି ଆମେ ନୀରବରେ ନିଜର ନିର୍ଦ୍ଧାରିତ ଲକ୍ଷ୍ୟ ପଥରେ ଆଗେଇ ଯିବା — ।" ପ୍ରଥମ ବନ୍ଧୁ କହିଲା।

କିଛି ସମୟ ଚିନ୍ତା କରିବା ପରେ ଦ୍ୱିତୀୟ ଜଣକ କହିଲା — "କିନ୍ତୁ ଭାଇ, ଏଇଠି ମୋର ମତଭେଦ ହେଉଛି। ମୁଁ ଜୀବନରେ ଅନ୍ତତଃ ଥରେ ପାଇଁ 'ନେତା' ହେବାପାଇଁ ଚାହେଁ — ।"

ପ୍ରଥମ ଜଣକ କହିଲା — "ଚାହୁଁଛ ଯଦି ତେବେ 'ନେତା' ହେବାରେ କିଛି ଅସୁବିଧା ନାହିଁ। କିନ୍ତୁ ସେବା ମାର୍ଗରେ ରହି କାମନା ଓ କାମିନୀକୁ ଗ୍ରହଣ କରି ନେବାର ଅର୍ଥ ମଦ ପିଇ ଦେବାଳୟ ଭିତରେ ପ୍ରବେଶ କଲାଭଳି ହେବ। 'ନେତା' ଅପେକ୍ଷା 'ସେବକ'ର ସ୍ଥାନ ତ କୌଣସି ଗୁଣରେ କମ୍ ନୁହେଁ।"

"କିନ୍ତୁ ଇଚ୍ଛା କଲେ ସମସ୍ତେ ତ ଆଉ 'ନେତା' ପାଲଟିଯିବେ ନାହିଁ। 'ନେତା' କହିବା ପାଇଁ ସୁଯୋଗ, ଭାଗ୍ୟ ଏବଂ ବୁଦ୍ଧିର ଆବଶ୍ୟକତା ପଡ଼ିଥାଏ।" ଦ୍ୱିତୀୟ ବନ୍ଧୁ ଉତ୍ତର ଦେଲା।

ପ୍ରଥମ ଜଣକ କହିଲା — "ଠିକ ସେଇଭଳି ସମସ୍ତେ ଗୁହିଁଲେ ବି 'ସେବକ' ହୋଇପାରିବେ ନାହିଁ । ଏହି ସଂସାରରେ କିଛିନା କିଛି ହେବାପାଇଁ ଅଳ୍ପ ବହୁତ ସୁଯୋଗ, ଭାଗ୍ୟ ଏବଂ ବୁଦ୍ଧିର ଆବଶ୍ୟକତା ପଡ଼ିଥାଏ । ଲୋକମାନେ ନିଜର 'ନେତା'ଙ୍କୁ ନିଜେ ଯଦି ନିର୍ବାଚିତ କରିପାରେ, ତେବେ ତାହାଠାରୁ ବଳି ଆଉ କିଛି ନାହିଁ । କିନ୍ତୁ 'ନେତା' ହେବାପାଇଁ ନିଜେ ଉଦ୍ୟମ କରିବା କିମ୍ବା ରୂପକ ସୃଷ୍ଟି କରିବା ଆଦୌ ଉଚିତ ନୁହେଁ । 'ନେତା' ମନୁଷ୍ୟର ଉପଦେଷ୍ଟା ହୋଇଥାଏ । ସେ ଈଶ୍ୱରଙ୍କ ପଦଚିହ୍ନ ଆଉ ଦେବସ୍ଥାନ ଭଳି ପବିତ୍ର ଏବଂ ଧର୍ମଭଳି ଗ୍ରହଣୀୟ । ସମସ୍ତେ 'ନେତା' ହୋଇ ପାରିବେ ନାହିଁ କିମ୍ବା ସେମାନଙ୍କୁ କେହି ତିଆରି କରେନି । ନେତା ହେବା ସହଜ କଥା ନୁହେଁ ।"

ଦ୍ୱିତୀୟ ବନ୍ଧୁ କହିଲା — "ତୁମର ଏଇମତି ମତକୁ ଗ୍ରହଣ କରି ନେଲେ ସଂସାରରେ ଆଉ କେହି ନେତା ତିଆରି କରି ପାରିବେ ନାହିଁ । ଆରେ ଭାଇ, ମନୁଷ୍ୟ, ରାଷ୍ଟ୍ର ଓ ସମାଜର ସେବାକରି ଆମେ ପ୍ରମାଣ କରିଦେବାଯେ. ଆମେ ଅନ୍ୟମାନଙ୍କ ତୁଳନାରେ ବୁଦ୍ଧିମାନ, ଚତୁର ଏବଂ ଦକ୍ଷ । ଆମକୁ 'ଲିଡ଼ର' ରୂପେ ଗ୍ରହଣ କର । ଏଥିରେ ତୁମମାନଙ୍କର ହିଁ ମଙ୍ଗଳ ହେବ ।"

ପ୍ରଥମ ବନ୍ଧୁ କହିଲା — "ଭଲ କଥା । ତେବେ ଆଗେଇ ଯାଇ ଦେଶର ସେବା କର ଏବଂ ବଦଳରେ ଲିଡରପଣିଆ ମାଗିନିଅ । ଭଗବାନ ତୁମର ମଙ୍ଗଳ କରନ୍ତୁ । ମୁଁ ମୋ କାର୍ଯ୍ୟ ନୀରବରେ ହିଁ କରିଯିବି । ତୁମର ଆଉ ମୋର ଲକ୍ଷ୍ୟ ଏକ ହେଲେବି ପଥ ଅଲଗା ଅଲଗା । ତେବେ ସେଥିରେ କିଛି ଯାଏ ଆସେ ନା । ଆମେ ଦୁହେଁ ଯଥା ସମୟରେ 'ନେତା' ଓ 'ସେବକ' ପାଲଟି ଯିବା ପରେ ବି ପରସ୍ପରର ବନ୍ଧୁ, ପ୍ରେମୀ ଓ ଶୁଭାକାଂକ୍ଷୀ ହୋଇ ରହିଥିବା ।"

ସେ ଦେଶରେ ମୁଷ୍ଟିମେୟ ଲୋକ ଅନ୍ୟମାନଙ୍କ ପାପ-ପୁଣ୍ୟ ଧର୍ମ-ଅଧର୍ମ, ସୁଖ-ଦୁଃଖ ଏବଂ ଜୀବନ-ମରଣ ସବୁଥିରେ ନିଜର ପ୍ରଭୁତ୍ୱ ବଜାୟ ରଖିଥିଲେ । ଏଇ ମୁଷ୍ଟିମେୟ ଲୋକେ ବିଦେଶୀ ନହୋଇ ସ୍ୱଦେଶୀ ଥିଲେ । ଅଧିକାର ମିଳିଗଲେ ସ୍ୱଦେଶୀ କିମ୍ବା ବିଦେଶୀ ଉଭୟ ଶ୍ରେଣୀର ନିରଙ୍କୁଶ ଶାସକ ମାନଙ୍କର ରୂପ ପ୍ରାୟ ଏକାଭଳି ହୋଇଯାଏ । ବେଳେବେଳେ ସ୍ୱଦେଶୀ ଶାସକ ବିଦେଶୀମାନଙ୍କ ଠାରୁ ମଧ୍ୟ ସବୁ ଦିଗରେ ବଳିଯାନ୍ତି । ସେ ଦେଶର ଅବସ୍ଥା ଠିକ୍ ଏଇଭଳି ଥିଲା । ସ୍ୱଦେଶୀ ସ୍ୱେଚ୍ଛାଗ୍ଚରରେ ଲୋକେ ଅତିଷ୍ଠ ହୋଇ ପଡ଼ିଥିଲେ । ଦେଶର ପ୍ରଜା କାନକୁହା ପାରିଷଦମାନଙ୍କ ବିଗ୍ଚର-ଧାରାକୁ ବ୍ରହ୍ମବାକ୍ୟ ବୋଲି ମାନି ନେଇଥିଲେ । ଫଳରେ ଅଯଥା ନୂଆ ନୂଆ

କର ଭାରରେ ପ୍ରଜାମାନଙ୍କର ଦୁର୍ଦ୍ଦଶା ବଢ଼ି ଯାଉଥିଲା । କ୍ରମେ କୌଣସି କୌଣସି ସ୍ଥାନରେ ଏହା ବିରୋଧରେ ପ୍ରତିବାଦର ସ୍ୱର ଶୁଣାଗଲା । କିନ୍ତୁ ଶାସକଶ୍ରେଣୀ କହିଲେ—"ପ୍ରଜାଗଣ ବିରୋଧ କରିବାର ଅଧିକାର କେଉଁଠୁ ପାଇଲେ ? ଆମ ଆଗରେ ହାତଯୋଡ଼ି ଠିଆହୋଇ ସେମାନେ ଗୁହାରି ଜଣାଇବା କଥା । ଯିଏ ଆମ କଥା ନ ଶୁଣିବ ତା'ର ମୁଣ୍ଡ ରହିବ ନାହିଁ ।"

ସେମାନେ ଏହା କାର୍ଯ୍ୟରେ ମଧ୍ୟ ଦେଖାଇ ଦେଲେ । ଯେଉଁ ପ୍ରଦେଶ, ନଗର ଏବଂ ବସ୍ତି ଗୁଡ଼ିକରୁ ବିଦ୍ରୋହର ଖବର ମିଳିଲା, ତାହା ସତ ହେଉ କି ମିଛ ହେଉ ସେସବୁ ସ୍ଥାନ ଗୁଡ଼ିକୁ ସଙ୍ଗେ ସଙ୍ଗେ ଧୂଳିରେ ମିଶାଇ ଦିଆଗଲା । ସେସବୁ ସ୍ଥାନ ବିଶେଷର ଆବାଳ-ବୃଦ୍ଧ-ବନିତା, ଅପରାଧୀ, ନିରପରାଧ ସମସ୍ତଙ୍କୁ ମୃତ୍ୟୁମୁଖରେ ପଡ଼ିବାକୁ ହେଲା । ଶାସକ ଏବଂ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପିଲା ଖେଳ ନୁହେଁ । ଏହାହିଁ ସେ ଦେଶର ରାଜନୈତିକ ଅବସ୍ଥା ।

ସରକାରଙ୍କ ଆଶୀର୍ବାଦରୁ ଏଇ ମୁଷ୍ଟିମେୟ ଲୋକେ ରାଷ୍ଟ୍ରର ସମସ୍ତ ସମ୍ପତ୍ତିକୁ ନିଜ ଅକ୍ତିଆରରେ ରଖିଥିଲେ । କୋଟି କୋଟି ଜନସଂଖ୍ୟା ବିଶିଷ୍ଟ ସେ ଦେଶରେ ପ୍ରତି କୋଟିଏରେ ଶହେରୁ କମ୍ ଲୋକ ଦେଶର ଅନନ୍ତ ସମ୍ପତ୍ତିର ଅଧିକାରୀ ଥିଲେ । ବୈଷମ୍ୟତାର ଏହା ଏକ ଚରମ ସୀମା । ଧନୀକ ଶ୍ରେଣୀ ଓ ସେମାନଙ୍କ ଚାଟୁକାରଗଣ ସମାଜରେ ନାନା ଅନର୍ଥ ସୃଷ୍ଟି କରୁଥିଲେ । ସ୍ୱେଚ୍ଛାଚାର ଏବଂ ଅର୍ଥ ଶକ୍ତିରେ ଚାରିଆଡ଼େ ଜୁଲୁମ ହେଉଥିଲା । ଶ୍ରମିକ, କୃଷକ, ଗରିବ ଓ ଅପାଠୁଆ ଶ୍ରେଣୀର ଲୋକେ ଦେହ ମେହେନତ କରି ମୁଦ୍ଧା ପେଟ ପୂରାଇ ଗଣ୍ଡିଏ ଭୋଜନ ପାଉ ନଥିଲେ । ଗରିବ ଲୋକଙ୍କ ସ୍ତ୍ରୀ ଓ ଝିଅମାନେ ଧନୀକ ଶ୍ରେଣୀର ଭୋଗ ଲାଳସାରେ ବଳି ପଡ଼ୁଥିଲେ । ଶାସକ ଶ୍ରେଣୀ ଓ ଧନୀମାନେ ମିଶି ଘରେ ଘରେ ବିଭେଦ ସୃଷ୍ଟି କରୁଥିଲେ । ଅପମାନ ଜର୍ଜରିତା ମହିଳା, ଅତ୍ୟାଚାରିତ ପୁରୁଷ ଓ କ୍ଷୁଧା କାତର ଗରିବମାନଙ୍କ ଦୁଃଖ ଶୁଣିବା ପାଇଁ କେହି ନଥିଲେ...... ସ୍ୱୟଂ ଭଗବାନ ବି ନୁହେଁ ।

ଏ ଥିଲା ସେ ଦେଶର ସାମାଜିକ ଅବସ୍ଥା ।

ମୁଷ୍ଟିମେୟ ଭଣ୍ଡ ଧର୍ମଗୁରୁ, ପଣ୍ଡା ଓ ପୁରୋହିତଗଣ, ଈଶ୍ୱରଙ୍କ ନାମରେ ଯେଉଁମାନେ ସଂସାରକୁ ଠକି ପାରନ୍ତି,—ସେମାନେ ପୁରାଣ, ପ୍ରଥା ଏବଂ ଧର୍ମର ଦୁହାଇ ଦେଇ ଅଦ୍ଭୁତ ବେଶୀ ଉତ୍ପାତ ସୃଷ୍ଟି କରୁଥିଲେ । ନିଜେ ନିଜକୁ ଭଲକରି ଚିହ୍ନି ନଥିଲେ ବି ପ୍ରତ୍ୟେକ ଜଣେ ଜଣେ ଈଶ୍ୱର ଦର୍ଶୀ ବୋଲି ଢ଼ଂଢ଼ିମ ପିଟି ହେଉଥିଲେ । ଈଶ୍ୱରଙ୍କ ନିବାସ ସ୍ଥାନ (ଦେବାଳୟ

ମଠ ଇତ୍ୟାଦି) ଗୁଡ଼ିକ ସେମାନଙ୍କ ବୈରାଗ୍ୟରୁ ବେଶ୍ୟାଳୟ ଏବଂ ହୋଟେ-ଲରେ ପରିଣତ ହୋଇ ଗୃହସ୍ଥଗଣ ଆତଙ୍କିତ ହୋଇ ଯାଉଥିଲେ । ବୈରାଗୀମାନଙ୍କ ବାସନାନୁରାଗ ସଂସାରୀମାନଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଉଥିଲା । ପ୍ରକୃତ ସାଧୁ, ପୁରୋହିତ ଏବଂ ଧର୍ମାଧ୍ୟକ୍ଷ ଦେଶରେ ବିରଳ ଥିଲେ । କିନ୍ତୁ ଚାରିଆଡ଼େ ଧୂର୍ତ୍ତ, କାମୁକ ଦୁଷ୍ଟ ଏବଂ ଆତତାୟୀ ମାନଙ୍କର ତାଣ୍ଡବ ଲୀଳା ଚାଲିଥିଲା । ପୁରୋହିତ ପୂଜାରୀମାନେ ଶାସକଙ୍କର ବଚସ୍କର ଥିବାରୁ ସେମାନେ ସମସ୍ତେ ଧନୀ ଥିଲେ ଏବଂ ରାଜା ଓ ରାଜପ୍ରତିନିଧିଙ୍କୁ ଈଶ୍ୱରଙ୍କ ଅବତାର ବା ଅଂଶବିଶେଷ ବୋଲି ପ୍ରଚାର ଚଳାଇ ପରୋକ୍ଷରେ ରାଜଶକ୍ତିକୁ ସାହାଯ୍ୟ କରୁଥିଲେ । ପୁରାଣ ଏବଂ ପ୍ରଥାର ଦୋହାଇ ଦେଇ ଶାସକ ମଧ୍ୟ ଏମାନଙ୍କୁ ସାହାଯ୍ୟ ଦେଉଥିଲେ । ଧର୍ମର ଆଢ଼ୁଆଳରେ ରହି ଏହି ଧର୍ମାଧ୍ୟକ୍ଷଗଣ କେତେଯେ ଘର ଉଜାଡ଼ି ଦେଉଥିଲେ, କୁମାରୀ କନ୍ୟାଙ୍କର କୁମାରୀତ୍ୱ ନଷ୍ଟ କରୁଥିଲେ; ସତୀ ସ୍ତ୍ରୀ ମାନଙ୍କର ସତୀତ୍ୱ ଅପହରଣ କରୁଥିଲେ ଓ ଗରିବମାନଙ୍କୁ ଧ୍ୱଂସ କରି ଦେଉଥିଲେ, ତାହା ପ୍ରକାଶ କରି ହେବନାହିଁ ।

ଏହା ଥିଲା ସେ ଦେଶର ଧର୍ମୀୟ ବ୍ୟବସ୍ଥା ।

ସେ ଦେଶରେ ଗୌତମ ବୁଦ୍ଧ, ମହାବୀର ତୀର୍ଥଙ୍କର ଏବଂ ମହାତ୍ମା ଗାନ୍ଧୀଙ୍କ ଭଳି ଅହିଂସା ପ୍ରିୟ ମହାପୁରୁଷଗଣ କୌଣସି କାଳରେ ମଧ୍ୟ ଜନ୍ମଲାଭ କରି ଥିଲେ । ତଥାପି ସେଠାରେ ଆନ୍ଦୋଳନ ଶବ୍ଦ ଅହିଂସାତ୍ମକ ନଥିଲା । ଅନ୍ଧାର ଭିତରେ ମିଂଜି ମିଂଜି ଆଲୋକର ପ୍ରକାଶ ଭଳି ଯେଉଁ କେତେଜଣ ନେତା ଥିଲେ, ଦେଶରେ ଉପଦ୍ରବ କମ୍ପା ମେଳହେଲେ, ରାକ୍ଷସ ମାନଙ୍କ ରାକ୍ଷସ ଭାବରେ, ଦାନବମାନଙ୍କୁ ଦାନବୀୟ ଢଙ୍ଗରେ ମୁକାବିଲା କରିବା ପାଇଁ ଜନତାକୁ ଆହ୍ୱାନ ଦେଉଥିଲେ ।

ଅନେକଦିନ ପର୍ଯ୍ୟନ୍ତ ଜନତା ମେଳରେ ରହି ସମ୍ବାଦପତ୍ର ମାନଙ୍କରେ ଉତ୍ତମ ଭାବେ ନିଜର ପ୍ରଚାର ଚଳାଇ ସାରି, ଜେଲ୍ ଓ ନିର୍ବାସନ ଇତ୍ୟାଦି ଦଣ୍ଡ ଭୋଗି ସାରିବା ପରେ ଆମର ପୂର୍ବ କଥିତ ନବ ଯୁବକ 'ନେତା' ନିଜ ଲକ୍ଷ୍ୟ ସାଧନାରେ ସଫଳ କାମ ହୋଇଗଲା । ଯେଉଁଦିନ ଆମର 'ନେତା'ଙ୍କୁ ( ଏଣିକି ଆମେ ସେଇ ଦ୍ୱିତୀୟ ନବ ଯୁବକଙ୍କୁ ଏହି ନାମରେ ଡାକିବା ) ନେତୃତ୍ୱ ମିଳିଗଲା, ସେତେବେଳେ ନେତୃତ୍ୱର ମୂଲ୍ୟ ମଧ୍ୟ କିଛି କମି ଯାଇଥିଲା । କାରଣ ତାଙ୍କର ପୂର୍ବ ସୂରୀଗଣ ନିଜ ତପସ୍ୟା ବଳରେ ଯଶ ଅର୍ଜନ କରିବା ରୀତିଟିକୁ ପରିଷ୍କାର କରି ରଖିଥିଲେ । କିନ୍ତୁ ନୂଆ ନେତାମାନଙ୍କ କଥା ଅଲଗା । ସାମାନ୍ୟତମ ପରୀକ୍ଷାରେ ସଫଳତା କୌଣସି ସମ୍ବାଦପତ୍ରର ନୀତି ନିର୍ଦ୍ଧାରଣ କମିଟୀର ସଞ୍ଚାଳକ ଏବଂ ଉତ୍ତେଜନାପୂର୍ଣ୍ଣ

ଭାଷାରେ "ଭାଇ ଓ ଭଉଣୀମାନେ" ବୋଲି ସମ୍ବୋଧନ କରି ଭାଷଣ ଦେଇ ପାରିଲେ ହିଁ ନେତୃତ୍ୱ ସୁଲଭ ହୋଇ ଯାଉଥିଲା ।

ଅଶିକ୍ଷିତ କିନ୍ତୁ ଶ୍ରଦ୍ଧାଳୁ ଏବଂ ନିରକ୍ଷର ଜନତାଙ୍କ ଭାଗ୍ୟ ନିୟନ୍ତ୍ରଣ କୋଉଣଟି ହାତକୁ ଚାଲି ଆସିବା ପରେ ଯେବେ 'ନେତା ଓ 'ସେବକ' ଦୁଇ ବନ୍ଧୁଙ୍କର ସାକ୍ଷାତ ହୋଇଗଲା ।

"'ମୁଁ ନେତା ।" 'ନେତା' ଜଣକ ସେବକ ବନ୍ଧୁକୁ କହିଲେ ।

'ତୁମେ ରାକ୍ଷସ ଏବଂ ଦେବତା ଉଭୟଙ୍କର ମିଶାମିଶି ।" ସେବକ ଉତ୍ତର ଦେଲା ।

"ମୁଁ ଦେବତା, ରାକ୍ଷସ ନୁହେଁ । ରାକ୍ଷସମାନଙ୍କ ପଛରେ ମଣିଷପଣିଆର ସୁନ୍ଦର ଖେଳଣା ଗୁଡ଼ିକ ଜୟନାଦ କରି ଗୋଡ଼ାଇ ଯା'ନ୍ତି ନାହିଁ ମୋ ପଛରେ ଯେପରି ଗୋଡ଼ାଇଛନ୍ତି ।"

"ନା, ତୁମେ ଯଦି ନିଜ ଜାଗାରେ ସ୍ଥିର ରହି ପାରିବ, ଆପଣା ପ୍ରତିଜ୍ଞାରେ ଦୃଢ଼ ହୋଇ ପାରିବ, ତେବେ ତୁମେ ଧନ୍ୟ । ତୁମକୁ ଲୋକେ ଦେବତା ମାନି ପୂଜା କରିବେ । କିନ୍ତୁ ନିଜ ସ୍ୱାର୍ଥ ହାସଲ ପାଇଁ କେତେ-ବେଳେ ବି ଯଦି ଗରିବ ଜନତାଙ୍କୁ ଆଡ଼େଇ ଦିଅ, ତେବେ ତୁମେ ରାକ୍ଷସ ଠାରୁ ବି ବଳିଯିବ । ନେତୃତ୍ୱର ଅନ୍ତରାଳରେ ଥାଇ ଦାନବତାର ବେପାର ଚଳାଇଲି ହାସ୍ୟାସ୍ପଦ ହେବ । ଯିଏ ବହୁତ ଉପରକୁ ଉଠିଥାଏ, ଖସି-ପଡ଼ିଲେ ସେ ସେତିକି ତଳକୁ ହିଁ ଖସିଯାଏ ।"

"ସେବକ" — ଅଭିମାନ ଭରା କଣ୍ଠରେ 'ନେତା' କହିଲେ । "ସାରା ସଂସାର ଦିନେ ମୁକ୍ତ କଣ୍ଠରେ ସ୍ୱୀକାର କରିବ ଯେ, ମୋର ଲକ୍ଷ୍ୟ ଠିକ । ମୁଁ ଇତିହାସରେ ଅମର ହୋଇ ରହିବି ।"

"ନେତା" — 'ସେବକ ନମ୍ରତାର ସହିତ ଉତ୍ତର ଦେଲା । "ଭଗବାନ କରନ୍ତୁ ତୁମର ତୃଷ୍ଣା ପରୂର୍ଣ୍ଣ ହେଉ । କିନ୍ତୁ ଭାଇ, ମନେରଖ ଯେ ତୁମେ ଆଗ୍ନେୟଗିରି ମୁଖଦେଶରେ ଠିଆ ହୋଇଛ । କେତେବେଳେ ଯେ ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗିରଣ ଘଟିବ ଏବଂ ତୁମେ ଧୂଳିସାତ୍ ହୋଇଯିବ, ତାର କୌଣସି ସ୍ଥିରତା ନାହିଁ । ମନେରଖ, ନେତାର ସିଂହାସନ ସବୁବେଳେ କଣ୍ଟକ ମୟ ।"



'ନେତା' ଦିନେ ବିଚାର କଲେ — ଏତେବଡ଼ ସୁସଙ୍ଗଠିତ ଦଳ ତାଙ୍କ ପଛରେ ରହିଛି ଯେ, ଅତ୍ୟାଗୃହୀ ଧନିକଶ୍ରେଣୀ, ଧର୍ମାଧକ୍ଷ, ଏପରିକି

ସ୍ୱୟଂ ରାଜା ମଧ୍ୟ ତାଙ୍କୁ ସମ୍ମାନ ଦେଉଛନ୍ତି । ବିରୋଧ କରୁଥିବା ସତ୍ତ୍ୱେ, କୁତ୍ସା ରଟନା ଏବଂ ଦଣ୍ଡ ଦେଉଥିବା ସତ୍ତ୍ୱେ ସେମାନେ ତାଙ୍କୁ ଭୟ କରୁଛନ୍ତି । ଜନତା ଏବେ ତାଙ୍କ ଇଂଗିତରେ ମରିବା ଓ ମାରିବା ପାଇଁ ପ୍ରସ୍ତୁତ । ତେବେ ...... ?

"ଅରେ ନିଆଁ ଲଗାଇ ଦେଲେ କ୍ଷତି କ'ଣ ? ଗରିବ ଲୋକଙ୍କୁ ଧନୀମାନଙ୍କ ବିରୁଦ୍ଧରେ ମତେଇ ଦେଲେ କ୍ଷତି କ'ଣ ? ଅରାଜ ପାଇଁ ଲୁହାକୁ ପକେଇ ଦେଇ ପାରିଲେ ଯଦି ଏତେ ବଡ଼ ଦେଶର 'ତ୍ରାଣକର୍ତ୍ତା' ପଦବୀ ମିଳିଯାଏ, ତେବେ ଏ ସୁଯୋଗ ଛାଡ଼ିବ କାହିଁକି ? ବିପ୍ଳବ ପରେ ଶେଷ ବିଜୟୀ ନେତା କିପରି ସମ୍ମାନ ଓ ପ୍ରତିଷ୍ଠା ପାଏ, ସଂସାରର ଇତିହାସ ତ ଏହାର ପ୍ରମାଣ ରହିଛି ।"

"କିନ୍ତୁ"...... "କିନ୍ତୁ"...... 'ନେତା'ଙ୍କ ଭାବନାରେ ବାଧା ପଡ଼ିଲା । "ଯଦି ଜନତା ଶକ୍ତିହୀନ ହୋଇଯାଏ ଅଥବା ମୋର ଦମ୍ଭ ଭାଂଗିଯାଏ ? ଯଦି ରାଜଶକ୍ତି ପରାଜୟ ବରଣ କରେ......?"

"ନା, ଏସବୁ ମନର ଦୁର୍ବଳତା । ଆମେ ଅବଶ୍ୟ ବିଜୟ ଲାଭ କରିବୁ । ସୌଭାଗ୍ୟ ଦେଖା ଆସିଥିଲେ । ଉଦ୍ୟମର ଜୟ ହେଉ ! ସାହସର ଜୟ ହେଉ !! ମନୁଷ୍ୟର ଜୟ ହେଉ !!!"

ସେ ଦେଶର ସରକାରଙ୍କ ବିରୋଧରେ 'ନେତା' ସଶସ୍ତ୍ର ଯୁଦ୍ଧ ଘୋଷଣା କଲେ । ରାଜ କର୍ମଚାରୀମାନଙ୍କ ଅତ୍ୟାଚାରରେ ପ୍ରଜାଗଣ ଶୁଖିଲା ଘାସପରି ପଡ଼ି ରହିଥିଲେ । 'ନେତା' କେବଳ ସେଥିରେ ନିଆଁ ଲଗାଇ ଦେଲେ ।

'ସେବକ' ହାତଯୋଡ଼ି ଅନୁରୋଧ କଲା — "ନେତା, ଡରକର କୁହ ନାହିଁ । ହାତରୁ ଖସି ଯାଇଥିବା ଶର ପୁଣିଥରେ ଲେଉଟି ଆସେନା । ସମୟ ହୋଇନାହିଁ । ଅପେକ୍ଷା ରଖ ।"

"ସେବକ !" ନେତାମାନଙ୍କର ସ୍ୱାଭାବିକ ଗାମ୍ଭିର୍ଯ୍ୟ ହସ ହସି 'ନେତା' କହିଲେ — "ତୋର ଧର୍ମ ସେବା କରିବା, ଅନୁଗମନ କରିବା, ତୁ ନିଜ ରାସ୍ତାରେ ଯାଆ ।"

'ନେତା'ଙ୍କର ଅନୁଗାମୀମାନେ କହି ପକାଇଲେ— "ସତ କହିଛନ୍ତି, ଧର୍ମାବତାର । 'ସେବକ' ଡରୁଆ କାପୁରୁଷ ।"

"ନେତା, ନିଆଁ ଲଗାଅ ନାହିଁ । ଦେଶ ଉଚ୍ଛନ୍ନ ହୋଇଯିବ । ମା'ମାନେ ଅନାଥ ହୋଇଯିବେ । ଭଉଣୀମାନେ ଅତ୍ୟାଚାରର ଶୀକାର ହେବେ । ବିଧବାମାନଙ୍କ ଦୀର୍ଘଶ୍ୱାସରେ ଆକାଶ ବତାସ କଂପି ଉଠିବ ।"

"ସେବକ, ତୋର ପରାମର୍ଶର ଆବଶ୍ୟକତା ନାହିଁ । ତୋର ଆତ୍ମା ଦୁର୍ବଳ । ତୁ କେବଳ ତାମସା ଦେଖ୍ ଆଉ ଚୁପ୍ ରହ । ମୁଁ ମୋ ଦାୟିତ୍ୱ ବୁଝିବି ।" ନେତା କହିଲେ ।

"ସେବକ, ତୁ ଦେଶଦ୍ରୋହୀ, ନୀଚ, ପତିତ । ଆମ ଆଖି ଆଗରୁ ଦୂରେଇ ଯା' । ଆମର 'ନେତା' ସର୍ବଶକ୍ତିମାନ ଓ ଦେବତା । ତାଙ୍କର ଜୟ ହେଉ ।" ନେତାଙ୍କର ଅନୁଗାମୀ କହିଲେ ।

ଫେରି ଯାଉ୍ ଯାଉ ଲୋତକଭରା ଆଖିରେ ସେବକ କହିଗଲା — "ନେତାଭାଇ, ତୁମର ସିଂହାସନ ଆଗ୍ନେୟଗିରି ଉପରେ । ସାବଧାନ ଥିବ !"



ସରକାର ବିଚଳିତ । ଶାସନ କଳ ଥରି ଉଠିଲା । ସଂସାର ଓଲଟ ପାଲଟ ହେଲାଭଳି ଅବସ୍ଥା । ଈଶ୍ୱରଙ୍କ ନାମ ଜପିଲାଭଳି ସବୁରି ତୁଣ୍ଡରେ 'ନେତା'ଙ୍କର ନାମ ଶୁଣାଗଲା । ଅବଶ୍ୟ ଏ ସବୁର ମୂଳରେ 'ନେତା'ଙ୍କର ଚତୁର ବୁଦ୍ଧି କାର୍ଯ୍ୟ କରୁଥିଲା ।

ଦେଶରେ ବିଦ୍ରୋହ — ସଶସ୍ତ୍ର ବିଦ୍ରୋହ ହେଲା । ଅବଶ୍ୟ ସବୁ ଯାଗାରେ ନହୋଇ 'ନେତା' ରହୁଁଥିବା ଯାଗାମାନଙ୍କରେ ହିଁ ହେଲା । ଜନତାଙ୍କ ପକ୍ଷରୁ ସାମାନ୍ୟଭାବେ ବିଦ୍ରୋହ ଆରମ୍ଭ ହେଉ ହେଉ ସାରା-ଦେଶ ରକ୍ତପ୍ଲାବିତ ହୋଇ ଉଠିଲା । ସରକାରଙ୍କର କିଛି କ୍ଷତି ହେଲା କିନ୍ତୁ ବେଶୀ କ୍ଷତି ହେଲା ଜନତାଙ୍କର । କିନ୍ତୁ ନେତା ! ଦୁଧରେ ଧୂଆ-ହୋଇଥିବା ଶୁଦ୍ଧ ସୁବର୍ଣ୍ଣ ଭଳି ସେ ବାହାରେ ହିଁ ରହିଗଲେ । ଆଇନ ମଧ ତାଙ୍କ ନିକଟରେ ପହଞ୍ଚିବାକୁ ସାହସ କଲାନାହିଁ । ସେ ସମସ୍ତ ଅନିଷ୍ଟର ମୂଳ ବୋଲି ଜାଣିଲେ ମଧ୍ୟ ସମଗ୍ର ଦେଶରେ ଅସ୍ଥିରତା ଏଡ଼ାଇ ଦେବା-ପାଇଁ ସରକାର ତାଙ୍କୁ ଗିରଫ ସୁଦ୍ଧା କଲେ ନାହିଁ ।

ଅନେକ ସ୍ଥାନରେ ଜନତାଙ୍କ ରକ୍ତରେ ହୋଲି ଖେଳ ସାରିବା ପରେ ମଧ ଆନ୍ଦୋଳନର ବ୍ୟାପକତା ଦେଖି ସରକାର ନେତାଙ୍କୁ ସ୍ମରଣ କଲେ । ରାଜା ନିଜର ବିଶେଷ ପ୍ରତିନିଧି ପଠାଇ ନେତାଙ୍କୁ ନିମନ୍ତ୍ରଣ ଜଣାଇଲେ ।

ଠିକେ ରାତି ଦଶଟାବେଳେ 'ନେତା' ଆସି ରାଜ ପ୍ରାସାଦରେ ଉପସ୍ଥିତ ହେଲେ । ଚାରିଆଡ଼େ ବିଶେଷ ଆୟୋଜନ । 'ନେତା'ଙ୍କୁ ସ୍ୱାଗତ ଜଣାଇବା ପାଇଁ ଖୁବ୍ ଜାକଜମକ ହୋଇଥାଏ । ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଗହଣରେ ନେତା ଯାଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସ୍ୱର୍ଣ୍ଣଦୀପ ଜଳୁଥାଏ । ଭବନର କୋଣେ କୋଣେ ସୁଗନ୍ଧବାହୀ ପବନ ଖେଳି ବୁଲୁଥାଏ । ରଙ୍ଗ

ବେରଙ୍ଗ ଆଲୋକରେ କେଉଭବନ ଦେଦୀପ୍ୟମାନ । ବିବିଧ ରୂପ ରଙ୍ଗର ସମ୍ଭାର ନେଇ ସୁନ୍ଦରୀଗଣ ଏବଂ ମଦ୍ୟ ପାତ୍ରମାନ ନିଜ ନିଜ ସ୍ଥାନରେ ଶୋଭା ପାଉଥାନ୍ତି । 'ନେତା'ଙ୍କ ପାଇଁ ଆସନ ରାଜାଙ୍କ ଆସନ ନିକଟରେ ସାମାନ୍ୟ ତଳେ ଉଦ୍ଦିଷ୍ଟ ଥାଏ ।

ସେଦିନ 'ନେତା' ମହାମାନ୍ୟ ରାଜାଙ୍କର ରାଜ ଅତିଥି । ରାଜାଙ୍କର ଇଂଗିତ ପାଇବା ମାତ୍ରକେ ପାରିଷଦଗଣ ନିଜନିଜ ମଦ୍ୟ ପାତ୍ରକୁ ଉର୍ଦ୍ଧ୍ୱକୁ ଟେକି ଧରିଲେ । କାଚ ପାତ୍ର ଭିତରେ ରଙ୍ଗୀନ ମଦିରାର ଫେନଲୋଚ୍ଛ୍ୱାସ । 'ନେତା' କିନ୍ତୁ ନିଜର ପାତ୍ରଟିକୁ ଉଠାଇ ନଥାନ୍ତି । "ଛିଃ, ଏଇଟା ମଦ । "ତୁ ହେଉଛୁ ନେତା !„ — ତାଙ୍କର ହୃଦୟ କହୁଥାଏ ।

ଡାହାଣପଟରେ ବସିଥିବା ରାଜପ୍ରତିନିଧି ଜଣକ 'ନେତା'ଙ୍କ କାନ ପାଖରେ କହିଲେ — "କ୍ଷମା କରିବେ । ଆପଣ ଏହା ଗ୍ରହଣ ନକଲେ ରାଜାଙ୍କର ଅପମାନ ହେବ । ପିଇବାରେ କ୍ଷତି କଣ ?"

"ହଁ, ପିଇବାରେ କ୍ଷତି କଣ ?" ନେତାଙ୍କର ମନ ଭିତରେ ଏ ଧାଡ଼ିକ ପୁଣି ଥରେ ପ୍ରତିଧ୍ୱନିତ ହୋଇ ଉଠିଲା । ଠିକ୍ ସେହି ସମୟରେ ସୁନ୍ଦରୀଗଣ ମଧୁର ସଙ୍ଗୀତର ମୂର୍ଚ୍ଛନା ତୋଳିବା ଆରମ୍ଭ କରି ଦେଇ-ଥାନ୍ତି । ମନ୍ଦ ମଳୟ 'ନେତା'ଙ୍କର କପୋଳ ସ୍ପର୍ଶକରି ବହି ଯାଉଥାଏ । କକ୍ଷର ଅପର ପାର୍ଶ୍ୱରେ ଥିବା ମଖମଲ ପର୍ଦ୍ଦାର ଗବାକ୍ଷ ଭିତରଦେଇ ଚନ୍ଦ୍ର ଦେବତା ଉଙ୍କି ମାରୁଥାନ୍ତି ।

"ଏଥିରେ କ୍ଷତି କଣ ? ମୁଁ ତ ସାଧାରଣଙ୍କ ଭଳି ଦୁର୍ବଳ ଚରିତ୍ର ନୁହେଁ...... ।" 'ନେତା'ଙ୍କ ଅନ୍ତର ଭିତରୁ କେହି ଜଣେ ପୁଣି ଥରେ ସାବଧାନ କରାଇ ଦେଲା — "ତୋର ଶିରାରେ ଏହାତ ଗଣବମାନଙ୍କ ରକ୍ତ । ହୁସିଆର । ତୁ ତଳକୁ ଖସି ଯାଉନାହୁଁ ତ ?"

'ନେତା'ଙ୍କର ଏଇଭଳି ବିଚଳିତ ଅବସ୍ଥା ଦେଖି ରାଜା ଇଂଗିତ ଦେଲେ । ଜଣେ ଅନୁପମା ସୁନ୍ଦରୀ ମଦାଳସା ଆସି ନେତାଙ୍କ ବାମପଟ ଆସନ ଅଳଂକୃତ କଲା । 'ନେତା' ରୋମାଂଚିତ ହୋଇପଡ଼ିଲେ ।

ବ୍ରହ୍ମା, ବିଷ୍ଣୁ ଏବଂ ମହାଦେବ ଆଦି ଦେବତା ଗଣ, ପୁଣି ବିଶ୍ୱାମିତ୍ର, ପରାଶର ଓ ନାରଦଙ୍କ ଭଳି ମହା ମହା ଋଷିଗଣ ଯାହା ନିକଟରେ ପରାଜୟ ସ୍ୱୀକାର କରି ନିଜର ମସ୍ତକ ନୁଆଁଇ ଥିଲେ, ତା' ନିକଟରେ ସାମାନ୍ୟ ଗୋଟିଏ ଦେଶର ଜଣେ 'ନେତା' ବା କେତେ ସମୟ ଧରି ଅଟଳ ରହି ପାରିବେ ?

ସୁନ୍ଦରୀ ଜଣକର ହାତରୁ ମଦ୍ୟ ପାତ୍ର ଗ୍ରହଣ କରୁ କରୁ ସେ ମନକୁ ମନ କହିହେଲେ — "ହଁ, ଟକ୍କା କରିବାର କିଏ ଅଛି ? ମୁଁ ନେତା । ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ ଶକ୍ତି ସମ୍ପନ୍ନ...... ।"

ପରଦିନ 'ନେତା' ରାଜାଙ୍କ ମନ୍ତ୍ରୀ ପରିଷଦରେ ଅନ୍ୟତମ ମନ୍ତ୍ରୀ ଅର୍ଥାତ୍ ପିଶାଚ ଅର୍ଥଲୋଭୀ ମନ୍ତ୍ରୀ ରୂପେ ପରିଣତ ହୋଇ ଯାଇଥିଲେ ।



ଯେଉଁଦିନ 'ନେତା' 'ମିନିଷ୍ଟର'ରେ ପରିଣତ ହୋଇଗଲେ, ସେହି-ଦିନ ଠାରୁ ତାଙ୍କର ସମସ୍ତ ଆଦବ୍ କାଇଦା ବଦଳି ଗଲା । ଗାଡ଼ି, ମଟର, ବଂଗଳା, ଗାର୍ଡ଼, କୌଣସିଟିର ଅଭାବ ରହିଲା ନାହିଁ । 'ସେବକ' ସହିତ ମିଶି ଦିନେ ସେ ଯେଉଁ ପ୍ରତିଜ୍ଞା କରିଥିଲେ, ତାହା ବି ଭୁଲିଗଲେ । ଶାସନରେ ଥିବା କୂଟନୀଗଣ ତାଙ୍କୁ ସଂପୂର୍ଣ୍ଣ ବଶୀଭୂତ କରିନେଲେ । ଏଣିକି ଅତ୍ୟାଚାରିତ ଜନତାଙ୍କ ଲାଗି ତାଙ୍କର ଆଉ ଦରଦ ରହିଲା ନାହିଁ । ସମ୍ବାଦପତ୍ର ମାନଙ୍କରେ କେବେ କିପରି ଅଧେଅଧେ ତାଙ୍କର ଲେଖା ବାହାରୁ ଥାଏ । ତାଙ୍କର ବାଣୀରେ ଆଉ ପୂର୍ବଭଳି ଯୋର ବି ନଥିଲା ।

ଦିନେ 'ସେବକ' ତାଙ୍କର ବଂଗଳା ଫାଟକ ନିକଟରୁ ଫେରି ଯାଉଥିଲା । କାରଣ ସନ୍ତ୍ରୀ ତାକୁ ପ୍ରବେଶ କରିବା ପାଇଁ ଅନୁମତି ଦେଲାନାହିଁ । ଅଳ୍ପ ବାଟ ଫେରିବା ପରେ ସମ୍ମୁଖ ଦିଗରୁ ଏକ ବିରାଟ ଜନତା ଏ ଆଡ଼କୁ ଅଗ୍ରସର ହେଉଥିବା ଦେଖି ପାରିଲା । ଭିଡ଼ ଭିତରେ ଗରିବ ଶ୍ରେଣୀର ଲୋକ, ମଜଦୂର, ସ୍ତ୍ରୀ, ବାଳକ-ବାଳିକା ଏବଂ ଅନେକ ପ୍ରବୁଦ୍ଧ ବ୍ୟକ୍ତି ଥିଲେ । 'ସେବକ' ସେମାନଙ୍କ ଆଗକୁ ଚାଲିଆସି ପ୍ରଶ୍ନ କଲା— "କୁଆଡ଼େ···?"

"ମିନିଷ୍ଟର ପାଲଟି ଯାଇଥିବା 'ନେତା'ଙ୍କ ଘରକୁ ।" କେହି ଜଣେ ଉତ୍ତର ଦେଲା ।

'ସେବକ' ମଧ୍ୟ ସେହି ଭିଡ଼ରେ ମିଶି 'ନେତା'ଙ୍କ ଫାଟକ ନିକଟରେ ପୁନର୍ବାର ଉପସ୍ଥିତ ହେଲା ।

ସନ୍ତ୍ରୀ ପ୍ରଥମେ ଟାଳଟୁଳ କରୁଥିଲା । କିନ୍ତୁ 'ନେତା'ଙ୍କ ସାକ୍ଷାତ ପାଇଁ ଜନ ସମୂହ ଅତ୍ୟନ୍ତ ଉତ୍ସୁକ ହେଉଥିବା ଦେଖି ସେ 'ମିନିଷ୍ଟର ନେତା'ଙ୍କୁ ସୂଚନା ଦେଲା । ନେତା ବାହାରକୁ ଆସିଲେ ।

"ନେତା !" ଗରିବ ଜନତା ତାଙ୍କୁ ସମ୍ବୋଧନ କରି କହିଲା । "ତୁ ଆମକୁ ଭୁଲିଗଲୁ କିପରି ? ଆମେତ ସବୁବେଳେ ତୋର ଭକ୍ତ ଥିଲୁ । ଆମର ଖବରଅନ୍ତର କାହିଁକି ନେଉନାହୁଁ ?"

"ତୁମେମାନେ କିଛି ଭଲ କରୁନାହଁ ।" ଜନତାଙ୍କ ଉଦ୍ଦେଶ୍ୟରେ କ୍ରୋଧ ପ୍ରକାଶ କରି ନେତା କହିଲେ । "ଏଭଳି ଦଳବଳ ନେଇ ଏଠାକୁ ଆସିବାର ଆବଶ୍ୟକତା କଣ ? ଏହା ତ ମତେ ଧମକ ଦେଲାଭଳି । ଏପରି ଭାବେ ଆସିଲେ ମୁଁ ତୁମମାନଙ୍କର କିଛି କଥା ଶୁଣିବା ପାଇଁ ପ୍ରସ୍ତୁତ ନୁହେଁ । ଧୀରସ୍ଥିର ଭାବେ ଜଣେ ଜଣେ ମୋ ସହିତ ସାକ୍ଷାତ ପାଇଁ ଆସିପାର ।"

"ତୁ ତ ମୋଟର ଗାଡ଼ିରେ ବୁଲୁଛୁ । ଆମେ ଗରିବ, ଖାଲି ପାଦରେ ଚାଲିବା ଲୋକ । ତୁ ରାଜାଙ୍କ ପାଖରେ ରହୁଚୁ । ଆମେ ଗରିବମାନଙ୍କ ପାଖରେ ପଡ଼ିଥାଉଁ । ତାହାହେଲେ ତୋର ଆମର କେତେବେଳେ ବା ସାକ୍ଷାତ ହେବ ?" ଭିଡ଼ ଭିତରୁ ଜଣେ ଲୋକ କହିଲା ।

"ନେତା" ଆଉ ଜଣେ କହିଲା "ଯେଉଁ ସରକାରରେ ତୁ ମନ୍ତ୍ରୀ ହୋଇଛୁ ସେ ମୋ ଭାଇକୁ ଫାଶୀ ଦେଇଥିଲା ନାହିଁକି ? ଖାଲି ତୋରି ଯୋଗୁଁ । ତୁ ଆରମ୍ଭ କରିଥିବା ଆନ୍ଦୋଳନ ଯୋଗୁଁ । କିନ୍ତୁ ଏବେ ତୁ ସେଇ ରାକ୍ଷସୀ ସରକାରକୁ ଚଳାଉଛୁ ! ସେତେବେଳେ ତୁ ନିଜେ 'ମିନିଷ୍ଟର' ମାନଙ୍କୁ ଖରାପ ବୋଲି କହୁଥିଲୁ !!"

"ଚୁପ କର ।" 'ନେତା' କହିଲେ—"ରାଜନୀତିରେ ସବୁବେଳେ ମତ ବଦଳୁଥାଏ । ସେତେବେଳେ ମନ୍ତ୍ରୀତ୍ୱ ଠାରୁ ଦୂରରେ ରହିବାର ଆବଶ୍ୟକତା ଥିଲା । କିନ୍ତୁ ଆଜି ତାହା ସ୍ୱୀକାର କରିବାର ଆବଶ୍ୟକତା ପଡ଼ିଛି । ତୁମେ-ମାନେ ମୂର୍ଖ । ରାଜନୀତି କଣ ବୁଝିବ ?"

"ନେତା" ଭିଡ ଭିତରୁ ଜଣେ ସ୍ତ୍ରୀଲୋକ ଡାକିଲା — "ସେଥରର ଆନ୍ଦୋଳନରେ ସରକାରୀ ଆଦେଶରେ ରାଜାଙ୍କ ସୈନ୍ୟମାନେ ମୋ ଘର ଲୁଟି ନେଇଥିଲେ ଆଉ ଖୋଜି ଖୋଜି ସବୁ ପୁରୁଷମାନଙ୍କୁ ମାରିପକାଇ ଥିଲେ । ଏବେ ଆମେ ସ୍ତ୍ରୀ ଓ ପିଲାମାନେ ଦୁଃଖ, ଦୁର୍ଦ୍ଦଶାରେ ମରୁଛୁଁ । 'ନେତା,' ତୁ ଆମକୁ ବଞ୍ଚା......।"

'ନେତା' କହିଲେ "ଏବେ ମୁଁ ତୁମମାନଙ୍କର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ । ତୁମେମାନେ ମତେ ଭୟ ଦେଖାଇବାକୁ ଆସିଛ । ଭଲ-ଦଶା ଥିଲେ ଶୀଘ୍ର ଫେରିଯାଅ, ନଚେତ୍ ଅନର୍ଥ ସୃଷ୍ଟି ହୋଇଯିବ ।"

"ତୁ ଆମମାନଙ୍କୁ ରକ୍ଷାକର । ଆମେ ତତେ ଫେରାଇ ନେବାକୁ ଆସିଛୁ । ତୁ ସରକାରୀ ପ୍ରତିଷ୍ଠା ଓ ଧନ ସମ୍ପତ୍ତିର ମୋହମାୟାରେ ପଡ଼ି-ଯାଇଛୁ । ତୁ ଆମକୁ ଭୁଲି ଯାଇଛୁ ।"

"ମୁଁ କିଛି ଶୁଣିବି ନାହିଁ ।" ନେତା ଧମକ ଦେଇ କହିଲେ । "ବାସ୍ତବିକ ତୁମେମାନେ ବଡ ବଦମାସ ।" ପୁଣି ସେ ନିଜର ରକ୍ଷୀଙ୍କୁ ନିର୍ଦ୍ଦେଶ ଦେଲେ—

"ଟେଲିଫୋନ୍‌ରେ ପୁଲିସକୁ ଖବର ଦିଅ । ଏ ବଦମାସ ଗୁଡ଼ାକ ଏଠୁ ସହଜରେ ହୁଏତ ଯିବେ ନାହିଁ ।"

"ଆମପାଇଁ ପୁଲିସ!" କେହି ଜଣେ କହିଲା ।

"ଭୁ ମିନିଷ୍ଟର' ହେବା ସଙ୍ଗେ ସଙ୍ଗେ ବଦଳିଗଲୁ ।" ଅନ୍ୟ ଜଣେ କହିଲା ।

"ଆମେ ଜନତା" ଜଣେ ଉତ୍ତେଜିତ ନବ-ଯୁବକ ଆଗକୁ ଚାଲିଆସି କହିଲା—"ଆମେ ମୂର୍ଖ, ଗରିବ, ଶକ୍ତିହୀନ ହେଉ ପଛକେ, ଆମେ ସମ୍ରାଟମାନଙ୍କ ଭିତରେ ସମ୍ରାଟ ଆଉ ବାଦ୍‌ଶାହଙ୍କ ଭିତରେ ବାଦ୍‌ଶାହ । ଦେବତାମାନଙ୍କ ଭଳି ଆମେ ଦୟାକୁ ଆଉ ଭୋଳା । ଦାନବମାନଙ୍କ ଭଳି କ୍ରୁର ଏବଂ ଭୟାନକ ମଧ୍ୟ । ଆମେ ଯେତେବେଳେ ଅସନ୍ତୋଷ ପ୍ରକାଶ କରୁ, ଆକାଶ କମ୍ପି-ଉଠେ । ପୃଥିବୀ ଦୋହଲି ଯାଏ । ଭୁ ଆମର ବିରୁଦ୍ଧାଚରଣ କରୁଛୁ ? ଆମରି ରକ୍ତରେ ବଳୀୟାନ ହୋଇ ଆମରି ବିରୁଦ୍ଧରେ ଶକ୍ତି ପ୍ରୟୋଗ କରୁଛୁରେ ମୂର୍ଖ !"

ଉତ୍ତେଜିତ ଭିଡ଼ କହି ଉଠିଲା — "ମୂର୍ଖ, ଧୋକାବାଜ ।"

'ନେତା' ଗର୍ଜି ଉଠିଲେ — "ବଦମାସ କୁକୁର, ମଙ୍ଗଳ ଚାହୁଁଛ ତ ଶୀଘ୍ର ଏଠାରୁ ବିଦାୟ ହୁଅ ।"

"ଆମେମାନେ କୁକୁର ?" ନବ-ଯୁବକ ଜଣକ କ୍ରୋଧାବେଗରେ ପଚାରିଲା ।

"ଆମେମାନେ କୁକୁର ?" ବୁଢ଼ାମାନେ ଘୃଣାର ସହିତ ପଚାରିଲେ ।

"ଆମେ କୁକୁର ?" ପିଲାମାନେ ଚଞ୍ଚଳ ହୋଇ ଉଠିଲେ ।

'ନେତା' ନୌକରକୁ ଟେଲିଫୋନ କରିବା ପାଇଁ ପଠାଇ ଦେଲେ । ସେ ନିଜେ ମଧ୍ୟ ଫେରିପଡ଼ି ବଙ୍ଗଳା ଆଡ଼କୁ ମୁହାଁଇଲେ ।

ଭିଡ ଭିତରୁ କେହି ଜଣେ ଚିତ୍କାର କରି ଆହ୍ୱାନ ଦେଲା — "କୁଆଡ଼େ ପଳାଉଛୁ ?"

ଆଉଜଣେ କହିଲା — "ଆଜି ତୋର ଆଉ ଆମ ଭିତରେ ନିଶ୍ଚୟ କିଛି ଫଇସଲା ହୋଇଯିବ ।"

ତୃତୀୟ ଜଣକ ଚିତ୍କାର କଲା — "ମାର ଏଇ ମନୁଷ୍ୟ ରୂପଧାରୀ ରାକ୍ଷସକୁ...... ।"

କିଏ ଚିନ୍ତା କରିବ ? କିଏବା ଆଉ ବିଚାର କରିବ ? ଜନତାଙ୍କ ଭିତରେ ସେତେବେଳକୁ ଶୈତାନ ସବାର ହୋଇ ଯାଇଥିଲା । ଭଲ-ମନ୍ଦର

ଜ୍ଞାନ ଲୋପ ପାଇ ଯାଇଥିଲା । ଦେଖୁ ଦେଖୁ ସେମାନେ ନେତାଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଚାରିଆଡ଼େ ହୋ-ହଲ୍ଲା ଓ ଚିତ୍କାର । ପୁଲିସ ଆସି ପହଞ୍ଚିବା ପୂର୍ବରୁ ହିଁ 'ନେତା'ଙ୍କ ଶରୀର ଖଣ୍ଡ ବିଖଣ୍ଡିତ ହୋଇ ଯାଇଥିଲା ।

ଉତ୍ତେଜିତ ଜନତା 'ନେତା'ଙ୍କ ଶବରେ ଦଉଡ଼ି ବାନ୍ଧି ଟାଣି ଟାଣି ସଡ଼କରେ ପାଗଳ ଭଳି ଚାଲିଥାନ୍ତି । 'ସେବକ' ହଜାର ହଜାରେ ଚେଷ୍ଟାକରି ମଧ୍ୟ ସେହି ବିକ୍ଷୁବ୍ଧ ଜନ ସମୁଦ୍ରକୁ ଶାନ୍ତ କରି ପାରୁ ନଥାଏ । ଏହି ସମୟରେ ସମ୍ମୁଖରୁ ସଶସ୍ତ୍ର ଘୋଡ଼ସବାର ପୁଲିସ ଆଗେଇ ଆସୁଥିବା ଦେଖାଗଲା ।

ସେନା-ନାୟକ ଚିତ୍କାର କରି ପଚାରିଲେ — "ଏ କିଏ ? ଏଭଳି କୁଆଡ଼େ ନେଇ ଯାଉଛ ?"

'ସେବକ' ଉତ୍ତର ଦେଲା—"ଇଏ ଜ୍ୱାଳାମୁଖୀ ଅଗ୍ନେୟଗିରି ସହିତ ଖେଳୁଥିବା 'ନେତା' । ସେ ପ୍ରଥମେ ଯେଉଁ ସ୍ଥାନରେ ଥିଲା, ସେଇ ସ୍ଥାନକୁ ଆମେ ତାହାକୁ ନେଇ ପହଞ୍ଚାଇ ଦେଉଛୁଁ ।" (ଅନୁବାଦକ : ରାଧାକାନ୍ତ ଦାସ)



ଗଳ୍ପ :

# ମୋ ଗଳ୍ପର ନାୟକ

**ମହମ୍ମଦ୍ ନଜାମୁଦ୍ଦିନ୍**

---

କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ସାଧାରଣତଃ ବହିପଢ଼ି, ଆଳାପ କରି ତାସ୍ ଖେଳି କିମ୍ବା ଖାଲିଟାରେ ବସିରହି ସେମାନଙ୍କର ଯାତ୍ରା ସମୟଟିକୁ ବିତାଇ ଦିଅନ୍ତି । ହେଲେ ମୁଁ ମୋର ଯାତ୍ରା କାଳରେ ସଚରାଚର ଭାବିବାକୁ ବେଶୀ ପ୍ରାଧାନ୍ୟ ଦେଇଥାଏ । ଯଦିଚ ଖାଲିଟାରେ ବସି ରହିବାକୁ ଭଲ ପାଉଥିବା ବ୍ୟକ୍ତି-ଗୋଷ୍ଠୀଙ୍କର ଅନ୍ତର୍ଭୁକ୍ତ ହୁଏ କେତେକଙ୍କ ଦୃଷ୍ଟିରୁ ସେମାନେ ହୁଏତ ଭାବୁଥିବେ ଏଇ ଯୋଉ ଯାତ୍ରୀମାନେ ବୃଥାରେ ବସିରହନ୍ତି; ସେମାନଙ୍କୁ କେମିତି ଏମିତି ହେବାକୁ ଭଲ ଲାଗେ କେଜାଣି ? ନା କଥା, ନା ବାର୍ତ୍ତା, ନା ବହିପଢ଼ା, ନା ତାସ୍‌ଖେଳା—କାହିଁକି ଗୋଟିଏ ନଧର ଖାଲି ବସି ରହିଲେ ଅଳସୁଆମି ଲାଗେ, ଆଖିକୁ ନିଦ ଆସିଯାଏ । ଆମେ ବାବା ଏପରି କରିପାରିବୁ ନାହିଁ ଯାତ୍ରା ସମୟରେ । କିନ୍ତୁ ସେମାନେ କେବେ ଏହା ଭାବିଛନ୍ତି କି, ସବୁଲୋକଙ୍କର ବସିବା କେବଳ ମାତ୍ର ବସିବା ବା ବୃଥାରେ ହାଇମାରିବା ନୁହେଁ ବରଂ ସେଇ ବସିବା ଭିତରେ ତାଙ୍କ ମନ କାର୍ଯ୍ୟବ୍ୟସ୍ତ ଥାଏ । ସେହିସବୁ ବସିଥିବା ବ୍ୟକ୍ତିଗଣ ବା ଅଭିଯାତ୍ରୀ ଦଳ ଭିତରେ ଭିତରେ, ଯାତ୍ରା ସମୟକୁ ଲାଘବ କରିବା ନିମିତ୍ତ କାର୍ଯ୍ୟବ୍ୟସ୍ତ ରହିଥାନ୍ତି—ସେଇ କାର୍ଯ୍ୟଟି ସମ୍ଭବତଃ ସେମାନଙ୍କର ଚିନ୍ତା ବା ଭାବନା, ଯାହାକି ମୋର ପସନ୍ଦର ହୋଇଛି ।

ଏଥର ଯାତ୍ରା ସମୟରେ ମୁଁ ଜଣେ ବହିପଢ଼ାଳିଙ୍କ ଦୃଷ୍ଟିରେ ଖାଲିଟାରେ ବସିଛି ବୋଲି ଦେଖାଗଲି । ମୋର ବସିବାଟା ତାଙ୍କୁ ଆଗ୍ରହ ନଥାଏ ନା କଅଣ, ବହି ପଢ଼ା ସମୟରେ ଅନ୍ତତଃ ଅଠ କମ୍‌ରେ ସେ ମୋ ଆଡ଼କୁ ଚାରିଥର ଦୃଷ୍ଟି ଦେଇଥିବେ, ମୁଁ ମାତ୍ର ଦୁଇଥର ତାଙ୍କୁ ଦେଖିଲି । ସେ ଯେମିତି ମତେ ଉପହାସ କରୁଛନ୍ତି ବା ମନ୍ତବ୍ୟ ଦେବାର ଉପକ୍ରମ କରୁଛନ୍ତି—ସେମିତି ମତେ ଜଣାଗଲା, ତାଙ୍କ ଚଷମା ଭିତରେ ଥିବା ଆଖି ଦୁଇଟିରୁ । ସୁତରାଂ କିଛି ସମୟ ସେ ମତେ ପଞ୍ଚମ ଥର ଦୃଷ୍ଟି ଦେଇ ଚାହିଁଗଲେ । ଷଷ୍ଠ ଥରକୁ ଆଉ ସହି ପାରିଲେ ନାହିଁ । କହିଲେ—"ଖାଲିଟାରେ ବସିଛନ୍ତି ଯେ, ବହି ପଢ଼ିବାକୁ ପସନ୍ଦ କରନ୍ତିନି କାହିଁକି ଏହି ବେଳାରେ ? ଏହି ନିଅନ୍ତୁ ମୋର ବହି ପଢ଼ନ୍ତୁ । ବସି ବସି ବେକାରଟାରେ ସମୟ ନଷ୍ଟ କରୁଛନ୍ତି

କାହିଁକି ?" ଏହା କହି ସେ ଖଣ୍ଡେ ଇଂରାଜୀ ବହି ମୋ ହାତକୁ ବଢ଼ାଇ ଦେଲେ । ଇଚ୍ଛା ନଥିଲେ ବି ହାତ ବାଧ୍ୟହୋଇ ତାହା ଧରିଲା । ମନ କହିଲା—"ଲୋକଟା ବ୍ୟବହାର ଶିଖିନି ନା କଅଣ ? ମୋ ଦେହ ବସିଲା ହେଲେ ତାର କ'ଣ ଗରଜ ପଡ଼ିଛି ଯେ, ମୋ ଦେହକୁ କଥା କହିବ ପରିହାସ ଛଳରେ । ତାର ତ କିଛି କ୍ଷତି କରୁନି ମୋ ଦେହ ।"

ବିବେକ କହୁଥିଲା—"ତୁ ଭୁଲୁଛୁ; ଲୋକଟା ଜ୍ଞାନୀ ଥିବାରୁ ଜ୍ଞାନକଥା ଆହରଣ ପାଇଁ ବହିଦେଲା ଏବଂ କହିଲା ପଢ଼ିବାକୁ । ଖରାପ ତ କିଛି କରିନିରେ ସେ ।"

ମନ ବିବେକକୁ ରାଗିଯାଇ ଶୋଧିବା ଛଳରେ କହିଲା—"ତୁ ପରପାଇଁ ଓଲେଇ ଦେଖାନି । ମୋ ଦେହ ଚାହୁଁ ନାହାନ୍ତି ପଢ଼ିବାକୁ । ସେ ମତେ ନେଇ ଭାବିବାକୁ ଭଲ ପାଆନ୍ତି ତେଣୁ ସେ କଏସେ ଆମର ଏ ଆନନ୍ଦରେ ବାଧା ଦେବାକୁ । ତାକୁ ଜ୍ଞାନୀ କହୁଛୁ ତୁ ପୁଣି । ଜ୍ଞାନୀ ଥିଲେ ସେ ଏପରି କଥା କହନ୍ତାନି କି ନିଜର ଦୃଷ୍ଟିକୋଣକୁ ଅନ୍ୟ ଉପରେ ଚପି ପକାଇ ଲଦନ୍ତାନି ।"

ମୋର ମନ ଓ ବିବେକ ଏହିପରି ପରସ୍ପର କୁହାକୁହି ହେଉଥିବା ସମୟରେ ଦୃଷ୍ଟି ବହିରେ କେବଳ ମିଛଟାରେ ନିଜକୁ ବୁଲାଇ ନେଉଥିଲା । କିନ୍ତୁ ମୋର ଭାବନାକୁ ଏହାରି ମାଧ୍ୟମରେ ସେ ଆହୁରି ଘନିଷ୍ଠ କରିଦେଉଥିଲା । ମତେ ଏ ଦିଗରେ ସାହାଯ୍ୟ କରୁଥିଲା । ବହିରେ ଆଖି ପକାଉଥିଲି ସିନା କିନ୍ତୁ ଭିତରେ ଭିତରେ ଭାବୁଥିଲି ।

ପୁଣି ଗପ ଲେଖାକୁ ମୁଁ ଭଲ ପାଏ । ଅନେକ ଗପ ଲେଖିଛି । କିନ୍ତୁ ମୋର ଗପକୁ ପ୍ରକାଶ କରାଇନି । କାରଣ ସେଗୁଡ଼ିକ ଦୀର୍ଘ ଓ ବର୍ଣ୍ଣନାଧର୍ମୀ । ଗଳ୍ପ ହୋଇପାରେ କିନ୍ତୁ କ୍ଷୁଦ୍ର ଗଳ୍ପ ନୁହେଁ ବୋଲି ଅନେକ ମନ୍ତବ୍ୟ ଦେଇଛନ୍ତି; ତେଣୁ ସେହି ଡରରେ ମୁଁ ଭାବେ କାଳେ ପ୍ରକାଶକ ମୋର ଭାବନାରେ ଏକମତ ଥିବେ । ତେଣୁ ସେ ଯଦି ନ ଛପାନ୍ତି; ତେବେ ମୋ ଗଳ୍ପର ଅପମାନ ହେବନି । ଅପମାନିତ ନହେବାକୁ ମୁଁ ମୋର ଗପକୁ ମୋ ପାଖରେ ଜାକିଡ଼ି ଧରିଥାଏ । ତାକୁ ଛାଡ଼େନାହିଁ ପ୍ରକାଶକଙ୍କ ନିକଟକୁ । ଇଚ୍ଛା ଡାକୁଥାଏ, ଗୁଣୁ ଗୁଣୁ ହେଉଥାଏ ମନେ ମନେ କିପରି ମୋ ଗପର ମୁଦ୍ରିତ ରୂପ ଦେଖନ୍ତିକି । ପ୍ରକାଶକ କଅଣ ଏଥିରେ ମତେ ସାହାଯ୍ୟ କରିବେ ନାହିଁ ! ମୋର ଗପର ମୂଲ୍ୟକୁ ବୁଝିବା ସାଙ୍ଗକୁ ମୋର ମନ-ଦୌର୍ବଲ୍ୟକୁ ଉପଲବ୍ଧିରେ ଆଣିପାରିବେ ନାହିଁ । ସବୁ ପ୍ରକାଶକ କଅଣ ଶ୍ରେଷ୍ଠ ଗପ ଛାପିବାକୁ ଭଲ ପାଆନ୍ତି ? ପୁଣି ସବୁ ଶ୍ରେଷ୍ଠ ଗପ କ'ଣ ପାଠକକୁ ପଢ଼ିବାକୁ ଭଲ ଲାଗେ ନା ତା' ଭଲ ଉତୁରିଥାଏ ଲେଖକଙ୍କ ଦ୍ୱାରା । ଅଧିକାଂଶ ଶ୍ରେଷ୍ଠ ଗପରେ ତ

ଚରିତ୍ର ତଥା ଲେଖକର ଭାବନା ପୂର୍ଣ୍ଣପ୍ରକାଶ ଲାଭକରି ନଥିବାର ମୁଁ ଅନେକଥର ଶୁଣିଛି ଏବଂ ପଢ଼ିଛି ମଧ୍ୟ । ଖାସ୍ କରି ମୋ ଗଳ୍ପକୁ ମୁଁ ଯାହେ ବର୍ଣ୍ଣନା ଦେଇ ବଢ଼ାଇଛି ଏଥିପାଇଁ ଯେ, ସେଥିରେ ଚରିତ୍ର ନିଜକଥା ଖୋଲିକରି ପାଠକକୁ ଗଳ୍ପଟି କହୁ ପ୍ରସ୍ତାବିତ କରୁ । ଆଜି ମୁଁ କିପରି ମୋର ଭାବନାକୁ ଯଥାଯଥ ରୂପରେ ଆଣିପାରିବି—ସଂପୂର୍ଣ୍ଣ ଧରିପାରିବି ତାକୁ ଲେଖନୀ ଦ୍ୱାରା । ମଣିଷର ସୌନ୍ଦର୍ଯ୍ୟ, ସଂଯତ ପ୍ରେମ, ବିବାହ, ସମସ୍ୟା ଆଦି ମୋ ଗଳ୍ପର ପ୍ରଧାନ ଆଶ୍ରୟ । ତେଣୁ ଆଜିକାର ଏଯାତ୍ରା ପଥରେ ମୁଁ ମୋର ପ୍ରିୟ ଭାବନାର ନୌକା ସାହାଯ୍ୟରେ ଗଳ୍ପ ଲେଖାର ଆନନ୍ଦ—ନଦୀକୁ ଓ ଏହାର ଅମଳ ମନ୍ଦାକିନୀ ଧାରାକୁ ପାରି ହେବାରେ ଲାଗିଥିଲି । ଅର୍ଥାତ୍ ମୋର ଗଳ୍ପ ସଂପର୍କରେ ହିଁ ଭାବୁଥିଲି । ପୁଣି ଭାବୁଥିଲି ଏଥର ଘରକୁ ଗଲେ ଯେଉଁ ନୂଆ ଗପଟି ମୋ ହାତରେ ସଜୀବ ହେବ ତାହାର ପ୍ରସ୍ତୁତ ମୁଁ କାହାକୁ ନେଇ କରିବି ? କିଏ ହେବ ମୋ ଗଳ୍ପର ନୂଆ ନାୟକ ଏବଂ କିପରି ହେବ ତା'ର କଥାବସ୍ତୁ ?

ଭାବି ଚାଲିଥିଲି ଅନେକ କିନ୍ତୁ କୌଣସି ଉପକ୍ରମଣିକାରେ ପହଞ୍ଚିପାରିଲି ନାହିଁ । ସମ୍ଭବତଃ ମୋ ଗଳ୍ପର ନବ ନାୟକ ଏବଂ ନୂଆଗଠନ ମୋ ମାନସ ରାଇଜକୁ ଆସି ନଥିଲେ କି କଅଣ ? ତେଣୁ ଉପକ୍ରମଣିକା ଆସିବ ସତରେ କେମିତି ? ଉପକ୍ରମଣିକା ପରେ ଯାଇ ଉପସଂହାର ।

"କେତୋଟି ଷ୍ଟେସନ ଗଲା ?" ବନ୍ଧୁ ଦେଇଥିବା ଲୋକଙ୍କୁ ପଚାରିଲି । "ଗୋଟେ ।" "ମାନେ ଲେଇସିଙ୍ଗା ଆସିବ ।" "ହଁ, ଜଣାଯାଉଛି ଆପଣ ପଢ଼ାରେ ମଜ୍ଜି ଗଲେଣି ।"

"ପୁରା ମଜ୍ଜିନ ଯେ କିନ୍ତୁ ମଜ୍ଜି ଯାଉଛୁ କାଣ୍ଡରୁ ।" "ଏକାକଥା ।" କଥାରେ ଲଥା ମିଶାଇ କହିବାପରି କହିଲି—କାମନେଇ ବ୍ୟସ୍ତ ଅଛିବୋଲି ।

କିଛି ସମୟ ନୀରବତାରେ କଟିଗଲା । ସେ ପଢ଼ୁଥିଲେ । ମୁଁ ବି ପଢ଼ା······ମାନେ ଭାବନାର ପଠନ କରୁଥିଲି । ତାହା ନୁହେଁ ବନ୍ଧୁର ରୂପର ଅଧ୍ୟୟନ ଓ ତାର ଅର୍ଥର ପାଠପଢ଼ା । ନୀରବତା ଭାଙ୍ଗିଲେ ସେ । ପଚାରିଲେ—"ଆପଣ ମୋର କଥା ଶୁଣି ନିଶ୍ଚୟ ଖରାପ ଭାବିଥିବେ ବୋଧେ । କାହିଁକନା ଆପଣଙ୍କ ବସିବାରେ ମୁଁ ଆଘାତ ଦେଲି, କହିଲି ପଢ଼ିବାକୁ । ହେଲେ ଏହା ଭିତରେ ଏକ ରହସ୍ୟ ଅଛି ।" "ରହସ୍ୟ !" —ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

"ହଁ ରହସ୍ୟ ! ପଢ଼ିନଥିଲି ବୋଲି ଆଜ ମୋର ଏ ଅବସ୍ଥା । ଅବଶ୍ୟ ସଂପୂର୍ଣ୍ଣ ମୂର୍ଖ ନୁହିଁ । ମୁଁ ଜଣେ ଗ୍ରାଜୁଏଟ୍ । ନଚେତ୍ ଏ ଇଂରାଜୀ ବନ୍ଧୁ ମୋ

ପାଖରେ ଆସନ୍ତା କୁଆଡ଼ୁ ।” “ହଁ ତ ସେଇଆ ଷ୍ଟକୁଛୁ । ପଢ଼ିନାହାନ୍ତି ଅଥଚ ଏ ଇଂରାଜୀ ମାଗାଜିନ୍ ହାତରେ ଧରିଛନ୍ତି ?”

“ପଢ଼ିଛି । ହେଲେ ତୋର ଧରଣର ପଢ଼ିଥିଲେ ମୋର ଜୀବନରେ ଉନ୍ନତି ହୋଇଥାନ୍ତା, ଠିକ୍ ସେପରି ପଢ଼ିନି ।”

“ତେବେ କି ପ୍ରକାର ପଢ଼ିବାକୁ ଆପଣ ପଢ଼ିବା ବୋଲି ଭାବନ୍ତି ?”

“କହୁଛି ଶୁଣିଯାଉ ଖାଲି । କଥା ମଝିରେ disturb କଲେ ବା ବାଧା ଦେଲେ ମୋର କଥା ବାହାରେ ନାହିଁ ।”

“ଆଚ୍ଛା ହେଲା ଏବେ, ଖାଲି ଶୁଣିଯିବି । ବାଧା ଦେବନାହିଁ କଥା ମଝିରେ ।”

“ମଣିଷ ଜୀବନରେ ଶିକ୍ଷା ଏକ ଗୁରୁତ୍ୱ ପୂର୍ଣ୍ଣ ବଗ୍ରହ ଅଧ୍ୟାୟ; ଯାହାର କ ଶେଷ ନାହିଁ । ମଣିଷର ମୁଖ୍ୟରେ ତା’ର ଶିକ୍ଷାର ବ ମୁଖ୍ୟ ହୋଇଯାଏ, ଏହା ଜାଣିଛୁ । କିନ୍ତୁ ପିଲା ବେଳରୁ ବି. ଏ. ପାସ୍ ପର୍ଯ୍ୟନ୍ତ ତାହାର ଅପମାନ, ପ୍ରତି ପଦକ୍ଷେପରେ ମୁଁ କରି ଆସିଛି । ଏବେ ଟିକେ ଟିକେ ପଡ଼ାରେ ମନ ଦେଇଛି ଜାଣନ୍ତୁ । ଏଇ ପାଠ ପାଇଁ କମ୍ ମାଡ଼ ଖାଇଛି ! ବୁଦ୍ଧି ଥିଲା; କିନ୍ତୁ ବଦ୍‌ଖିଆଲରେ ତାହା ବେଶୀ ମୋ’ ଠାରେ ଦେଖାଯାଏ । ସେଥିକି ଯଥ ପାଠରେ ଆନ୍ତା ମୁଁ ଗଡ଼ ଜିତଥାନ୍ତି । ପିଲା ବେଳରୁ ଫେଲ ହୋଇ ହୋଇ I. A. ପର୍ଯ୍ୟନ୍ତ ଆସିଲି । ଥରେ ଫେଲ ହେଲେ ମାନେ କମ୍ ସେ କମ୍ ଦୁଇ ବର୍ଷ ଏକ କ୍ଲାସରେ ରହୁଯାଏ । କେବେ ଏକ ବିଷୟରେ ଫେଲ୍ ହେଲେ ଆଉ ବିଷୟରେ ପାସ୍ କରେ miserable ମାର୍କ ରଖିକରି । ତା’ଆର ବର୍ଷକୁ ଯେଉଁଥିରେ କମ୍ ମାର୍କ ରଖିଥିଲି ସେଥିରେ ଫେଲ ହୋଇ ଯାଏ ଅର୍ଥାତ୍ ଥରକୁ ପାସ୍, ଆଉଥରକୁ ଫେଲ ହୋଇ ସଂପୂର୍ଣ୍ଣ ବର୍ଷଟି ବରବାଦ୍ ହୋଇଯାଏ ।

ଏମିତି ହୋଇ ମେଟ୍ରିକ ଯଥା ତଥା ପାସ୍ କଲି । ବାପା କହିଲେ—“ମୂର୍ଖଟା ହାତରେ ପାଠହେବନି ଆଉ । ଦୋକାନ ଖୋଲି ଦେଉଛୁ ବସୁ ହେଲେ ଦୁ’ ପଇସା ଭେଇବ ।”

ମାଆ କହିଲା—“ଭୁଲାଙ୍ଗାରଟା ତରେ କୁଟା ଖଣ୍ଡେ ମଧ ଉଠେଣ୍ଟି ହେବନି । ଦୋକାନ ଦେଇଅସ୍ତ କରବ ଯେ, ହେଲେ ଭାବ ପାଉଛ ସେ ଠାକୁର ଖାଇ ଖଟୁଲିକୁ ମଧ ଶେଷ କରିଦେବ । ମିଛଟାରେ ପାଗଳ ହେଲଣି ଆଉ । ପାଠଟା ସିନା ହେଲାନି, ହେଲେ କୋଉ ବାଗବରଗ ତାଠି ଅଛି ! ବ୍ୟବହାର ଭଲ ଦେଖାଇଜାଣେ ନା ଖେଳ କୁଦରେ ନାମ କମେଇବାର ଶିକ୍ଷା

ଜାଣିଛି । ଏକଦମ୍ ଅପୋଗଣ୍ଡ,····· ବରଂ କଲେଜ ପଢ଼ । ପାଖରେ ଅଛି ତ କୋଉ ଦୂରକୁ ଯାଉନ ଯେ ପଇସା ଉଡ଼େଇବ !"

ବାପାଙ୍କର ଅର୍ଥ ବଳଯୋଗ ତଥା ବୋଉର ନିର୍ଦ୍ଦେଶରେ କଲେଜ ଦୁଆର ମାଡ଼ିଲି । ସେଇ ପୁନଶ୍ଚ ଫେଲ ରୋଗରେ ଆକ୍ରାନ୍ତ ହୋଇ ଦୁଇ ଥରରେ I. A. ପାସ୍ ଏବଂ ଶେଷରେ B. A. ଉତ୍ତୀର୍ଣ୍ଣ । ଯୋଉ ବୁଦ୍ଧି ଟା ଚଗଲମିରେ ପ୍ରୟୋଗ ହେଉଥିଲା; ତାହା ଏତେବେଳେକୁ ମୋ ବୁଝିବାରେ ବୁଦ୍ଧି ନୁହେଁ ବରଂ ମୂର୍ଖାମୀ ବା ବୁଦ୍ଧିର ବିପରୀତ ଶବ୍ଦ; ଯାହା ଆପଣ ବୁଝୁଛନ୍ତି ସେଇଟା । ଯଦି ମୋଠି ବୁଦ୍ଧି ଥାନ୍ତା ତେବେ ଭଲରେ ପଢ଼ି ଭଲରେ ପାସ୍ କରିଥାନ୍ତି । ମୋର ସାଙ୍ଗମାନଙ୍କ ମଧ୍ୟରୁ କେତେକ ଚାକିରୀ କଲେଣି । ଭଲ ପଢୁଥିଲେ ବି ସେମାନେ, ଅବଶ୍ୟ ସମସ୍ତେ ନୁହନ୍ତି—ଅଧିକାଂଶ । ଏବେ ବି. ଏ. ପାସ କଲିସିନା କୋଉ କାମକୁ ଲାଗିଲି ? ବୟସ ଗଡ଼ିଗଲା । ଚାକିରୀ କରି ପାରିଲି ନାହିଁ । ପୁଣି ଚାକିରୀ ପାଇଁ ଆଜିର ଯୁଗକୁ ଦେଖି ଯେଉଁ ପ୍ରକାର brain ଦରକାର ତାହା ମୋଠି ଶୂନ୍ୟ । ମନଦେଇ ପଢ଼ିଥିଲେ ଠିକ୍ ସମୟରେ ପାଶ କରିଥିଲେ ହୁଏତ ଚେଷ୍ଟାକରି ପାରିଥାନ୍ତି । ବର୍ତ୍ତମାନ ତା'ଠାରୁ ବି ଶୂନ୍ୟମନା ହୋଇ ଫେରିବାକୁ ପଡ଼ୁଛି । ନାମକୁ ଗ୍ରାଜୁଏଟ୍ ।

ନିମିତ୍ତ ମାତ୍ର ଶିକ୍ଷିତ । ଶେଷକୁ ବାପାଙ୍କ ଇଚ୍ଛାକୁ ବଳବତ୍ତର କରିବାକୁ ଯାଇ ବ୍ୟବସାୟରେ ପଶିଛି । ମା'ଙ୍କର ପରାମର୍ଶ ମାନିନି ମୁଁ; ମାନିଥିଲେ ବାପା । ଏବେ ବାପାଙ୍କର ଅନୁରୋଧ ମୋର ରକ୍ଷା କରିବା ଅନୁଚିତ ହେବ କେମିତି ? ତଥାପି ଏତିକି ଆଶ୍ୱାସନା ଯେ, କିଛି ଗୋଟାଏ କରି ବାହ୍ୟ ସାମାଜିକ ଶିକ୍ଷା ପାଉଛି । ବ୍ୟବସାୟଗତ ଶିକ୍ଷା ମିଳୁଛି । ପଇସାର ମୂଲ୍ୟ ଉପଲବ୍ଧିର ପାଠ ପଢ଼ୁଛି । ତା'ଛଡ଼ା ଏଇମିତିକା ବହୁପଢ଼ାର ଶିକ୍ଷା ପାଇ ଲିପିଗତ ଶିକ୍ଷା, ଶାସନଗତ ଶିକ୍ଷା ହାସଲ ପାଇଁ ଧୀରେ ଧୀରେ କଚ୍ଛପ ଗତିରେ କରୁଛି; ଠେକୁଆ ଗତିରେ ନକରି ! ଆଜି ମୁଁ ଅଧିକ ଭାବରେ ଶିକ୍ଷାପ୍ରେମୀ ହୋଇ ଉଠିଛି । ତେଣୁ କେତେବେଳେ ବି ବେକାର ବସିବାକୁ ଦେଉନି ନିଜକୁ, ନିଜ ମନକୁ ତଥା ମାନସିକତାକୁ । ସୁତରାଂ ଆପଣଙ୍କୁ ବେକାର ବସିଥିବାର ଦେଖି ମୋ ମନରେ ଛନକା ଆସିଗଲା, ମନେ ପଡ଼ିଲା ଅତୀତ । ତେଣୁ ଭାବ ଉଠିଲା ଏହି ଶିକ୍ଷା ନଥିବା ହେତୁ ଆଜିମୋର ଏଦଶା । ସମୟର ମୂଲ୍ୟ ନବୁଝି ଥିବାରୁ ସମସ୍ତ ମତେ ନାକରେ କହାଇ ଘୂରଉଛି । ବର୍ତ୍ତମାନ ସମୟ କାନ୍ଦୁଛି ନିଜେ । ହେଲେ ସେ କାନ୍ଦରେ ଥିବା ଉତପ୍ତ ଅଶ୍ରୁ ମୋର ଅଭିଶାପ ପାଇବାର ବାଟ ଖୋଲି ଦେଇଛି ଏମିତି ଯେ, ମୁଁ ପାଠ ପଢ଼ି ଅକର୍ମୀ । ବ୍ୟବସାୟ କଅଣ ଚାକିରୀର ସ୍ୱାଦ ଆଣିଦେଇ ପାରିବ, ନା ସମାଜରେ ସାମାଜିକ ସମ୍ମାନ

ବଢ଼ାଇବ । ଏହି ବ୍ୟବସାୟ ପାଇଁ ଆଜ ମୋର ସାଙ୍ଗ ଗ୍ରନ୍ଥକାରଙ୍କୁ ମଧ୍ୟ ମୁଁ ସାଲ୍ୟୁଟ୍ ଦେଉଛି । ଯେତେବେଳେ ସେ ସାଙ୍ଗଥିଲେ କିନ୍ତୁ ଏତେବେଳେ ସେ ସେ ମୋର ସାର୍ ! ନ କହିଲେ ନାହିଁ । ......ଆପଣ ବି ପଢନ୍ତୁ । ବେକାର ବସନ୍ତୁ ନାହିଁ । ସମସ୍ତ କମ୍, ତେଣୁ ଯାହା ସମସ୍ତ କାହିଁକି ଅବା ନିଷ୍ଫଳରେ ଯିବ, ତାର କିଛିଟା ଉପଯୋଗୀତା ଅଛି । ହୁଏତ ସେ ଶିକ୍ଷାରେ ଜୀବନର ମାନ କିଛି ଆଗକୁ ବଢ଼ିଯାଇପାରେ; କିଏ କହିବ ! ତେଣୁ ମୋର ଅନୁରୋଧ ଆପଣ ବହି ପଢ଼ା ଅଭ୍ୟାସ କରନ୍ତୁ । ସେ ଯାହାରେ ହେଉ ଏ ବସିବାରେ । ସେ ଅପରାହ୍ନର ହେଉକି ବା ଶୋଇବା ସମୟରେ ହେଉ । ଯେତେବେଳେ ଖାଲି ସମସ୍ତ ପାଉଛନ୍ତି—କେବଳ ପଢ଼ିଯାଆନ୍ତୁ ଧୈର୍ଯ୍ୟଧରି । ସମାଜ ଓ ସଂସାରର ବିରାଟ ଚିତ୍ର ସେଇ ଲିପିମାନଙ୍କରେ ଆପଣ ଦେଖିବାକୁ ପାଇବେ; ଯେଉଁକି ପାଇବେ ନାହିଁ କାହାଠାରୁ ଶୁଣିବାରେ ଅବା ବେକାର ବସି ଭାବିବାରେ । ଅନୁଭୂତ କଥାଟି ଅଲଗା, ଯଦି ଆପଣଙ୍କ ବସିବାରେ ମୁଁ ବାଧା ଦେଇ ଭୁଲ୍ କରିଛି ବୋଲି ଆପଣ ଭାବୁ ଥାଆନ୍ତି; ତେବେ ମୁଁ କ୍ଷମାପ୍ରାର୍ଥୀ ହୋଇ ରହୁଛି—ଶ୍ରୀ ନିର୍ମଳ ପଟ୍ଟନାୟକ ।"

ମୁଁ ତାଙ୍କ କଥାରେ ହତବାକ୍ ହୋଇ ଜଡ଼ ପାଲଟି ଯାଇଥିଲି । କଅଣ ଓ କେମିତି ଢଙ୍ଗରେ କହି ମୁଁ ତାଙ୍କର କୃତଜ୍ଞତା ସ୍ୱୀକାର କରିବି ଭାବିପାରି ନଥିଲି । କଥାର ଖେଳରେ ଓ ତାହାର ମହାନତାରେ ସେ ମତେ—ମାନେ ମୋର ପାଟିକୁ ସିଲେଇ କରି ଦେଇଥିଲେ କହିବା ଶୈଳୀର ସ୍ୱତାରେ । ତଥାପି ବି ଚେଷ୍ଟା କରୁଥିଲି, କାଳେ ଏହି ସୁଯୋଗକୁ ଛାଡ଼ିବି ନାହିଁ ସମ୍ମାନ ନଜଣାଇ । କିନ୍ତୁ ହାୟ ! ସମସ୍ତ ବଡ଼ ବଳବାନ ସତେ ! ନିର୍ଜୀବ ଟ୍ରେନ୍‌ଟି ଯେତେବେଳେ ସଜୀବ ହୋଇ ହଠାତ୍ କୋଇଲା, ପାଣି, ଡିଜେଲ ଓ ଗୃହକର ସାହାଯ୍ୟ ପାଇ ତାହା ମଧ୍ୟ ସମୟଠାରୁ ବଳିକି ଅତିଶୀ ନିଷ୍ଠୁର । ତେଣୁ ସେ ତାଙ୍କ ଓହ୍ଲାଇବାର ଷ୍ଟେସନ ପହଞ୍ଚାଇ ଦେଇଥିଲା । ସେ ମୋ ଠାରୁ ବିଦାୟ ନେଇଥିଲେ ସମ୍ଭବତଃ ଶତ୍ରୁଦନ ପାଇଁ । ସେ ମତେ ଦେଲେ ଶିକ୍ଷାର ମୂଲ୍ୟବୋଧ, ପରନ୍ତୁ ମୁଁ ତାଙ୍କୁ କଅଣ ଦେଲି ? ଏତେ ସମସ୍ତ ଧରି ସେ, କଥାର ଛଳରେ ମତେ ଜୀବନର ଶିକ୍ଷା ଦେଲେ । ଶିକ୍ଷା ଦେଲେ ତାଙ୍କ ପାଠ ପଢ଼ାର । ଶିକ୍ଷାରେ କହିଲେ ମଣିଷର ବ୍ୟବହାର । ଶିକ୍ଷା ଆହୁରି ଦେଲେ ବେକାର ନବସି ସମୟର ଉପଯୋଗ କରିବାର । ଶିକ୍ଷାରେ ଶିକ୍ଷାର ସ୍ଥିତି ସଂପର୍କରେ ପାଠ ପଢାଇଲେ ମତେ । ସର୍ବୋପରି ଏସବୁର ଶିକ୍ଷା ସହିତ, ଶିକ୍ଷିତ କରାଇଲେ ମୋ ଲେଖାର ମାତ୍ରାକୁ ଅଳ୍ପ ସାମାନ୍ୟ ଊର୍ଦ୍ଧ୍ୱୀସ୍ଥିତ କରିବାର ପ୍ରଚ୍ଛନ୍ନ ନିର୍ଦ୍ଦେଶ ଦେଇ ।

କିନ୍ତୁ ସତରେ ମୁଁ କେତେ ମୂଢ଼ ! ଅକାରଣରେ ତାଙ୍କ ଉପରେ ବିରକ୍ତ ହୋଇଥିଲି । ଅଜ୍ଞାନ, ଅଶିକ୍ଷିତ ମଣିଷ ଏତେ ଚଞ୍ଚଳ ହୋଇଉଠେ କାହିଁକି ?

ନିଜକୁ ନିଜେ ତାଙ୍କ ଅନୁପସ୍ଥିତିରେ କହି ଉଠିଲି—"ଭଗବାନ୍ ! ନିର୍ମଳ କପଶ ସଦା ନିର୍ମଳ ରହନ୍ତୁ । ତାଙ୍କର ଜୀବନ—ପୋଷାକ୍ ଯେପରି ଅନିର୍ମଳତାରେ ଭରି ନଉଠେ ।"

ଟ୍ରେନ୍‌ର ଗଡ଼-ଶବ୍ଦରେ ତାହା ଭିତର ଯାତ୍ରୀମାନଙ୍କୁ ଶୁଣାଯାଇନଥିଲା ବୋଧେ । □

□ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା-୭୬୮୦୧୯



# ଗଳ୍ପ : ମାଗୁର ମାଛର ଝୋଳ

ଶଶି ରଥ

ମୁଁ ଶେଯରୁ ଉଠିବା ବେଳକୁ ବାପା ପ୍ରାୟ ଘରେ ନଥାନ୍ତି । ସେତେବେଳକୁ ଘଣ୍ଟା କଣ୍ଟା ସାତ ଉପରକୁ ଘୁରି ଯାଇଥାଏ । ପୃଥିବୀ ସାରା ବିଛେଇ ପଡ଼ିଥାଏ ଖବର । ବାବୁ ବହି ଖଣ୍ଡିଏ ଧରି ପଢ଼ା ଟେବୁଲ ପାଖରେ ବସିଥାଏ । ବୋଉ ଅଗଣାରେ ଆଁଷ ଧରିଥାଏ ଏବଂ ଲିଲି କିଛୁନା କିଛୁ ଘର କାମରେ ବ୍ୟସ୍ତଥାଏ । ଆମେ ନିତ୍ୟ କର୍ମ ସାରି ଟି କପ୍ ଟିଏ ଧରି ବସିଯାଉ । ନାନା ବିଷୟରେ ଆଲୋଚନା କରୁ । ଅଯଥା ଆଲୋଚନା, ଯାହାର କୌଣସି ମୂଲ୍ୟ ନଥାଏ । ମୋଟା ମୋଟି ଏଇଟା ଥାଏ ଆମ ଘରେ ସକାଳର ଦୃଶ୍ୟ । ସେତିକବେଳେ ବାପା ଫେରନ୍ତି ବଜାରରୁ । ବସ୍ତୁର ଭାରରେ ନଇଁପଡ଼ିଥାଏ ତାଙ୍କ ଦେହ । ଦାରିଦ୍ର୍ୟ ଭାରରେ ନଇଁପଡ଼ିଥାଏ ବିଷର୍ଣ୍ଣ ମନ । ସଂସାର ବୋଝ ବୋହି ବୋହି ସତେ ଯେମିତି ସେ କୁଜା ପାଲଟି ଯାଇଛନ୍ତି । କେଉଁଦିନ ତାଙ୍କ ହାତରେ ଝୁଲୁଥାଏ ପରିବା ବ୍ୟାଗ୍ ତ କେଉଁଦିନ ଝୁଲୁଥାଏ ମାଛ ବନ୍ଧାହୋଇଥିବା ପନ ପୁଡ଼ିଆଟେ । ଅଧିକାଂଶ ଦିନ ବାପା ମାଛ ଆଣନ୍ତି ଏବଂ ନିଜକୁ ସଫେଇଦେଇ କହନ୍ତି : ମାଛରେ କମ୍ ଖର୍ଚ୍ଚ । ଯଦି ମାଛ ଟିକିଏ ହୁଏ ତେବେ ଡାଲି ପରିବା କିଛି ଦରକାର ହେବନି । ଆଜିକାଲି ଡାଲି ପରିବାର ଯାହା ଦାମ୍ ହେଲଣି ମଣିଷ ଆଉ କ'ଣ କରିପାରେ ? ଏମିତି ଅଳ୍ପ ପାଣିରେ କାମ ଚଳେଇ ଦେବା ଭଲ । ନିଜ ପାରିବାର ପଣିଅର ଆତ୍ମସନ୍ତୋଷରେ ବାପାଙ୍କ ଛାତି ଫୁଲିଉଠେ ।

ସେଦିନ ମୁଁ ଶେଯରୁ ଉଠିଥିଲି ସକାଳ ସାତଟାରେ । ପ୍ରାତଃ ନିତ୍ୟକର୍ମ ସାରି ଟି କପ୍ ଧରି ବସି ଦୁଇ ଭାଇ ଆଳାପ ଆଲୋଚନାରେ ମଜ୍ଜି ଯାଇଥିଲୁ । ବାପା ଫେରିଲେ । ଘର ଭିତରେ ଥାଇ ବାପାଙ୍କ ଫେରିବାଟା ଆମେ ଜାଣିଲୁ ବାପାଙ୍କ ପାଦର ପ୍ଲାଷ୍ଟିକ୍ ଚପଲର ଫଟଫଟ ଶବ୍ଦରୁ । ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲୁ, ଆଜି ବଜାରରୁ କଣ ଆସିଛି ? ଡାଲି ।, ପରିବା ନା ମାଛ ? ବାପା କେଉଁଠି ନଅଟକି ସିଧା ଚାଲିଗଲେ ଅଗଣାକୁ । ବ୍ୟାଗ୍ ଟାକୁ ପକେଇ ଦେଇ ଡାକ ପକେଇଲେ : ଲିଲି, ଆଲୋ ଲିଲି : ଏ ମାଛ କାଟ । ଯଦି ଜଣେ ଏଠି ନରହେ, ତେବେ ଭୂଆଁଟା ଛକି ବସିଛି । ଝାମ୍ପିନେବ । ମଜା ବାସନ ଧରି ଫେରୁଥିଲା ଲିଲି । କହିଲା : ବାସନ ଥୋଇଦେଇ ଯାଉଛି ।

ଭଲ ଆସିଲା । ବାପା ହାତ ଦୁଇଟା ତା ଆଡ଼କୁ ବଢ଼େଇଦେଲେ । ଭଲ ପାଣିଗଡ଼େଇଲା । ଆଉଁସ ଖାଁଡ଼ିଟା ମକ୍‌ଚ ଧୋଇ ଧୋଇ ବାପା କହିଲେ : ବୁଝିଲ ଆଜ ମାଗୁର ମାଛ ଆଣିଛି । ଜିଅନ୍ତା ମାଗୁର । ଖୁବ୍ ଶସ୍ତାରେ ମିଳିଲା । କିଲକୁ ମାତ୍ର ଆଠଟଙ୍କା । ଆଜିକାଲି ମାଛର ଯାହା ରେଟ୍ ; ବାପରେ ବାପ୍ ! ରୋହି ଭାକୁଡ଼ ଆମ ପାଇଁ ସ୍ୱପ୍ନ । ମାଗୁରଟାବି କିଛି ଖରାପ ମାଛ ନୁହେଁ । କଥାରେ ଅଛି ପରା, ମାଗୁର ମାଛର ଝୋଳ, ବେଟା ହଣଆ ହଣଆ ବୋଲ୍ ! ଆତ୍ମସନ୍ତୋଷରେ ବାପା ହସିଉଠିଲେ । ବୋଉ ବାପାଙ୍କ ହାତକୁ ଚା କପ୍‌ଟା ବଢ଼େଇଦେଲା । ବୋଉ ହାତରୁ ଚା କପ୍ ନେଇ ନେଇ ବାପା କହିଲେ : ଟିକେ ଆମ୍ବୁଲ ପକେଇ ରାନ୍ଧିବ ଯେ ଝୋଳଟା ଭଲ ଲାଗିବ । ମାଗୁର ମାଛ ପରା ରୋଗୀର ପଥ୍ୟ । ଡାକ୍ତରମାନେ ମାଗୁର ମାଛ ଖାଇବାକୁ ପରାମର୍ଶ ଦିଅନ୍ତି । ଏତିକବେଳେ ବାବୁ ଉଚ୍ଚରେ ହସିଉଠିଲା । ବାପାଙ୍କ ଉପହାସ କଳ୍ପନା ଏବଂ ଏକ ବ୍ୟଙ୍ଗଭରା ଶ୍ଳେଷ କଣ୍ଠରେ ପଚାରିଲା : ଭାଇ, ମାଗୁର ଗୋଟେ କି ମାଛ କହେ ?

ମୁଁ କହିଲି : ପୋଖରୀର ପଙ୍କ ଭିତରେ ଥାଏ । ଦେଖିବାକୁ କାଳିଆ ଦିଶେ । ଦୁଇଟା ଶିଙ୍ଗ ଥାଏ । ବି ଗଣ୍ଡା ଦଣଥାଏ । ମାଛ ସମାଜରେ ସେମାନେ ନିଗ୍ରୋ । ବାବୁ ଅଧିକ ଜୋରରେ ହସିଉଠିଲା : ହେଉ, ସେଇଟା କଣ ଗୋଟେ ମାଛରେ ଲେଖା ନା ତାକୁ ମଣିଷ ଖାଏ । ଖାଉଥିଲେ ଖାଉଥିବ ପଙ୍କରେ ଲଟେଇ ପଟେଇ ହେଉଥିବା ଘୃଣ୍ୟ ଜୀବ ।

: ରୋଗୀବି ପଥ୍ୟକରେ । ମୁଁ କହିଲି,

: ଆମେତ କେହି ମେଲେରିଆ ରୋଗୀ ନୁହଁ ।

ବାବୁର ଏଇ କଥା ପଦକ ଯେମିତି ବାପାଙ୍କ ଦେହରେ ନିଆଁ ଟେକି-ଦେଲା । ବାପା ପାଲଟି ଗଲେ ନିଆଁବାଣ । ଅଗ୍ନିଶର୍ମା । ତୁମ୍ କଣ ଚା କପ୍‌ଟା ଥୋଇଦେଲେ । କପ୍ ଭିତରେ ଚା ଚହଲି ଉଠି ଆମକୁ ଜଣାଇଦେଲା ଯେ ବାପାଙ୍କ ମଗଜଟା ବି ଚହଲିଗଲା । ବାପା ଆମ ପାଖକୁ ଚମକି ଆସିଲେ । ସେଥିକୁ ବାବୁର ଖାତିର ନଥିଲା । ଜଳନ୍ତା ନିଆଁକୁ ଘିଅ ଢାଳିବା ପରି ବାବୁ କହିଉଠିଲା : ମାଛ ଖାଇବତ ଇଲିସି ରୁକଣ୍ଡ କଣବତ ପୋଲିସ । ହେଉ, ନିଗ୍ରୋ ଜାତୀୟ ମାଛ ଖାଇବ ?

କ୍ରୋଧରେ ବାପାଙ୍କ ବସନ୍ତ ମୁହଁରୁ ଶିରା ଗୁଡ଼ାକ ଫୁଲିଉଠିଲା । ହାତ ମୁଠା ହୋଇ ନାଚି ହୋଇଗଲା । ନାକ ପୁଡ଼ା ଫୁଲିଉଠିଲା । ନାକରୁ ନିର୍ଗତ ହେଲା ତତଲା ନିଶ୍ୱାସ । ଶୀର୍ଣ୍ଣ ହାତର ଶିରା ଗୁଡ଼ାକ ଟାଣିହୋଇ ଯାଉଥାନ୍ତି । ବାପା ଛାତି ଯାଉଥିଲେ ଏବଂ ଆଖି ବିସ୍ଫାରିତ ହୋଇ-

ଯାଉଥିଲା । ସତେ ଯେମିତି ବାପାଙ୍କ ପେଟ ଶିଘ୍ର ବୃଦ୍ଧି ହୋଇ ଯାଉଥିଲା । ଏଇ ଟିକିଏ ପରେ ଯେମିତି ବାପା ଫାଟିଯିବେ । ସତକୁ ସତ ତତ୍‌କ୍ଷଣାତ୍ ପରମାଣୁ ବୋମା ପରି ବାପାଙ୍କର ବିସ୍ଫୋରଣ ହେଲା । ଘର ସାରା ବିଚ୍ଛେଇ ହୋଇପଡ଼ିଲା କ୍ରୋଧର ଶବ୍ଦ ଗୁଡ଼ିକ । ବାପାଙ୍କ କ୍ରୋଧାଗ୍ନିରେ ଘରଟା ତାତିଉଠିଲା । ବାପା ଚିତ୍କାର କରି ଉଠିଲେ ଯାଅ, ଗୁଳିଯାଅ' ନଖାଅ। ଯୋଗ୍ୟବନ୍ତ ଲକ୍ଷେ ରୋଜଗାରିଆ ପୁଅତ ମାଗୁର ମାଛ ଖାଇବେନ । ଫୁଟାଣି ଦେଖାଇ କଥା କହୁଛ ଯେ କେତେ ରୋଜଗାର କରି ଘରକୁ ଆଣୁଛମ ? ବାବୁ ସକାଳେ ଶେଯରୁ ଉଠିବେ ସାତଟାରେ, ସେଥିରେ ଫୁଟାଣି ଦେଖାଇବେ । ବାପାଙ୍କର ଏଇ କଥା ଗୁଡ଼ାକ ମୋତେ ଓ ବାବୁକୁ ଉତ୍ତେଜିତ କରୁଥିଲା । ମୋର ମନେହେଲା, ବାପା ଏଇ କଥା ଗୁଡାକ ମୋତେ ଲକ୍ଷ୍ୟ କରି କହୁଛନ୍ତି । ମୋ ନପାରିଲା ପଣକୁ ଥୁଣ୍ଟା ଦେଉଛନ୍ତି । ବାପା ଯାହା କହୁଛନ୍ତି ତାହା କହିବା ଅନୁଚିତ୍ ଏବଂ ଅସହ୍ୟ । ତେଣୁ ସଙ୍ଗେ ସଙ୍ଗେ ମୁଁ ତାଳଦେଲି : ଆମେ ଲକ୍ଷେ ରୋଜଗାରିଅ ନହେଲେ, ତୁମେ କେଉଁ ଲକ୍ଷେ ରୋଜଗାରିଆ ଥିଲ ଯେ ?

: ଲକ୍ଷେ ବେକାରିଆ ନଥିଲେ, ଆମେ ବେକାର ନଥିଲୁ କି, ତୁଚ୍ଛାଟାରେ ଫୁଟାଣି କରୁନଥିଲୁ । ବାପା କହିଲେ ।

: ତୁମ ବେଳେ କେହି ପାଠ ପଢୁନଥିଲେ କି ଚାକିରି କରିବାକୁ ଚାହୁଁ ନଥିଲେ । ଆମ ଭାଗ୍ୟ ଖରାପ ଯେ ଦେଶ ସ୍ୱାଧୀନର ତିରିଶ ବର୍ଷ ପରେ ଆମେ ଚାକିରି ଖୋଜୁଛୁ ରୋବର୍ଟ ଓ କଂପ୍ୟୁଟର ଯୁଗରେ ।

ମୋ କଥା ଶୁଣି ବାପା ଛକେଇ କହିଲେ : ଆହାରେ ମୋ ପଣ୍ଡିତ ପୁଅ । ସଫେଇ ଶୁଣ ।

ବାବୁ କହିଲା : ତୁମ ପରି ବାପା ଥିଲେ ପୁଅ ପଣ୍ଡିତ ହେବ । ମଣିଷ ହେବ । ବାପା ଏଥର ଗର୍ଜି ଗର୍ଜି ଚିତ୍କାର କଲେ : କଣ କହିଲୁ ? କଣ ଭରିଲୁ ? ମୋ ପରି ବାପା ? କଣ ତୁମର ଅଭାବ କରିଛି ? କୃତଘ୍ନ ଗୁଡ଼ାକ । ଖିର ପୁରିରେ ଭସେଇ ଦେଇଥାନ୍ତି ଏମାନଙ୍କୁ ।

ମାସକେ ପଚିଶ ଦିନ ତ ଡାଲି ଦେଖାଉନ । ଆଉ ଖୀରପୁରି ? ବାବୁ କହି ପକାଇଲା ଉତ୍ତେଜନାରେ । ବାପାଙ୍କ ଦୁଃଖଟା କ୍ରୋଧରେ ପରିଣତ ହୋଇଯାଇଥିଲା । ବାପା ଚିତ୍କାର କରି ଉଠୁ ଉଠୁ ତାଙ୍କ ଆଖିରୁ ଲୁହ ଖସିପଡ଼ିଲା । ବୋଉ ବାପାଙ୍କୁ ଭିଡ଼ିନେଲା । ବାପା କହି ଚାଲିଥାନ୍ତି : ଦେଖ, ଦେଖ, କେତେ ଅଭାବ ଅସୁବିଧାରେ ନିଜ ପେଟକୁ କାଟି ଏମାନଙ୍କୁ ମଣିଷ କରୁଛୁ । ସେ ପୁଣି କହୁଛି, ତୁମ ପରି ବାପା ଥିଲେ । ନିଜେ ଟିସ

ଫଟା ପିନ୍ଧି ଏମାନଙ୍କୁ ଭଲ ପିନ୍ଧିବାକୁ ଦେଉଛୁ । ସେମାନଙ୍କ ପାଇଁ ସବୁ ଭଲ କରୁଛୁ । ବାପା ନିଜର ଚିରା ଲୁଗା ଦେଖାଉଥିଲେ । ମୋର ଝୋଲଣିଗ ବୃଦ୍ଧି ହୋଇଯାଉଛି । ଅଥଚ ଏମାନେ ଟିକେ ବୁଝୁନାହାନ୍ତି । ମୁଁ ଦସ୍ୟୁ ରତ୍ନାକର ପରି ମଣିଷ ହୋଇଥିଲେ ଏମାନେ ଗର୍ବ କରିଥାନ୍ତେ । କାରଣ ଘରେ ମୋର ତାଦ୍ୱାରା ଅର୍ଥ, ସୌଖୀନ୍ ଉପକରଣରେ ଅଭାବ ନଥାନ୍ତା । ସ୍କୁଲ ପଇସାରେ ବାବୁମାନେ ଆଭିଜାତ୍ୟ ଦେଖାଇଥାନ୍ତେ । ବୋଉ, ବାପାଙ୍କୁ ବାରଣ୍ଡା ଚଉକିରେ ବସାଇଦେଲା । ତା ପରେ ସବୁ ଚୁପ୍ ଚୁପ୍ । ନିରବ । ନିଥର । ଦୀର୍ଘ ସମୟ ଧରି ଝଡ ବୋହି ଗଲାପରେ ପୃଥିବୀ ଯେମିତି ଶାନ୍ତ, ଠିକ୍ ସେମିତି ହୋଇଗଲା ପରିବେଶ । ମୁଁ ଗୁମ୍ ମାରି ବସିଲି । ବାବୁ ବହି ଖୋଲି ବସିଲା । ବୋଉ ରୋଷେଇ ଘରେ କର୍ମ ବ୍ୟସ୍ତ । ଇଲି ମାଛ କେଳାଇଲା । ଯଦି କେହି ଆସି ଦେଖନ୍ତେ, ତେବେ ଆଦୌ ଜାଣିପାରିବେ ନାହିଁ' ଏଇ କିଛି ସମୟ ପୂର୍ବରୁ ଏ ଘରେ ଗୋଟେ ଝଡ ବୋହି ଖଣ୍ଡ ପ୍ରଳୟ ସୃଷ୍ଟି କରିଥିଲା ।

ବାପା ବାରଣ୍ଡା ଚଉକିରେ ବସି ରହିଲେ ଅନେକ ସମୟ । କୋଳ ଉପରେ ପଡ଼ିରହିଲା ଦୈନିକ "ସମାଜ" । ହାତରେ ଚଷମା । ଆଖିରେ ଲୁହ ଟଳମଳ । ଡୋଳା ଦୁଇଟି ପ୍ରଶାନ୍ତ ଆକାଶ ଉପରେ ସ୍ଥିର ।

ବାପା ଦୀର୍ଘ ପଇଁତିରିଶ ବର୍ଷ ଧରି ସରକାରୀ ଦପ୍ତରରେ କିରାଣୀରୁ ଆରମ୍ଭ କରି ସେକ୍ସନ ଅଫିସର ପର୍ଯ୍ୟନ୍ତ କାର୍ଯ୍ୟ କରି ଅବସର ନେଇଛନ୍ତି । ଦକ୍ଷ କାମିକା ବୋଲି ଅଧସ୍ତନ ମାନଙ୍କର ଯେତିକି ଭୟ, ଉଚ୍ଚ ପଦସ୍ଥ ମାନଙ୍କର ସେତିକି ପ୍ରଶଂସାର ପାତ୍ର । କିନ୍ତୁ ଆଜି ବ୍ରିଟିଶ ଅମଳର ସେହି ଦକ୍ଷ କର୍ମନିଷ୍ଠ ଜଣେ ଅସହାୟ ମଣିଷ । ଭାଙ୍ଗି ପଡ଼ିଥିବା ମଣିଷ । ସଂସାର ବୋଝକୁ ମୁଣ୍ଡେଇ ଝୁଲି ଝୁଲି ଝୁଣ୍ଟି ପଡ଼ୁଛନ୍ତି । ଖାସସେଥିପାଇଁ ସେହି ଦକ୍ଷ କର୍ମନିଷ୍ଠ, ଦାମ୍ଭିକ ପୁରୁଷ ଜଣକ ଆମ ଆଖି ଆଗରେ ପାଲଟି ଯାଇଛନ୍ତି ଜଣେ ଅଯୋଗ୍ୟ ଅପଦାର୍ଥ ନିର୍ବୋଧ ମଣିଷ । ଅପାରଗ ବାପା, କ'ଣ ପାଇଲେ ସେ ଏତେ ସଚ୍ଚୋଟ ହୋଇ ? ମୋଟା ଅଙ୍କର ଲାଞ୍ଚକୁ ଘୃଣାକରି ? ଭୌତିକ ସୁଖକୁ ପଦ ଦଳିତ କରି କି ମାନସିକ ସୁଖ ଶାନ୍ତି ସେ ପାଉଛନ୍ତି ? ସନ୍ତାନଙ୍କର ଅଭାବ ଅସୁବିଧା ଦେଖି ପିତୃହୃଦ ତାଙ୍କର କ'ଣ ହାହାକାର କରି ଉଠୁନି ? ତେଣୁ ଏମିତି ବେଳାରେ ତାଙ୍କ ପିତୃତ୍ୱର ଶାସନ ଆମକୁ ଅସହ୍ୟ ଓ ଅନୁଚିତ୍ ଲାଗେ ! ଫଳରେ ଆମେ ବାପାଙ୍କ ସାମ୍ନା ସାମ୍ନି ପ୍ରତିବାଦ କରୁ ଓ ବାପାଙ୍କ ଅପାରଗ ପଣିଆକୁ ତାଚ୍ଛଲ୍ୟ କରୁ । ଏପରିକି ଲାଞ୍ଚ ନେବାର ଦମ୍ଭ ଓ ସାହସ ବାପାଙ୍କର ନଥିବାରୁ ଆମେ ବାପାଙ୍କ

ଦୁର୍ବଳତାକୁ ମଧ୍ୟ ଧିକ୍କାର କରୁ । ବାପା ବି ଆମକୁ ଉଦ୍ଦେଶ୍ୟ କରି ବୋଉକୁ କହନ୍ତି : ଶୁଣୁଛ ଏମାନଙ୍କ କଥା ? ଆରେ ଏମାନେ କେମିତି ବୁଝିନାହାନ୍ତି କେଜାଣି ? କିନ୍ତୁ ମୁଁ ଦେଖୁଛି, ଯେଉଁମାନେ ଲାଞ୍ଚ ନେଉଛନ୍ତି ସେମାନଙ୍କ ସ୍ୱଭାବ ଅନୁସାରେ ସେମାନଙ୍କ ପିଲାମାନେ ବି ସେମିତି ସ୍ୱଭାବର ହେଉଛନ୍ତି । କିଏ ଛୁରୀମାରୁଛି ତ କିଏ ମଦ ପିଉଛି । ଏମିତିକି ଅନେକଙ୍କ କାର୍ଯ୍ୟକଳାପ ବିଷୟରେ କହିବା ଅନୁଚିତ । ଦେଖିଲି ବେଳକୁ ବାପା ଅଫିସରେ ଦସ୍ତଖତ କରିଦେବା ଦଶଟଙ୍କା ହଉ, ଫାଇଲ ପୁଟ ଅପ ପାଇଁ ପଚିଶ ହଉ, ବିଲ ପାଶ ପାଇଁ ଶହେ ହଉ ବୋଲି ହାତ ପାତି ଆଣିବେ ଆଉ ପିଲାଏ ହିରୋ ସାଜି ବୁଲିବେ । ମୋର ଝାଳବୁହା ଧନରେ ଖାଇ ପି ଏମାନେତ ଏପରି ହେଉଛନ୍ତି, ଲାଞ୍ଚ ପଇସା ଏମାନଙ୍କ ପେଟରେ ପଡ଼ିଲେ ଏମାନେ ଆଉ କଣ ନ ହେବେ ? ବାପାଙ୍କର ମନ୍ତବ୍ୟରେ ଆମେ ଚୁପ୍ ରହୁ । ଯେମିତି ଏହି ପଦ୍ଧତି ଚୁପ୍ କରିବାକୁ ବାପାଙ୍କର ଅମୋଘ ଅସ୍ତ୍ର । ସତକୁ ସତ ଲାଞ୍ଚତ ଦୂରର କଥା କାହାରି ଠାରୁ "କାମ କରିଦେବି" ବୋଲି ପ୍ରତି ବଦଳରେ ବାପା ଗୋଟେ କପେ ଚା ପାନ ଖିଲଟେ ଗ୍ରହଣ କରିନାହାନ୍ତି । କହିଲେ କହନ୍ତି ଏ କାମ ପାଇଁ ମୋତେ ଦେଶ ତ ଦରମା ଦେଉଛି । ବାସ ଏଇଥିଲା ବାପାଙ୍କର ଜୀବନ ଦର୍ଶନ । ଯାହା କଦାପି ଆମକୁ ପ୍ରଭାବିତ କରି ପାରୁନଥିଲା । ତାର କାରଣ ଥିଲା ଅନେକ କିଛି ।

ଦୀର୍ଘ ଚାକିରି ଜୀବନ ଭିତରେ ବାପା ଆଖି ଦେଖିପାରିବା ଭଳି କିଛି କରିପାରି ନାହାନ୍ତି । କାରଣ ଯାହା ରୋଜଗାର କରିଛନ୍ତି ତାହା, ପେଟ, ପିଠି ଓ ପିଲାଙ୍କ ପାଠକୁ ବି ନିଅଣ୍ଟ ହୋଇଛି । ଅଉ ଯାହା କିଛି କରିଛନ୍ତି ସେଥି ମଧ୍ୟରୁ ଆମେ ବାପାଙ୍କ ଅବସର ପରେ ରହୁଥିବା ଏଇ ଘର ଖଣ୍ଡିକ । ତାହା ପୁଣି ସରକାରଙ୍କ ନିମ୍ନ ଆୟକାରୀଙ୍କୁ ବାସଗୃହ ଯୋଜନା ଦ୍ୱାରା ରାଜ୍ୟ ହାଉସିଂ ବୋର୍ଡ଼ ଦ୍ୱାରା ନିର୍ମିତ ବାସଗୃହ । ନଚେତ୍ ସହରରେ ଆମ ପାଇଁ ବାସଗୃହ ଖଣ୍ଡିଏ ସାତ ସ୍ୱପ୍ନ ହୋଇଥାନ୍ତା । ଏହା ବ୍ୟତୀତ ବାଟ ଘରେ ପଡ଼ିଥିବା ଆମ୍ବ ପଟାର ଖଟ, ଦୁଇଟି ଚଉକି ଓ ଟେବୁଲ ବ୍ୟତୀତ ଅଉ କିଛି ବାପାଙ୍କ କୃତିତ୍ୱ ନାହିଁ । ଏପରିକି ଏ ଘରର କଂସାବାସନ, ଶୋଇବା ଘରର ପଲଙ୍କ ଓ ପୁରୁଣା ସାଇକେଲ ଝଣ୍ଡିକର ଯାହା ଫ୍ରେମ୍ ଓ ଫ୍ରୁର ଭଗ୍ନାବଶେଷ ଦେଖିବାକୁ ମିଳେ ତାହା ବୋଉ ଅଣିଥିବା ଯୌତୁକ ଅଟେ । ବାପାଙ୍କୁ ତାଙ୍କ ବାପାଙ୍କ ଉତ୍ତରାଧିକାରୀ ଭାବରେ କୌଣସି ସଂପତ୍ତି ମିଳିନଥିଲା । କାରଣ ତାହାକୁ କକେଇ କୁଟମାଡରେ ନିଜର କରିନେଇଥିଲେ । ବାପା ରାମଚନ୍ଦ୍ରଙ୍କ ପରି ଭାତୃ ବିବାଦରେ ଲିପ୍ତ ନ ହୋଇ ନୀରବ ରହିଥିଲେ ଏବଂ ବନବାସ ତୁଲ୍ୟ ଏଇ ଜୀବନକୁ ଆଦରି ନେଇଥିଲେ ।

ଅବସର ନେବା ଦିନକୁ ବାପାଙ୍କୁ ପ୍ରା. ଫି. ଏଫ୍ ଗ୍ରାଚୁଇଟ୍ ଆଦି କିଛି ମିଳିଥିଲା । ମୋର ଇଚ୍ଛା ଥିଲା ସେଇ ଟଙ୍କାରେ କିଛି ଗୋଟାଏ ବ୍ୟବସାୟ କରିବାକୁ । କିନ୍ତୁ ବାସଗୃହ ଯୋଜନାରୁ ଯେଉଁ ଘର ଖଣ୍ଡିକ ମିଳିଛି, ସେଥିପାଇଁ ସରକାର ବକେୟା ଚଉଦ ହଜାର ଟଙ୍କା କାଟିନେଲେ । ଅବଶିଷ୍ଟ ଟଙ୍କାରେ ଜୀବନବୀମା ଟଙ୍କା ମିଶାଇ ବାପା ପନ୍ଦରହଜାର ଟଙ୍କାର ଜାତୀୟ ସଞ୍ଚୟ ସାର୍ଟିଫିକେଟ୍‌ର ଷଷ୍ଠ ଇସ୍ୟୁ ଖଣ୍ଡିକ କିଣିନେଲେ । କାରଣ ତାଙ୍କ ଉଦ୍ଦେଶ୍ୟ ଅଟେ ଛଅ ବର୍ଷ ପରେ ସେହି ଟଙ୍କା ଦ୍ୱିଗୁଣ ହେବ ଏବଂ ସେହି ଟଙ୍କାରେ କାହାର ଉପରେ ନିର୍ଭର ନକରି ଇଲର ବାହାଘରଟା ସାରିଦେବେ । ବାପାଙ୍କର ଆମ ଉପରେ ବିଶ୍ୱାସ ନଥିଲା ଆଜିକାଲିକା ପିଲା ବୋଲି । ଏ ସବୁରେ ମୁଁ ହତାଶ ହୋଇପଡ଼ିଥିଲେ ବି ବାପାଙ୍କ ଦୂରଦୃଷ୍ଟିକୁ ବେଳେ ବେଳେ ତାରିଫ୍ କରେ । ନକରି ରହିପାରେ ନାହିଁ । ଅଣତିରିଶ ହଜାର ଖର୍ଚ୍ଚ ହେବା ପରେ ଆଉ କେତେ ବଳକା ରହିଲା ବା କେଉଁ ଉପାୟରେ ଖର୍ଚ୍ଚ ହେଲା, ତାର ହିସାବ ରଖିବାରେ ମୋର ଆଗ୍ରହ ନଥିଲା । ତେଣୁ ମୁଁ ବାଧ୍ୟ ହୋଇ ମୋର ମାସିକ ତିନିଶ ବେତନର ଚାକିରି ଖଣ୍ଡିକ ସର୍ବସ୍ୱ ଓ ସମ୍ବଳ କରିନେଲି ।

ବର୍ତ୍ତମାନ ବାପାଙ୍କର ପେନ୍‌ସନ୍ ଛଅ ଶହ ଟଙ୍କାରେ ମୋର ଦୁଇ ଶହ ଟଙ୍କା ମିଶି ଆମର ପାଞ୍ଚ ପ୍ରାଣୀର ସଂସାର ଚଳେ । ସେହି ଟଙ୍କାରେ ଡ଼ାଲି, ଚାଉଳ, ପରିବା, କାଠ ଅଛି । ବିଦ୍ୟୁତ୍ ଖର୍ଚ୍ଚ ଅଛି । ଜଣେ ବି.ଏସି ପଢ଼ୁଥିବା ପୁଅ ଓ ମାଟ୍ରିକ ପଢ଼ୁଥିବା ଝିଅର ପଢ଼ା ଖର୍ଚ୍ଚ ମଧ୍ୟ ତାର ଭିତରେ ଅନ୍ତର୍ଭୁକ୍ତ । ଖୁବ୍ କମ୍‌ରେ ଚଳିବାକୁ ହୁଏ । ମାସକେ ପଚିଶ ଦିନ ଆମକୁ ଡ଼ାଲି ମିଳେନା । ମାସକୁ ଥରେ ମାଂସ ହୁଏ । ତାହା ପୁଣି ଦୁଇ ଶହ ପଚିଶ ଗ୍ରାମକୁ ପାଞ୍ଚ ପ୍ରାଣୀ । ବେଳେବେଳେ ବୋଉ ଏମିତି ଦିନରେ ମାଂସତରକ ତିନି ଭାଇ ଭଉଣୀଙ୍କୁ ଦେଇ ନିଜେ କେବଳ ମାଂସ ଝୋଳ ଦେଇ ଭାତ ଖାଇ ଉଠିଯାଏ । ଏହିପରି ଘଟଣା ଆମ ପାଇଁ ଖୁବ୍ ଦୁଃଖଦ ଓ ଲଜ୍ଜାକର ହୋଇପଡ଼େ । ବୋଉ ପ୍ରତି ଗୋଟେ ମମତାବୋଧ ଓ ସହାନୁଭୂତି ଜନ୍ମେ । ଯେତେବେଳେ ଆମେ ଆମ ଘରର ଚତୁର୍ଦ୍ଦିଗରେ ଘେରିଥିବା ଘରମାନଙ୍କୁ ଦେଖୁ, ସେତେବେଳେ ସବୁରି ଘରର ଛାତ ଉପରେ ମଗର କଣ୍ଟା ପରି ଆଣ୍ଟେନା ଦେଖି, ଆମର ମନେହୁଏ ଯେମିତି ଅର୍ଦ୍ଧଜାତ ମଗର ମାଛ ସାଜି ଆମକୁ ଆକ୍ରମଣ କରିବାକୁ ଚତୁର୍ଦ୍ଦିଗରୁ ଉଦ୍ୟମ ଚଳାଇଛି । ସବୁରି ଘରେ ଟି.ଭି, ଟେପ୍, ହିଟର, ମଟରସାଇକେଲ୍ ଫ୍ରିଜ ଦେଖି ଆମ ଛାତି ଭିତରଟା ଅଭାବବୋଧରେ ଶୂନ୍ୟ ହୋଇଯାଏ । ହାହାକାର ପାଲଟିଯାଏ । କାରଣ ଏ ଭିତରେ ଆମେ ଓ ଆମ ଘର ଏକ ବ୍ୟତିକ୍ରମ । ରାଜପ୍ରାସାଦର ଭିକାରୀ କୁଟୀର

ଆମ ଘର । ଏହି କାରଣରୁ ଆମେ ବାପାଙ୍କୁ ପ୍ରତିବାଦ କରୁ । ବାପା ଗାଳି କରନ୍ତି । ପିତା ପୁତ୍ରଙ୍କ ମଧ୍ୟରେ ଉତ୍ତେଜନା ହୁଏ । ବୋଉ ଧାଇଁଆସି ଆମକୁ ଆକଟ କରେ, କାନ ଉଗଡେ । ବାପାଙ୍କୁ ଟାଣିନେଇ ବସେଇଦିଏ ବାରଣ୍ଡା ଚଉକିରେ ।

ବାପାଙ୍କ ଅବସରର ଅବ୍ୟବହିତ ପୂର୍ବରୁ ମୁଁ ମାସକୁ ଊଣେଇଶହ ଟଙ୍କା ଦରମାରେ ବେସରକାରୀ ସଂସ୍ଥାରେ ଚାକିରି ପାଇଯାଇଥିଲି । କିନ୍ତୁ ମୋ ଭିତରେ ଗୋଟିଏ ଦୁଃଖ ପ୍ରଚ୍ଛନ୍ନ ଭାବରେ ଥିଲା ଯେ, ମୁଁ ସମ୍ବଳ ଅଭାବରୁ M. Com. ପଢ଼ିପାରି ନଥିଲି । ସେଥିପାଇଁ ବାପାଙ୍କ ଉପରେ ମୋର କ୍ରୋଧଟା ବେଶି । ଅଥଚ ସେଇ ବାପା ମୋ ଠାରୁ ଅନେକ କିଛି ଆଶା କରନ୍ତି । ଇଣ୍ଟରଭ୍ୟୁ ପରେ ଅସଫଳତାକୁ ସେ ଥଟ୍ଟା କରନ୍ତି । ସେ ମୋର ବେସରକାରୀ ଚାକିରି ଉପରେ ଆସ୍ଥା ରଖନ୍ତି ନାହିଁ । ତାଙ୍କର ଅନେକ ବନ୍ଧୁଙ୍କ ପୁତ୍ରମାନଙ୍କ ଉଦାହରଣ ଦେଇ କହନ୍ତି : ଅମୁକ ସମୁକଠି ଚାକିରି ପାଇଲା ସମୁକ ଅମୁକ ଚାକିରି ପାଇଲା ! ବାପାଙ୍କର ଏଇ କଥା ଗୁଡ଼ାକ ମୋ ସର୍ବାଙ୍ଗରେ ଛୁଞ୍ଚି ଫୋଡ଼ିଦିଏ । ଭିତରେ ହାତୁଡ଼ି ପିଟେ । ଯେତେବେଳେ ସେ ଯନ୍ତ୍ରଣା ମୋର ଅସହ୍ୟ ହୁଏ, ସେତିକିବେଳେ ମୁଁ ପ୍ରତିବାଦ କରେ : ତୁମ ପରି ବାପା ଥିଲେ ପୁଅମାନେ ଶିକ୍ଷିତ ଓ ଯୋଗ୍ୟ ହୋଇପାରିବେ ନାଁ ଚାକିରି ପାଇପାରିବେ ? M-Com ଟାକ ପଢେଇ ପାରିଲନାହିଁ । ଯେଉଁମାନଙ୍କ କଥା କହୁଛ, ସେମାନେ କିଏ ମନ୍ତ୍ରୀଙ୍କ ଚାପ ପକାଇ, କିଏ ଲାଞ୍ଚ ଦେଇ ପୁଣି କିଏ ନିଜ ସ୍ଥାନରେ ପୁଅମାନଙ୍କୁ ଚାକିରିରେ ଭର୍ତ୍ତି କରିଦେଲେ । ତୁମେ ଏଥି ଭିତରୁ କଣଟା କରିଛ ? ନିଜ ମହଜୁ ନିଜ ସ୍ଥାନରେ ଟେଟାସୂର୍ତ୍ତ ପରେ ପୁଅକୁ ରଖିଦେଲେ । ସେତିକି କରିବା ପାଇଁ ତୁମର ସମ୍ମାନରେ ଆଞ୍ଚ ଆସିଲା । ବାପା ତୁମ୍ ମାରି ପ୍ରଥମେ ବସିପଡନ୍ତି । ତା' ପରେ କିଛି ସମୟ ପରେ ଅବସାଦ ଓ ଅବଶୋଷ ଭରା ସ୍ୱରରେ କହନ୍ତି : ତୁମେମାନେ ସଦାବେଳେ ଚାହିଁଲ ପରଗୋଡ଼ରେ ଛିଡ଼ାହେବାକୁ । ତୁମେ ରୋଜଗାର କରି ଆମକୁ ପୋଷିବା ଦରକାର ନାହିଁ । ନିଜ ଭବିଷ୍ୟତ ଦେଖ । ତୁମରି ଭବିଷ୍ୟତ ପାଇଁ ମୁଁ ଭାବୁଛି । ନଚେତ୍ ମୋ ପେନସନ୍ ଟଙ୍କା ଆମ ବୁଢ଼ା ବୁଢ଼ୀ ଦିହିଁଙ୍କୁ ଯଥେଷ୍ଟ । ତମରି ପାଇଁ ଖାଲି ଯାହା ହନ୍ତସନ୍ତ । ମନ ସଙ୍କୁଳ ହୋଇଯାଉଛି । ହେ ଭଗବାନ ! ବାପା ଗୋଟେ ଲମ୍ବା ଦୀର୍ଘଶ୍ୱାସ ପକାଇ ସାମ୍ନାକୁ ଚାହିଁ ରହନ୍ତି । ସତେ ଯେମିତି ସମ୍ମୁଖରେ ତାଙ୍କର ନିରନ୍ଧ୍ର ଅନ୍ଧକାର । ତା ଭିତରେ ସେ ବାଟ ଖୋଜି ପାଉନାହାନ୍ତି ।

ଆମ ସ୍ୱଳ୍ପ ଅର୍ଜନରେ ପରିବାରଟିକୁ ଚଳେଇ ନେବାରେ ବୋଉର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅର୍ଥାତ୍ ଏ ଦିଗରେ ବୋଉର ପରିଶ୍ରମ ପ୍ରଶଂସନୀୟ ।

ମୋର ହୋଶ ହେବା ଦିନରୁ ବୋଉକୁ ମୁଁ ଏମିତି ପରିଶ୍ରମୀ ନାରୀ ଭାବରେ ଦେଖି ଆସିଛି । ମହୁମାଛିଟିଏ ପରି ବୋଉ ଗୋଟିଏ ବ୍ୟସ୍ତ ମଣିଷ । ତଥାପି ତା'ର କ୍ଲାନ୍ତି ନାହିଁ । ଦୁଃଖ ନାହିଁ । ବରଂ ଏଥିରେ ତାର ଅପାର ଆନନ୍ଦ ନିହିତ । ବୋଉର ପରିଶ୍ରମ ଫଳରେ ଆମ ଘର ସାମ୍ନା ବଗିଚାରେ ଶାଗ, ବାଇଗଣ, ଜହ୍ନି, କଲରା, ଶିମ୍ବ, ଲଙ୍କା, ଭେଣ୍ଡି ଆଦି ଘର ଖର୍ଚ୍ଚ ତୁଲାଇ ନେଲାଭଳି ଆମଦାନୀ ହୁଏ । ନହେଲେ ପରିବା ତରକାରୀ ଆମ ପାଇଁ ସ୍ୱପ୍ନ ହୋଇଯାନ୍ତା । ଶ୍ରେଷ୍ଠ ପରିବା ବଗିଚାଟିରେ ବୋଉ ସର୍ବଦା ଲାଗିଥାଏ । ସେଥିପାଇଁ ଏଠି ସେ ଅନେକଙ୍କର ପ୍ରଶଂସାର ପାତ୍ରୀ । ଅନେକବାର ବାପା ବି ବୋଉକୁ କହନ୍ତି : ବୁଝିଲ ତୁମେ ନଥିଲେ ଏ ସଂସାର ବୋଝ ବୋହି ବୋହି ମୁଁ ନିଷ୍ପେଷିତ ହୋଇ ସାରନ୍ତେଣି । ଆମ ଉପରେ ରାଗୁଥିବା ବାପା, ବୋଉ ଉପରେ ଦିନକ ପାଇଁ ରାଗନ୍ତି ନାହିଁ । ବରଂ ବାପାଙ୍କ କ୍ରୋଧ ସମୟରେ ବୋଉ ଏକମାତ୍ର ଲୋକ, ଯିଏ ବାପାଙ୍କୁ ସମ୍ମୁଖ କରେ ଏବଂ ବାପା ବୋଉର ମୁହଁକୁ ଚାହିଁଦେଲେ ଅସହାୟ ହୋଇପଡନ୍ତି । ଶାନ୍ତ ହୋଇଯାଆନ୍ତି ।

ବୋଉ ଡ଼ାକିଲା ।

ଖାଇବା ପାଇଁ ଦୁଇଟି ପିଢା ପଟା ପକାଇ ଅମେ ଦୁଇ ଭାଇ ପାଖାପାଖି ବସିପଡ଼ିଲୁ । ସାମ୍ନାରେ ବୋଉ ଥୋଇଦେଲା ଗରମ ଭାତ ଥାଳି ଓ ମାଛ ତରକାରୀ ଥାଳିଆ । ଖାଇବା ଆରମ୍ଭରୁ ହିଁ ଆମେ ଦୁଇ ଭାଇ ମାଛ ତରକାରୀଟାର ସ୍ୱାଦ ଅନୁଭବ କରିଥିଲୁ । ବାଃ କି ଚମତ୍କାର ଏ ଝୋଳଟା । ବାପା ଠିକ୍ କହୁଥିଲେ, ମାଗୁର ମାଛର ଝୋଳ, ବେଟା ହଣିଆ ହଣିଆ ବୋଲି ! ମୁଁ ତରକାରୀ ସ୍ୱାଦ ଲାଗିବାର କାରଣଟା କଣ ଖୋଜୁଥିଲି । ବୋଉର ରୋଷେଇ ପ୍ରଣାଳୀ ନା ମାଗୁର ମାଛ କି ଏ ତରକାରୀକୁ ସ୍ୱାଦୁ କରିବାର କାରଣ ?

: ଆଉ କଣ ଦେବି ? ବୋଉ ପଚାରିଲା ?

ବାବୁ କହିଲା : ଆଉ ଟିକିଏ ଝୋଳ ଦେ । ସତରେ ଝୋଳଟା ଖୁବ୍ ଭଲ ଲାଗୁଛି । ମୁଁ ନୀରବ ରହିଲି । କାରଣ ମୋ ଭିତରେ ଗୋଟେ ଅପରାଧ ବୋଧ ଜାଗି ଉଠୁଥିଲା । ବାବୁ ପୁଣି କହିଲା, ତୁ ନେରୁନ କରେ ଭାଇ ? ତତେ ଝୋଳଟା ଭଲ ଲାଗୁନି ? ବୋଉ ମୋତେ ଓ ବାବୁକୁ ଦୁଇଖଣ୍ଡ ଆଳୁ ଓ ଡ଼ଙ୍କିଟିଏ ଲେଖାଁ ଝୋଳ ଦେଲା । ଝୋଳ ଶୋଷୁଡ଼ାଏ ହାସ୍ୟରେ ନେଇ ବାବୁ କହିଲା : ଅଯଥାରେ ଆମେ ଆଜି ବାପାଙ୍କୁ ଏତେ କଥା କହିଲୁ । ମୁହଁ ଉଠାଇ ଦେଖିଲି ବୋଉ ଲୁହ ପୋଛୁଛି । ବାବୁ ପଚାରିଲା : ବୋଉ ତୁ କାନ୍ଦୁଛୁ । ବୋଉ କିଛି ନ କହି ମୁହଁ ବୁଲାଇ, ଲୁହ ଲୁଚାଇ ରୋଷେଇ ଘରକୁ ପଶିଗଲା । ବୋଉର ଲୁହ ମୋତେ ଆହୁରି ଅସହାୟ ଓ ଅପରାଧୀ

ନଶଦେଲା । ବାରଣ୍ଡାରେ ବସି ସିଲିଣ୍ଡରର କ୍ଷେତ୍ରଫଳ ଘୋଷୁଥିଲା ଇଲି । ବହୁ ବନ୍ଦ କରି କେଙ୍କିଉଠିଲା ବୋଉ କାନ୍ଦୁଛି ? ଯୋଗ୍ୟବନ୍ଧୁ ପୁଅ ପଚାରିଲେ । ତୁମେମାନେ ଯାହା କରୁଛ କେଉଁ ବାପ ବା ବୋଉ ନକାନ୍ଦି ରହିବେ ? କି ଅମଣିଷ ଗୁଡ଼ାକ ତୁମେ ? ବାପାଙ୍କ ଅବସ୍ଥା କଥା ଚିନ୍ତା କରି ପାରୁନ କେମିତି ? ଇଲିଟା ଏମିତି କୋଟେ ହୁଣ୍ଡି । ରେଳବସର ଝିଅ ବୋଲି ଯାହା ଆସେ ତା କହେ । ପୂର୍ବରୁ କିଛି ଘଟିନଥିଲେ ହୁଏତ ବାବୁ ଉଠିଯାଇଥାନ୍ତା । ଇଲିର ଚୁଟି ଧରି ଟାଣି ପିଠିରୁ ଦି' ବିଧା ଥୋଇଥାନ୍ତା । କିନ୍ତୁ ଆମେ ଆସାମୀ ପାଲଟି ଯାଇଥିଲୁ । ହାଜତର ବନ୍ଦୀ ଆସାମୀ ପରି ଇଲି ପୋଲିସ କନେଷ୍ଟବଲ ସାଜି ଆମକୁ ବାକ୍ୟରେ ପିଟି ପକାଇ ଘାଇଲା କରି ପକାଉଥିଲା । ଦୁଃଖ ଓ ଲଜ୍ଜାରେ ମୁହଁ ଉଠାଇ ମୁଁ ଚାହିଁପାରୁ ନଥିଲି । କିନ୍ତୁ ବାବୁ ଇଲିକୁ ଧମକାଇଲା : ଏ ଇଲି !

ଇଲି କହିଲା : ଥାଉ ତୋ ନାଲି ଆଖି, ମୁଁ ଡରେନା । ବାବୁ ଚୁପ୍ ହେଲା ।

ଘଣ୍ଟା ପରେ ଘଣ୍ଟା ଖାତ ପାଟିକୁ ନେଇ ଚର୍ବଣ କଲା ବେଳେ ମୁଁ ଭାବୁଥିଲି : ବୟସରେ ଅନେକ ସାନ କିଶୋରୀ ଇଲିଟା ଏ ବୟସରେ କେତେ ସଚେତନ । କେତେ ବୟସ୍କା ଅଭିଜ୍ଞ ନାରୀଟିଏ ପରି ସେ କଥା ଗୁଡ଼ାକ କହିଗଲା । ସତେତ ଆମେ କେବେ ବାପାଙ୍କ ପରିସ୍ଥିତି ବିଷୟରେ ଚିନ୍ତା କରିନାହୁଁ । ସଚେତନ ହୋଇନାହୁଁ । ବାପା ମାଙ୍କ ଅବସ୍ଥା ବୁଝନ୍ତି ବୋଲି ଝିଅମାନେ ହିଁ ବାପା ଓ ମାଙ୍କର ଏତେ ପ୍ରିୟ ହୁଅନ୍ତି । ପୋଷା ବିଲେଇ ପରି ପାଖରେ ଲଟ୍‌ପଟ୍ ହୁଅନ୍ତି । ଅଥଚ ପୁଅ ଗୁଡ଼ାକ ସେମାନଙ୍କ ସ୍ୱାର୍ଥପର ପଣିଆରୁ ବାପା ମାଙ୍କର ଆସ୍ଥା ହରାନ୍ତି । କୁକୁର ପରି ଧୋ ଧୋ ବାଉଁଆ ହୁଅନ୍ତି ।

ବାପାଙ୍କୁ ଆମେ ପ୍ରତିବାଦ କରୁଛୁ ? ଅବଜ୍ଞା କରୁଛୁ । ହେୟ ମଣୁଛୁ ।

ନାହିଁତ ?

ମୋ ଭିତରଟା ମନ୍ଥି ହୋଇ ଯାଉଥାଏ । ମୁଁ ମାସକୁ ପଚିଶ ଟଙ୍କା ସାଙ୍ଗସାଥୀ ମେଳରେ ଉଡ଼ାଇ ଦିଏ । ତେବେ ସେତିକି ଯଦି ମୁଁ ଘର ଖର୍ଚ୍ଚକୁ ଦେଇପାରନ୍ତି ? କେବେ ଦେଇନି । ଦେଲେ ହୁଏତ ଆମେ ପ୍ରତିଦିନ ଡାଲି ଖାଇପାରନ୍ତୁ । ଆଉ ଟିକେ ସୁଖରେ ଚଳନ୍ତୁ ।

ନୀରବରେ ବସି ଖାଇଲା ବେଳେ ବାବୁ କଣ ଭାବୁଥିଲା କେଜାଣି, ମୁଁ ଜାଣିନଥିଲି । କିନ୍ତୁ ମୁଁ ଭାବୁଥିଲି : ବାବୁ ମିଲାଟା । ସେ ନ ହେଲା ନାହିଁ । ବଡ଼ ପୁଅ ହିସାବରେ ମୁଁ କଣ ମୋ କର୍ତ୍ତବ୍ୟ କରିଛି । ସେହି ପ୍ରଥମ ଥର ପାଇଁ ମୋର ମନେହେଲା ଯେମିତି ବହୁଦିନ ଧରି ମୁଁ ଅକ୍ଷମଣୀୟ ଅପରାଧ

କରି ଆସିଛି । ଅପରାଧ ବୋଧରେ ମୋ ମଥା ନଇଁ ଯାଇଥିଲା । ମୁଁ ଠିକ୍ କଲି, ଏଥର ମୁଁ ଯାଇ ମୋ କୃତ କର୍ମ ପାଇଁ ବାପାଙ୍କୁ କ୍ଷମା ମାଗିନେବି । ବାପାଙ୍କର ଠାରୁ ହାତ ପାତି ମାଗିନେବି ଘରର ସମସ୍ତ ଦାୟିତ୍ୱ ଏବଂ ବାପାଙ୍କୁ କହିବି ବାପା ଆଜି ପର୍ଯ୍ୟନ୍ତ ଆମେ ଗୋଟେ ଭୁଲ୍ ବାଟରେ ଚାଲିଆସିଛୁ । ଆମ ପରି ଅବୋଧ ଓ ଅଧମଙ୍କୁ କ୍ଷମା କରିଦିଅ ।

ଖାଇସାରି ମୁଁ ଉଠିଗଲି ହାତ ଧୋଇବାକୁ । ହାତ ଧୋଇସାରି ଯାଇ ବାପାଙ୍କ ସାମ୍ନାରେ ଠିଆ ହେଲି । କହିଲି : ବାପା ! ଆଉ କିଛି ମୁ ଉଚ୍ଚାରଣ କରିପାରିଲି ନାହିଁ । ମୋର ଗଳାରୁଦ୍ଧ ହେଲା । ଅପରାଧ ବୋଧରେ ମୋ ମୁଣ୍ଡ ନଇଁଗଲା ଏବଂ ଆସାମୀଟିଏ ପରି କାକୁସ୍ଥ ଭାବରେ ଠିଆ ହୋଇ ରହିଲି ବାପାଙ୍କ ସାମ୍ନାରେ ।

ସେଲସଟାକ୍ସ କଲୋନୀ
ଜଟଣୀ
ପୁଷ୍ପ-୭୫,୦୫୦

କାହାଣୀ :

# ତିନୋଟି ହାସ୍ୟକର ବୃତ୍ତାନ୍ତ

ଶରତ୍ ନାରାୟଣ ବେହେରା

## (୧) ଗେହ୍ଲାପୁଅ

ରେବତୀ ରମଣ ଆମ ସାଙ୍ଗରେ ପଢ଼ୁଥିଲା । ତିନି ଝିଅ ଭଉଣୀରେ ଗୋଟିଏ ଭାଇ. ସେଇଟା ପୁଣି କେତେ ଓଷାବ୍ରତ ତୀର୍ଥ ପରେ ମିଳିଥିବାରୁ ବାପା, ମା'ଙ୍କର ଅତି ଅଦରର ଗେହ୍ଲା ପୁଅ ଭାବରେ ସବୁ ସୁବିଧା ସୁଯୋଗ ଲାଭ କରିଥିଲା । ଶୁଣିବା କଥା କଲେଜରେ ପଢ଼ିଲା ପରେ ବି ତା'ର ଯଶୋଦା ମା' କୋଳରେ ବସେଇ କ୍ଷୀର ଲହୁଣୀ ଖୁଆଇ ଦେଉଥିଲେ । ତେଣୁ କଲେଜ ପହଞ୍ଚିବାକୁ ତାର ପ୍ରାୟ ଡେରି ହୋଇ ଯାଉଥାଏ । ଏବଂ ଯେହେତୁ ମା'ଙ୍କ ହାତରୁ ଆଉ ଗୁଣ୍ଡେ ଖା ଆଉ ଗୁଣ୍ଡେ ଖା କରି ତଣ୍ଟି ପର୍ଯ୍ୟନ୍ତ ଭର୍ତ୍ତି କରି ଆସେ, କ୍ଲାସରେ ବସୁ ବସୁ ନିଦ୍ରାଦେବୀ ତାକୁ କୋଳେଇ ନେଉଥିଲେ ଅତି ଆଦରରେ ।

ତା ପରେ ନିଦ୍ରାଦେବୀଙ୍କ ପଣତ ଉହାଡରେ ନିରାପଦରେ ଶୋଇଗଲେ ଯାହା ହେବାର କଥା । ଶୋଇଲା ଲୋକକୁ ଜାଣକ ମଲା ଲୋକକୁ ଜାଣ । ଫଳଟା ହାରମୋନିଅମର ସାତଟି ଯାକ ସ୍ୱର ଫଁ ଫଁ ଫଡଡ୍ ଫଡ଼ଡ୍... ବାହାରି ପଡ଼େ । ପରେ ପରେ ସାରା କ୍ଲାସରେ ଏକ ସମବେତ ହସର ଲହଡ଼ି ଖେଳିଯାଏ । ଏପରିକି ଦେବାର୍ଚ୍ଚନ ସାର୍ ବି ହସିପକାନ୍ତି । କିନ୍ତୁ କ୍ଷମା କରିବାର ବି ଗୋଟିଏ ସୀମା ଅଛି । ସେଦିନ ସକାଳୁ ସକାଳୁ ଦେବାର୍ଚ୍ଚନ ସାରଙ୍କ କଲିକ ପେନ ବାହାରିଥାଏ । ଯେମିତି ରେବତୀ ରମଣର ହାରମୋନିଅମ ବାଜିବା ଆରମ୍ଭ କଲା ଦେବାର୍ଚ୍ଚନ ସାର ମାରିଲେ ଡଷ୍ଟର ରେବତୀର ମୁହଁକୁ ସତରେଇ । କିନ୍ତୁ ପିଲାଦିନେ ଗଛର ଆମ୍ବ ଝାଡ଼ିବା ଅଭିଜ୍ଞତା ନଥିବାରୁ ଡଷ୍ଟରଟା ଖୋଲା ଝରକା ବାଟେ ବାହାରିଯାଇ ପଡ଼ିଆରେ ପଡ଼ିଲା ଓ ରେବତୀ ବାଲ ବାଲ ବଁଚିଗଲା । ଏବଂ ଆପଣଙ୍କୁ ମିଛ ଆମକୁ ସତ, ଠିକ୍ ସେତିକି-ବେଳେ ପଡ଼ିଆରେ ପ୍ରିନ୍‌ସିପାଲ ବୁଲୁଥିଲେ । ଡଷ୍ଟର ଯାଇ ପଡ଼ିଲା ଠିକ୍ ତାଙ୍କ ସାମନାରେ । ଭାବିଲେ ନିଶ୍ଚୟ କେଉଁ ଦୁଷ୍ଟ ଗ୍ରୁପ ଜାଣି ଶୁଣି ଡଷ୍ଟରଟିକୁ ତାଙ୍କ ଉପରକୁ ଫିଙ୍ଗିଥିଲା । କିନ୍ତୁ ପ୍ରିନ୍‌ସିପାଲ ପରମ ଦୟାଳୁ । ହସିଦେଇ

ଡକ୍ଟରଟିଙ୍କୁ ଉଣ୍ଡେଇ ସିଅନଙ୍କୁ ଦେଲେ ଷ୍ଟାଫ କମନରୁମରେ ଯୋଗଦେବାକୁ । ଏହି କଥା ଦେବାର୍ଚ୍ଚନ ସାର ପରଦିନ କ୍ଲାସରେ କହିଲେ ଏବଂ ଖାସ ରେବତୀ ରମଣ ପାଇଁ ତାଙ୍କର ଚରମ କ୍ଷତିରେ ଦାଗ ପଡ଼ିବାକୁ ଯାଉଥିଲା ବୋଲି ବହେ ଗାଳିଦେଲେ । ତ ହସିବେ କ କାନ୍ଦିବେ, ଦେବାର୍ଚ୍ଚନ ସାରଙ୍କ ଗାଳି ଶେଷହେଲା ବେଳକୁ ରେବତୀ ରମଣ ନିଦ୍ରାଦେବୀଙ୍କ କୋଳକୁ ଚାଲିଯାଇଥିଲା ।

ସେଦିନ ଆମେ କଲେଜ ଗଲାବେଳକୁ ଛକ ଉପରେ ରେବତୀ ପରିବର୍ତ୍ତେ ତା'ର ବାପା ଠିଆହୋଇଥିଲେ । ତାଙ୍କୁ ଦେଖି ଆମକୁ ବୁଝିବାକୁ ବାକି ରହିଲା ନାହିଁ ଯେ ରେବତୀ ଯଶୋଦା ମାଆଙ୍କ କୋଳରେ ବସି ଆଉଗୁଣ୍ଡେ ଆଉ ଗୁଣ୍ଡେ କରି ଖାଉଛି । ଆମେ ପାଖରେ ପହଞ୍ଚିବା ମାତ୍ରେ ରେବତୀର ବାପା ଧାଇଁଆସି ପଥ ଓଗାଳିଲେ । ଚେହେରା ଦେଖିଲେ ଜଣାପଡ଼ୁଥିଲା ସେ ଅତ୍ୟନ୍ତ ବିବ୍ରତ । ତେବେ ରେବତୀର ଦେହ ଟା' ଖରାପ ?

କିନ୍ତୁ ରେବତୀର ବାପା ବ୍ୟସ୍ତ ଥିଲେ ମଧ୍ୟ ଅନ୍ୟ କାରଣରୁ । ପଚାରିଲେ ରେବତୀକୁ ଦେଖିଛ ?

ଆମେ ନାହିଁକଲୁ ।

ରେବତୀର ବାପା କହିଲେ—"ରେବତୀ କାଲି ଯେଉଁ କଲେଜକୁ ପଢିବାକୁ ଯାଇଥିଲା ଆଉ ଘରକୁ ଫେରିନାହିଁ । ସାରା ସହର ମୁଁ ଚଷି ଆଣିଲିଣି । କେଉଁଠି ହେଲେ ତାଙ୍କୁ ପାଉନାହିଁ ।"

ଆମେ ଆଶ୍ୱାସନା ଦେଲୁ—"ରେବତୀ କଣ ସାନପିଲା ହୋଇଛି ଯେ ହଜିଯିବ ? ତାଛଡ଼ା ରେବତୀ ବଡ଼ ହୁସିଆର ପିଲା । କେଉଁ ସାଙ୍ଗମାନଙ୍କ ସାଙ୍ଗରେ କୁଆଡ଼େ ଚାଲିଯାଇଛି, ଫେରି ଆସିବ ନାହିଁ ? ଆପଣ ଏମିତି ବ୍ୟସ୍ତ ହେଉଛନ୍ତି କାହିଁକି ?"

ଆମର କଥା ଶୁଣି ରେବତୀର ବାପା ଆଶ୍ୱସ୍ତ ହେବା ଦୂରେଥାଉ କାନ୍ଦିବାକୁ ଆରମ୍ଭ କରିଦେଲେ । ଟୋକା ପୁଅ ପାଇଁ ବାପା କାନ୍ଦିବାଟା ସ୍ୱାଭାବିକ । କିନ୍ତୁ ଛକ ଉପରେ ବୁଢା ଲୋକଟେ କାନ୍ଦିବା ଦୃଶ୍ୟ ଥରେ କଳ୍ପନା କରି ଦେଖନ୍ତୁ । ଆମେମାନେ ବଡ଼ ଅଡୁଆରେ ପଡ଼ିଲୁଁ କେମିତି ତାଙ୍କୁ ବୁଝେଇବୁ ।

କିନ୍ତୁ ରେବତୀର ବାପା ଆମର ସମସ୍ତ ଚିନ୍ତା ଦୂର କରି ହଠାତ୍ କାନ୍ଦ ବନ୍ଦ କରିଦେଇ କାନ୍ଧରେ ପଡ଼ିଥିବା ଦେଉଳୀପକା ଅଙ୍ଗୁଛିରେ ଆଖି ଲୁହ ପୋଛି କହିଲେ—"କାଲି କଲେଜ ଗଲାବେଳେ ରେବତୀର ମା ଯଶୋଦା ଘରେ ନଥିଲେ । ମୁଁ କହିଲି, ଚାଲ ମୁଁ ତତେ ଖୁଆଇଦେବି । କିନ୍ତୁ ରେବତୀ

ଗୁଗିକଣ କଲେଜ ଗୁଲିଗଲା । ମୁଁ ଯେତେ ପଛରୁ ଡ଼ାକଲି ଶୁଣିଲା ନାହିଁ । ମୁଁ ଠିକ ଜାଣେ ରେବତୀ କେଉଁଆଡେ ପଳେଇଯାଇଛି । ଆଜି ରେବତୀର ମାଁ ତାଙ୍କର ସାଇଘରୁ ଫେରିଲେ ମୁଁ ତାଙ୍କୁ କଣ କହି ବୁଝେଇବି । ଯଶୋଦା ନିଶ୍ଚୟ କେଉଁ କୂଅ କ ପୋଖରୀକୁ ଡ଼େଇଁ ପ୍ରାଣ ହାରିଦେବେ ।"

ତା ପରେ ପୁଣି ସେଇ ଭୋ ଭୋ କାନ୍ଦର ପୁନରାବୃତ୍ତି ।

ଆମର ବନ୍ଧୁ ଟେଁକାରୁଟା ପିଲାଡିନରୁ ଚଗଲା ପ୍ରକୃତିର । ରେବତୀର ବାପାଙ୍କ ଜାମାରୁ ଅଙ୍ଗଛଟା ଘିଚିଆଣି ରେବତୀର ବାପାଙ୍କ ଆଖିଲୁହ ପୋଛିଦେଇ କହିଲା—"ଆପଣ ମୋଟେ ଚିନ୍ତା କରନ୍ତୁ ନାହିଁ । ରେବତୀ ଯେଉଁଠି ଥାଉ, ଯମପୁରୀକୁ ଯାଇଥିଲେ ବି ଆମେ ଯାଇ ତାକୁ ଟାଣିବୁ । ଆଜି ସନ୍ଧ୍ୟା ସୁଦ୍ଧା ରେବତୀ ଆପଣଙ୍କ ଘରେ ପହଞ୍ଚିବ ।"

ଟେଁକାରୁର କଥାକୁ ବୋଧେ ବିଶ୍ୱାସ କଲେ ରେବତୀର ବାପା । ଟେଁକାରୁ ହାତରୁ ନିଜର ଅଙ୍ଗଛି ଫେରାଇ ନେଇ କହିଲେ—"ଯାଅ ବାପାମାନେ ମୋର ରେବତୀକୁ ଖୋଜି ଆଣ । ନ ହେଲେ ଯଶୋଦା ପ୍ରାଣହାରିବ ଇ ହାରିବ ।"

ଯଃ ପଳାୟତି···ନ୍ୟାୟରେ ଆମେ ଆଗକୁ ଜୋରରେ ପାଦ ବଢ଼ାଇଲୁଁ । କିନ୍ତୁ ଛକ ପାରହେବା ଆଗରୁ ପୁଣି ପଛରୁ ପାଟିକଲେ ରେବତୀର ବାପା । ବାଧ୍ୟ ହୋଇ ପଛକୁ ଫେରିଲୁଁ ।

ରେବତୀର ବାପା ଟେକାଁରୁର ହାତଧରିପକେଇ କହିଲେ—"ଅଚ୍ଛା ଏଇ ଆଖପାଖରେ କଓ୍ୱାଲି କି ମୁସେୟରା ପୋଗ୍ରାମ ହେଉଥିଲା କି ?"

ଟେଁକାଁରୁ କହିଲା—"କାଲି ତ ଝାରସୁଗୁଡ଼ାରେ କଓ୍ୱାଲି ପ୍ରୋଗ୍ରାମ ଥିଲା ।"

ରେବତୀର ବାପାଙ୍କ ମୁହଁରେ ହସର ଜ୍ୟୋତି ଖେଳିଗଲା ।

କହିଲେ—"ହୋଇଗଲା, ହୋଇଗଲା । ରେବତୀ ନିଶ୍ଚୟ କାଲି କଓ୍ୱାଲି ଶୁଣିବାକୁ ଗୁଲିଯାଇଛି । ରେବତୀ କଓ୍ୱାଲି କି ମୁସେୟରା କହିଲେ ଜୀବନ୍ ଦେଇଦେବ ।"

ତା ପରେ ଲମ୍ବା ଲମ୍ବା ପାଦ ପକେଇ ରେବତୀର ବାପା ଗୁଲିଗଲେ ।

ଏହା ଭିତରେ ଅନେକ ବର୍ଷ ବିତିଯାଇଛି । ଯଉବନ ଅରେ ଚଳେ ଆଉ ଫେରେନା ଗୀତ ଗାଇ ଦୀର୍ଘଶ୍ୱାସ ପକାଇ ସଂସାରୀ ଜୀବନର ଲଟପଟ ଭିତରେ ଆମେ ବ୍ୟସ୍ତ ଥିଲା ବେଳକୁ ଦିନେ ହଠାତ୍ ରେବତୀ ଆସି ଟେକାଁରୁ ପାଖରେ ପହଞ୍ଚିଲା ଓ କହିଲା ଭାଇ ଆଜି ଅଫିସରେ ବହୁତ କାମ ଅଛି । ମୋର

ଫେରିବାକୁ ଡେରିହେବ । ତୁ ଆମ ଘରକୁ ଯାଇ ଟିଫିନକେରିଅରରେ ଖାଇବାଟା ହସପିଟେଲରେ ପହଞ୍ଚାଇଦେବୁ । ବାପା ବେମାର ପଡ଼ିଛନ୍ତି । ମୁଁ ରାତିରେ ପୁଣି ଯାଇ ଜଗିବି ।

ଟେଁକାରୁ ସେତେ ଚଗଲମି କଲେବି ଏମିତି କାମକୁ ବାଘ । ସନ୍ଧ୍ୟାରେ ରେବତୀ ଘରକୁ ଯାଇ ଟିଫିନକେରିଅରଟା ନେଇ ହସପିଟେଲରେ ପହଞ୍ଚିଲା । ସେତେବେଳେ ରେବତୀର ବାପା ଆଖିବୁଜି ଖଟରେ ଶୋଇଥାଆନ୍ତି ।

ଟେଁକାରୁ ରେବତୀର ମାଁଆଙ୍କୁ ଟିଫିନକେରିଅର ଧରାଇଲା । ରେବତୀର ମାଁ ପଚାରିଲେ—"ଆଜିବି ରେବତୀ ଆସିଲାନାହିଁ ?"

କଣ ଉତ୍ତରଦେବ ଟେଁକାରୁ ଭାଷା ଖୋଜି ପାଇଲାନାହିଁ ।

ସେଦିନ ରାତିରେ ରେବତୀର ବାପା ଶେଷ ନିଶ୍ୱାସ ତ୍ୟାଗକଲେ ।

## (୨) ଗିରିଗୋବର୍ଦ୍ଧନର ଉସାଢ଼ଲ ଯାତ୍ରା

କବିତା ପାଠୋତ୍ସବରେ କବିତା ପାଠ କରି ଗିରିଗୋବର୍ଦ୍ଧନ ଯେତେବେଳେ ଘରକୁ ଫେରି ଆସିଲା, ତାର ମନେ ହେଲା ସତେ ଯେପରି ସେ ଗିରିଟାଏ ଟେକି ଦେଇ ଆସିଛି ।

ବାଟଘରୁ ଗିରିଗୋବର୍ଦ୍ଧନ ଡାକିଲା—ଅଗୋ ଲାବଣ୍ୟବତୀ, ଶୁଣୁଛ ?

ଲାବଣ୍ୟ ରୋଷେଇଘରେ ଥିଲେ । ହଠାତ୍ ସ୍ୱାମୀଙ୍କ କଣ୍ଠରୁ ଏପରି କଅଁଳିଆ ଡାକଟାଏ ଶୁଣି ଭାବିଲେ ଘ୍ ପାଇଁ ବୋଧେ ଏଇ ସୋହାଗ ।

ବାଟ ଘରକୁ ଆସି ପଚାରିଲେ—କଥା କଣ', ଆଜି ବଡ ସୁଆଗିଆ ଡାକଟାଏ ଶୁଣିଲି ଯେ !

ଗିରିଗୋବର୍ଦ୍ଧନ ପୁଲକିତ କଣ୍ଠରେ କହିଲା—ବୁଝିଲ ଲାବଣ୍ୟବତୀ ଆଜି ଯେଉଁ କରତାଳି ନା ।

କଣ କେଉଁଠି ବକ୍ତୃତାଟାଏ ଦେଇ ପକେଇଲ କି ! ଲାବଣ୍ୟ ଯାଉଁ ଯାଉଁ କହିଲେ ।

ବାଟ ଓଗାଳି ଗିରିଗୋବର୍ଦ୍ଧନ କହିଲା—ଧେତତେରି, ମୁଁ କଣ ନେତାକି ମନ୍ତ୍ରୀ ହୋଇଛି ଯେ ବକ୍ତୃତା ଦେବି ? ମୁଁ କବିତା ପାଠ କଲି ।

ଲାବଣ୍ୟ ଯେମିତି ଆକାଶରୁ ଖସି ପଡ଼ିଲେ । ଲଥକରି ଗୋଟେ ସୋଫାରେ ବସିପଡ଼ି ପ୍ରାୟ କାନ୍ଦପକେଇ କହିଲେ—ସତରେ ତୁମେ ଆଜି କବିତା ପଢ଼ିଛ ! !

ସ୍ତ୍ରୀଙ୍କ ଏପରି ଅବସ୍ଥାକୁ ସ୍ୱଭାବେଶ ଭାବି ଗିରଗୋବର୍ଦ୍ଧନ କହିଲେ—କଣ ବିଶ୍ୱାସ ହେଉ ନାହିଁନା ? ସତରେ ଲାବଣ୍ୟବତୀ ମୁଁ ବଢ଼ିଆ କବିତାଟିଏ ପଢ଼ିଲି ! ସମସ୍ତେ ଚମକିପଡ଼ିଲେ ! ତା ପରେ ତାଳି ତାଳି !

ଲାବଣ୍ୟ କହିଲେ—ମୁଁ ତ ତୁମେ କବିତା ପଢ଼ିବା ଶୁଣି ଏଠି ଚମକି ପଡ଼ିଲି, ସେମାନେତ ସ୍ୱଭାବତ ଡର ଯାଇଥିବେ !

ଜୋରରେ ହାତ ପକାଇ ଗିରଗୋବର୍ଦ୍ଧନ କହିଲେ—ମୁଁ କଣ ଭୂତୁଣ୍ଡା କବିତା ପଢ଼ିଲି ଯେ ସେମାନେ ଡରିଯିବେ ? ମୁଁ ତ... ।

ଗିରଗୋବର୍ଦ୍ଧନର ଓଠ ଦୁଇଟା ଥରିବାକୁ ଲାଗିଲା । ଆଖିରେ ତାଙ୍କର ନିଆଁ ଜୁଳୁ ଜୁଳୁ କଲା ।

ଏଥର ଲାବଣ୍ୟ ସ୍ୱଭାବତ ଆତଙ୍କିତ ହୋଇପଡ଼ିଲେ ।

ମିନତିଭରା କଣ୍ଠରେ କହିଲେ, ଏଇ ବୟସରେ ତମେ ଏ ସବୁ କାହିଁକି କରୁଛ ଶୁଣେ ! ତୁମେ ମୋ ବୋଲିମାନ । ତମେ ଆଉ ସେ ବାହୁଲା କାମ ସବୁ କରନାହିଁ । ସେଥିରୁ ତମକୁ କଣ ମିଳିବ ?

ହଠାତ୍ ସ୍ତ୍ରୀଙ୍କ ମୁହଁରୁ ଏପରି ପ୍ରତିକ୍ରିୟା ଶୁଣି ଗିରଗୋବର୍ଦ୍ଧନ ଆଘାତ ପାଇଲେ ।

ଆହତ କଣ୍ଠରେ କହିଲେ—ମୁଁ ବୁଝିପାରୁନାହିଁ ତୁମେ କଣ ସବୁ କହୁଛ । ଆଜି ମୋର କବିତା ପାଠ ଶୁଣି ଲୋକେ ଯେମିତି କରତାଳି ଦେଇ ସମ୍ବର୍ଦ୍ଧନା ଜଣାଇଲେ... ।

ହଠାତ୍ କଲିଂବେଲ ବାଜିଉଠିଲା । ଗିରଗୋବର୍ଦ୍ଧନ କଥା ଶେଷ କରି ପାରିଲେନାହିଁ । କବାଟ ଖୋଲିବା ମାତ୍ରେ ପଶିଆସିଲେ ପାଞ୍ଚ ଛଅ ଜଣ ଯୁବକ ଓ ସମବେତ କଣ୍ଠରେ କହିଉଠିଲେ—ସାର, ଆପଣ ଯେଉଁ କବିତା ପାଠକଲେ ସେଥିପାଇଁ ବଧେଇ ଜଣେଇବାକୁ ଆସିଛୁ ।

କହୁ କହୁ ଯୁବକମାନେ ଗୋଟି ଗୋଟି କରି ବସିଗଲେ । ଲାବଣ୍ୟ ଯନ୍ତ୍ରଣାକାତର ଆଖିରେ ଅନାଇଲେ ଅନାହୂତ ଅତିଥିମାନଙ୍କୁ ।

ଗିରଗୋବର୍ଦ୍ଧନ ଉଚ୍ଛ୍ୱସିତ କଣ୍ଠରେ ଯୁବକମାନଙ୍କୁ ପରିଚିତ କରେଇ-ଦେଲେ—ଲାବଣ୍ୟ, ଏମାନେ ସବୁ ଯୁବକବି । ଏମାନେ ସମସ୍ତେ ଆଜି ନିଜ ନିଜ କବିତା ପଢ଼ିଲେ । ମୋର କବିତା ପାଇଁ ଏମାନେ ମତେ ଅଭିନନ୍ଦନ ଜଣେଇବାକୁ ଆସିଛନ୍ତି । ଟିକିଏ ଚା' ଫା' ଟିକେ ଦିଅ ।

ଯୁବକ ଭିତରୁ ଜଣେ କହିଲେ—ସାର, ଖାଲି ଚା'ରେ ଚଳିବ ନାହିଁ । ଆମେ ଆଜି ଭାଉଜଙ୍କ ପାଖରୁ ମିଠା ଖାଇବୁ । ରାଜଗୃହର ଦୋକାନର

ଘରକୋଣ ଖାଇବୁ । ଅଇନା ଗୁଡ଼ିଆ ଦୁକାନର ହଳଦିଗଣ୍ଡି ରସଗୋଲା ଖାଇବୁ ।

ଗିରିଗୋବର୍ଦ୍ଧନର ପାଟି ଆଉ ତଳେ ଲାଗୁନଥିଲା ।

କହିଲା—ହଉ ହଉ, ମିଠା ଖାଇବ ତ ! ମଗାଅ ଲାବଣ୍ୟବତୀ ପିଲାଙ୍କ ପାଇଁ ମିଠା ମଗାଅ ।

ମନେ ମନେ ରାଗିଲେ ବି ଲାବଣ୍ୟ ମୁହଁ ଖୋଲି କିଛି କହିଲେ ନାହିଁ । ନୀରବରେ ଉଠିଯାଇ ପଛାଘରୁ ସାନ ପୁଅକୁ ଡ଼ାକି ମିଠା କିଣିବାକୁ ପଠାଇଲେ ।

ଲାବଣ୍ୟ ଚାଲିଯିବା ପରେ ଗିରିଗୋବର୍ଦ୍ଧନ ଆରମ୍ଭ କଲା—ବୁଝିଲ, କଲେଜରେ ପଢିଲା ବେଳେ ମୁଁ ପ୍ରଚୁର କବିତା ଲେଖୁଥିଲି । କିନ୍ତୁ ଚାକିରି କଲା ପରେ ଧୀରେ ଧୀରେ ଲେଖା ପ୍ରାୟ ବନ୍ଦ ହୋଇଗଲା ।

ଜଣେ ଯୁବକ କହିଲା—କିନ୍ତୁ ସାର ଆପଣ କବିତା ଲେଖିବା ବନ୍ଦ କରି ଆମ ରାଜ୍ୟର, ଆମ ରାଜ୍ୟର କାହିଁକି ସାରା ଦେଶର, ସାରା ପୃଥିବୀର ଯେଉଁ ପ୍ରଭୂତ କ୍ଷତି କରିଛନ୍ତି କଳନା କରି ପାରିବେ ନାହିଁ ।

ଆନନ୍ଦରେ ଶିହରି ଉଠିଲା ଗିରିଗୋବର୍ଦ୍ଧନ । ଏପରି ପୁଲକ ସେ ଅନେକ ବର୍ଷ ହେଲା ଅନୁଭବ କରିନଥିଲା । ତଥାପି ନମ୍ରତା ସ୍ୱୀକାର କରି କହିଲା—ଆରେ ନାଇଁ ନାଇଁ ମୋର କବିତା କଣ ସେମିତି ଉଚ୍ଚ ଦରର !

ଆଉ ଜଣେ ଯୁବକ କହିଲା—ସାର ଆପଣ ଜଣେ କସ୍ତୁରୀମୃଗ—ନିଜର ପ୍ରତିଭାକୁ ଚହ୍ନିପାରୁ ନାହାନ୍ତି । କିନ୍ତୁ ଆଜି ଆପଣଙ୍କ କବିତା ଗୁଡ଼ିକ ଶୁଣି ମନେହେଲା ଆପଣ କବିତା ଲେଖିବା ବନ୍ଦ କରି କେତେ ବଡ଼ ଅନ୍ୟାୟ କରିଛନ୍ତି ।

ଅନ୍ୟାୟ ? ସଂଦେହୀ ଗଳାରେ ଗିରିଗୋବର୍ଦ୍ଧନ ପ୍ରଶ୍ନକଲା ।

ଯୁବକଟି ଆଉ ଟିକିଏ ଉତ୍ସାହିତ କଣ୍ଠରେ କହିଲା—ସାର ଆପଣ ଯଦି କବିତା ରଚନା ଅବ୍ୟାହତ ରଖିଥାଆନ୍ତେ, ଆଜି ଆମେ ଓଡ଼ିଆମାନେ ବି ଗର୍ବ କରି କହୁଥାଆନ୍ତୁ ଯେ ଆମର ବି ଜଣେ ନୋବେଲ ଲରିଏଟ ଅଛନ୍ତି ।

ତୃତୀୟ ଯୁବକଟି କହିଲା, ହଁ ସାର୍ ସାହିତ୍ୟ ପାଇଁ ଆପଣ ଭାରତରେ ଦ୍ୱିତୀୟ ବ୍ୟକ୍ତି ହୋଇଥାଆନ୍ତେ ନୋବେଲ ପୁରସ୍କାର ପାଇବାରେ ।

ସଠମତ ଲାଜେଇ ଯାଇ ଗିରିଗୋବର୍ଦ୍ଧନ କହିଲା—ନା-ନା···ସେତେ-ବଡ଼ ପୁରସ୍କାର ମୋ ପରି ଅକିଞ୍ଚନ କବି···ମୋର ସେ ପ୍ରତିଭା ନାହିଁ !!

ଏତେବେଳକୁ ଲାବଣ୍ୟ ଆସି ମିଠା ଓ କଫି ପରଶି ଦେଇଗଲେ ।

ମିଠା ପ୍ଲେଟ ହାତରେ ପାଇବା ମାତ୍ରେ ଯୁବକମାନେ ଗିରିଗୋବର୍ଦ୍ଧନର କବିତା ଭୁଲିଯାଇ ଖାଇବାରେ ମନଦେଲେ ।

ମିଠା ଓ କଫି ପର୍ବ ଶେଷ ହୋଇଗଲା ପରେ ଜଣେ ଯୁବକ ପ୍ରସ୍ତାବ ଦେଲା—ସାର ଆପଣଙ୍କ ସମସ୍ତ କବିତାର ଗୋଟିଏ ସଂକଳନ ଛପେଇଦିଅନ୍ତୁ । ଅମରତ ବିଶ୍ୱାସ ନୋବେଲ ପ୍ରାଇଜ ନ ହେଲେ ବି ଜ୍ଞାନପୀଠ ପୁରସ୍କାରଟିଏ ନିଶ୍ଚୟ ପାଇଯିବେ ।

ଗିରିଗୋବର୍ଦ୍ଧନ ମୁହଁ ନ ଖୋଲି ସ୍ୱୀକାରୋକ୍ତିର ମୃଦୁକ ହସଟିଏ ହସିଲା ।

ଯୁବକମାନେ ଉତ୍ସାହିତ ହୋଇ ତାଙ୍କ ଭିତରେ କଣ ଟିକିଏ ମନ୍ତ୍ରଣା କରି ପ୍ରସ୍ତାବ ଦେଲେ,—ସାର ଆପଣ ଯଦି ରାଜି ହୁଅନ୍ତି, ଅମର ପ୍ରତିଭା ପୂଜା ଅନୁଷ୍ଠାନ ପକ୍ଷରୁ ଆପଣଙ୍କୁ ସମ୍ବର୍ଦ୍ଧନା ଜଣାନ୍ତୁ ।

ଏଥର ଗିରିଗୋବର୍ଦ୍ଧନର ମନେହେଲା ହାତରେ ସେ ଗୋଟିଏ କସ୍ତୁରୀ ମୃଗ । ନିଜର ପ୍ରତିଭାକୁ ସେ ଚିହ୍ନି ପାରିନଥିଲା ଏତେ ଦିନ । ଏହି ଯୁବକମାନେ ଆଜି ତାକୁ ଚହ୍ନେଇ ଦେଇଛନ୍ତି ।

କୃତଜ୍ଞତା ସୂଚକ ନମ୍ର କଣ୍ଠରେ ଗିରିଗୋବର୍ଦ୍ଧନ କହିଲା– ମୋ ଠାରୁ ଅନେକ ବଡ଼ ବଡ କବି ଅଛନ୍ତି ଆଉ ମତେ କି ସମ୍ବର୍ଦ୍ଧନା ଦେବ ? ତା ଛଡ଼ା ମୋର ଅଫିସ କାମ··· ।

କଥା ଶେଷ କରିବାକୁ ନ ଦେଇ ଜଣେ ଯୁବକ କହିଲା—ନାହିଁ କରନ୍ତୁ ନାହିଁ ସାର, ଆମକୁ ଥରେ ସୁଯୋଗ ଦିଅନ୍ତୁ ଆପଣଙ୍କ ପ୍ରତିଭାକୁ ବିଶ୍ୱ ଦରବାରରେ ଉପସ୍ଥାପନ କରିବାକୁ ।

ଅନ୍ୟ ଜଣେ କହିଲା—ଆପଣ ଜଣେ ଅତି ବ୍ୟସ୍ତ ମଣିଷ ଏ କଥା ଆମେ ଜାଣୁ । ତେଣୁ ସମ୍ବର୍ଦ୍ଧନା ସଭା ଆପଣଙ୍କ ଏଇ ଘରେ ହେବ । ବେଶି ଲୋକଙ୍କ ପାଇଁ ଆୟୋଜନ କରିବାକୁ ପଡ଼ିବ ନାହିଁ ସାର୍ । ମୁଖ୍ୟ ଅତିଥି ମୁଖ୍ୟ ବକ୍ତା ସମେତ ଆମେ ପନ୍ଦର ଜଣ ଆସିବୁ । ସନ୍ଧ୍ୟା ସାତଟାରୁ ନଅଟା । ଆରମ୍ଭରେ ଗ୍ଲୁ କଲଷିଆ, ସଭା ଶେଷରେ ଡ଼ିନର ଆଉ ହଁ, ଚନ୍ଦନଟା କର୍ପୂର ମାଳା ।

ଆଉ ଜଣେ ଯୁବକ କହିଲା—ଲଗ୍ନ ସ୍ଥିର କରିବାକୁ ପଡ଼ିବନାହିଁ ସାର, ଆସନ୍ତା ରବିବାର ବସନ୍ତ ପଞ୍ଚମୀ । ଗିରିଗୋବର୍ଦ୍ଧନର ଉତ୍ତରକୁ ଅପେକ୍ଷା ନ କରି ଏକ ସାଙ୍ଗରେ ଯୁବକମାନେ ଉଠି ସମବେତ କଣ୍ଠରେ କହିଲେ—ସାର ଆସନ୍ତା ରବିବାର, ନମସ୍କାର ।

ଯୁବକମାନେ ଚାଲିଗଲେ । ଫେରିଆସିଲେ ଲାବଣ୍ୟ ସାଗରେ ତାଙ୍କ ଦାନ୍ତ

ଗୁଡ଼ିକ ଉଡ଼ମଡ଼ କରୁଥିଲେ । ଚିତ୍କାର କରି ଉଠିଲେ—ଶୁଣୁଛ··· । ଏଇ ବୟସରେ ବି ଏଇ ଧନ୍ଦା ତୁମେ କରିପାରୁଛ ?

ଆଶ୍ଚର୍ଯ୍ୟ ହୋଇ ଗିରିଗୋବର୍ଦ୍ଧନ କହିଲେ - କଣ ହେଲା ? ମୋର ବୟସ ହୋଇଗଲା ବୋଲି କଣ ହୋଇଗଲା ? କବିତା ଲେଖିବି ନାହିଁ ? ମୋର ଦୁର୍ଭାଗ୍ୟ ଲାବଣ୍ୟବତୀ ତୁମେ ମୋର ପ୍ରତିଭାକୁ ଚିହ୍ନିପାରିଲ ନାହିଁ । ଏଇ ଯୁବକମାନେ ଏବେ ଯାହା ସବୁ କହିଗଲେ ଯଦି ଥରେ ଶୁଣିଥାନ୍ତ, ଏବେ ଖାଲି ଅନୁତାପ କରୁଥାଆନ୍ତ ମୋର ପ୍ରତିଭାର ସ୍ଫୁରଣରେ ତୁମେ ଛଆସିଲ କାଠି ହୋଇନାହିଁ ବୋଲି ।

ରାଗରେ ଲାବଣ୍ୟ ଖାଲି ଥରୁଥିଲେ । ଦଉଡ଼ିଯାଇ ସେଣ୍ଟର ଟେବୁଲ ତଳେ ଥୁଆ ହୋଇଥିବା ସ୍ୱାମୀଙ୍କ ଏଟେଚିଟା ଆଣି ସେଥିରୁ କବିତା ଖାତାଟା ବାହାର କରି ସ୍ୱାମୀଙ୍କ ଦେହ ଉପରକୁ ଫିଙ୍ଗିଦେଇ କହିଲେ—ସେଇ ଖାତାରୁ ପଢ଼ିଲ ତ ! ଛି ଛି ଛି···ପୁଅର କବିତା ଖାତା ଚୋରି କରି ନିଜର ବୋଲି ପଢ଼ୁଛ ଆଉ ପୁଅ ସେଇଟା ଶୁଣି ଘରେ ଆସି ହସୁଛି ।

ଗିରିଗୋବର୍ଦ୍ଧନର ମନେ ହେଲା ଯେପରି ଗୋବର୍ଦ୍ଧନ ଗିରିଟା ତାର ମୁଣ୍ଡରେ ଭାଙ୍ଗି ହୋଇ ପଡ଼ିଲା ଓ ସେ ଧୀରେ ଧୀରେ ରସାତଳକୁ ଖସି ଖସି ଯାଉଛି ।

## (୩) : ଏକ ରୋମାଞ୍ଚକର ଆତ୍ମହତ୍ୟା

ଖବରକାଗଜରେ ପର ପର ତିନିଗୁଟା ଆତ୍ମହତ୍ୟା ଖବର ଛପାହେଲା ପରେ ସେମାନଙ୍କ ଭିତରେ ତର୍କ ଚାଲିଥିଲା ।

ସୁବୋଧ କହିଲା—ଆଜିର ଶିକ୍ଷା ପଦ୍ଧତି ଏହି ଆତ୍ମହତ୍ୟାର ମୂଳ କାରଣ । ତାର ଯୁକ୍ତି ହେଲା, ଯେତେଜଣ ଆତ୍ମହତ୍ୟା କରିଛନ୍ତି ସେମାନଙ୍କ ଭିତରୁ ଅଧିକାଂଶ ହେଲେ ଯୁବକ । ସେମାନେ ଯଦି ଉପଯୁକ୍ତ ଶିକ୍ଷା ପାଇଥାଆନ୍ତେ ତେବେ ଜୀବନ ହାରିବା ପାଇଁ ମୋଟେ ମନବଳାନ୍ତେ ନାହିଁ ।

ଯୁଗଳ ଶିକ୍ଷା ବିଭାଗରେ ଚାକିରି କରେ । ସୁବୋଧ ସହିତ ତାର ମତଭେଦ ଅନେକ ଦିନରୁ । ସେ ଭାବିଲା ତାକୁ ଆକ୍ରମଣ କରିବା ପାଇଁ ସୁବୋଧ ଏପରି ଯୁକ୍ତି ବାଢ଼ିଛି ।

କହିଲା—ନା । ମୋଟେ ନୁହେଁ । ଶିକ୍ଷା ପଦ୍ଧତି ସହିତ ଆତ୍ମହତ୍ୟାର କୌଣସି ସଂପର୍କ ନାହିଁ । ଅସଲ କଥା ହେଲା ବେକାରି । ତୁମେ ନେତା-

ମାନେ ଖାଲି ପ୍ରତିଶ୍ରୁତି ଦେଉଛି ଅଥଚ ଚାକିରି ଦେଲାବେଳକୁ ଶୂନ । ତେଣୁ ପାଠଶାଠ ପଢ଼ି ଅନେକ ଦିନ ପର୍ଯ୍ୟନ୍ତ ବେକାର ହୋଇ ବୁଲିଲା ପରେ ବ୍ୟର୍ଥ ମନୋରଥ ହୋଇ ଆତ୍ମହତ୍ୟା କରି ବସୁଛନ୍ତି ।

ହସିଦେଇ ସୁବୋଧ କହିଲା ଏକା କଥା । ଚମେମ ନେ ଯଦି ପିଲାଙ୍କୁ ଉପଯୁକ୍ତ ଶିକ୍ଷା ଦେଉଥାଆନ୍ତି ସେମାନେ ଆମମାନଙ୍କ ପାଖକୁ କାହିଁକି ଧାଆଁନ୍ତେ ? ଆପେ ଆପେ ଚାକିରି ନ ପାଇ ବେକାର ହୋଇ କାହିଁକି ବୁଲନ୍ତେ ?

ବିଶ୍ୱନାଥ ଦେଖିଲା ସୁବୋଧର ଆକ୍ରମଣଟା ଟିକେ ତୀବ୍ର ହୋଇଯାଉଛି । ପ୍ରତିକାର ଅପେକ୍ଷା ପ୍ରତିଷେଧକ ଭଲ । କଥା ବଦଳାଇବାକୁ କହିଲା— ଶିକ୍ଷା ଫିକ୍ଷା କିଛି ନାହିଁ ବାବୁ, ଆଜିକାଲିର ଆତ୍ମହତ୍ୟା ପଛରେ ରହିଛି ଯୌତୁକ । ଯୌତୁକ ପାଇଁ ହତ୍ୟା, ଆତ୍ମହତ୍ୟା ।

ସବୁବେଳେ ଏହି ସୁଯୋଗ ପାଇଁ ଯେପରି ଅପେକ୍ଷା କରିଥିଲା । ବିଶ୍ୱନାଥ ବଡ଼ ମୋଦକ ପ୍ରିୟ । କହିଲା—ଉହୁଁ, ଅସଲ କାରଣ ହେଲା ପିଲାଏ ଆଜିକାଲି ଯେଉଁ କିସମ କିସମ ମୋଦକ ଖାଉଛନ୍ତି ମୁଣ୍ଡ ଠିକ୍ ରହୁନାହିଁ ।

ଏହିପରି ଆତ୍ମହତ୍ୟାର କାରଣ ଖୋଜି ଖୋଜି ତର୍କ ବିତର୍କ ଗରମା ଗରମ ହେବାକୁ ଲାଗିଲା । ପଞ୍ଚାନନର ଏପରି ଫାଲତୁ ଚର୍ଚ୍ଚାରେ ମୋଟେ ଆଗ୍ରହ ନଥାଏ । କିନ୍ତୁ ଚୁପଚାପ ବସି ଶୁଣିବା ଲାଗିବ ଧୈର୍ଯ୍ୟ ଦରକାର । ବର୍ଷ ବସି ଦୁଇ ଘଣ୍ଟା ଖବରକାଗଜ ଉପରେ ଆଖିବୁଲେଇ ସାରିଲା ପରେ ମନ୍ତବ୍ୟ ଦେଲା – ତୁମେ ସବୁ ଅଯଥାରେ ଅନ୍ଧାର ଘରେ ବାଡ଼ି ବୁଲଉଛ ।

ସୁବୋଧ ତ ତାତିକରି ଥିଲା । ତାତିଲା କଣ୍ଠରେ କହିଲା—ଅନ୍ଧାର ଘରେ ବାଡ଼ି ବୁଲଉଛୁଁ ? ବୁଝିଲୁ ଆତ୍ମହତ୍ୟା ଏବେ ଏକ ସାମାଜିକ ସମସ୍ୟା ହେଲାଣି । ଏଥିପାଇଁ କିଛି ଗୋଟିଏ ଆଇନ କରିବାକୁ ପଡ଼ିବ ।

ପଞ୍ଚାନନ କହିଲା—ଏକଦମ ଫାଲତୁ କଥା । ଆଗେବି ଲୋକେ ଆତ୍ମହତ୍ୟା କରୁଥିଲେ । ଆତ୍ମହତ୍ୟାଟା କିଛି ଗୋଟିଏ ନୂଆଁ କଥା ନୁହେଁ । ତେବେ ଆମ ଯୁଗରେ ଆତ୍ମହତ୍ୟାରେ ବି ଗୋଟିଏ ରୋମାଞ୍ଚ ଥିଲା । ଆଜିକାଲି ସେହି ରୋମାଞ୍ଚର ବଡ଼ ଅଭାବ ।

ବିଶ୍ୱନାଥ ବିସ୍ମୟ ପ୍ରକାଶ କଲା— ଆତ୍ମହତ୍ୟାର ବି ରୋମାଞ୍ଚ ! !

ପଞ୍ଚାନନ କହିଲା—କଣ ବିଶ୍ୱାସ ହେଉନାହିଁ ? ତେବେ ଶୁଣ ଆମ ଯୁଗର ଏକ ରୋମାଞ୍ଚକର ଆତ୍ମହତ୍ୟାର କାହାଣୀ ।

ଦୀର୍ଘ ସମୟ ଧରି ଗରମାଗରମ ତର୍କ ବିତର୍କରେ ସମସ୍ତେ ହାଲିଆ ହୋଇ

ପଡ଼ୁଥିଲେ । ତେଣୁ ପଞ୍ଚାନନ ମୁହଁରୁ ରୋମାଞ୍ଚକର ଆତ୍ମହତ୍ୟାର କାହାଣୀ ଶୁଣିବାକୁ ସମସ୍ତେ କାନଡେରିଲେ ।

ବେଶ କାଇଦାରେ ଗଳାଖଙ୍କାରି, ସିଗାରେଟରେ ନିଆଁ ଲଗେଇ ଆରମ୍ଭ କଲେ ପଞ୍ଚାନନ ।

ଆତ୍ମହତ୍ୟା ହେଲା ଗୋଟିଏ ମୁହୂର୍ତ୍ତର ଖେଳ । କିମିତେ ଏପାଖ ସେପାଖ ହେଲେ ଗଲା । ତେଣୁ ଶିକ୍ଷା, ସଭ୍ୟତା, ମୋଦକ, ବ୍ୟର୍ଥତା ଆଦି କାରଣ ଖୋଜିବା ଅନ୍ଧାର ଘରେ ବାଡ଼ି ବୁଲେଇବା ଢଙ୍ଗେ ସମାନ ।

ବିଶ୍ୱନାଥ ଘଡ଼ି ଦେଖି କହିଲେ—ବାଜେ ଉପକ୍ରମଣିକାରେ ସମୟ ନଷ୍ଟ କରନାହିଁ । ସିଧା ଘଟନାକୁ ଆସ ।

ପଞ୍ଚାନନ ମଣି ଅତ୍ୟାଗ୍ରହରୁ ରକ୍ଷା ପାଇବା ପାଇଁ ଗୋଡ଼ ଦୁଇଟାକୁ ଟେକିଆଣି ସୋଫା ଉପରେ ଚକାମୁଣ୍ଡି ମାରି କହିଲେ—ତେବେ ଶୁଣ । ଆମେ କଲେଜରେ ପଢ଼ିଲାବେଳେ ଗୋଟିଏ ପିଲା ଆତ୍ମହତ୍ୟା କରିବାକୁ ଗଲା । ସେତେବେଳେ ରେଳଲାଇନରେ ଶୋଇ ଆତ୍ମହତ୍ୟା କରିବା ଖୁବ ଜନପ୍ରିୟ ହୋଇଥିଲା । ଟ୍ରେନ ଆସି ପହଞ୍ଚିବ ଠିକ ରାତି ଗୋଟାଏବେଳେ । ତେଣୁ ପିଲାଟି ଠିକ ରାତି ବାରଟା ବାଜିବା ମାତ୍ରେ ଚିଠିଟାଏ ଲେଖି ଟେବୁଲ ଉପରେ ଥୋଇ ବାହାରିପଡ଼ିଲା । ରେଳ ଲାଇନ ପାଖରେ ପହଞ୍ଚିଲାବେଳକୁ ଏକ ବାଜିବାକୁ ଆଉ ତିରିଶ ମିନିଟ ବାକି । ପିଲାଟି ଲାଇନ କଡ଼ କୃଷ୍ଣଚୂଡ଼ା ଗଛ ତଳେ ବସିଲା । ଭାବିଲା ଦେଖୁଁ ଦେଖୁଁ ତିରିଶ ମିନିଟ ବିତିଯିବ । ଘରୁ ବାହାରିବା ଆଗରୁ ଦମ୍ଭ ନହାରିବା ଲାଗି ମୁହଁରେ ମୋଦକଟାଏ ପକେଇ ଦେଇଥିଲା । ତେଣୁ ବାଟରେ ଚାଲିଆସିବା ବେଳୁ ନିଶାଟା ଟିକେ ଧରିବା ଆରମ୍ଭ କରି ଦେଇଥିଲା । ମୁଣ୍ଡ ଝିମ୍ ଝିମ୍ କରୁଥିଲା । ତେଣୁ କାଳେ ଗଛତଳେ ଶୋଇପଡ଼ିବ ଭାବି ପିଲାଟି ଉଠିଯାଇ ରେଳଲାଇନ ଉପରେ ବେକ ଲଦି ଶୋଇଗଲା ।

ମୁହୂର୍ତ୍ତେ ଚୁପ ରହି ପଞ୍ଚାନନ ପୁଣି ଆରମ୍ଭ କଲେ- କିନ୍ତୁ ପିଲାଟିର ସୌଭାଗ୍ୟ କୁହ କି ଦୁର୍ଭାଗ୍ୟ, ସେଦିନ ଟ୍ରେନ ଲେଟ ଥିଲା ।

ଯୁଗଳ ମନ୍ତବ୍ୟ କଲେ —ଏ ଦେଶରେ କେବେ ଟେନ ଟାଇମରେ ଚାଲେ ଯେ ସେଦିନ ଲେଟ ହୋଇଗଲା ବୋଲି ବେଦଟା ଅଶୁଦ୍ଧ ହେ ଇଗଲା ।

ହସିଦେଇ ପଞ୍ଚାନନ କହି ଚାଲିଲେ—ଟ୍ରେନ ତ ଲେଟ ଥିଲା । ପିଲାଟି କିଛି ସମୟ ପରେ ନିଦରେ ଶୋଇପଡ଼ିଲା ରେଳ ଲାଇନ ଉପରେ ବେକ ଦେଇ ।

ଇସ୍ ସ୍—ବିଶ୍ୱନାଥ ଯେପରି ଭୟରେ ଶିହରି ଉଠିଲେ ।

ପଞ୍ଚାନନ ପୁଣି କହିବାକୁ ଆରମ୍ଭ କଲା— ହଠାତ୍ ରେଲଗାଡ଼ିର ଘର୍ଘର ଶବ୍ଦରେ ପିଲାଟିର ନିଦ ଭାଙ୍ଗିଲା ବେଳକୁ ଦେଖିଲା ତାର ସାମନାରେ ଦୁଇଟା ପୁଲିସ କନେଷ୍ଟବଲ ଠିଆ ହୋଇଛନ୍ତି । ଗୋଟିଏ ଚୋରର ପିଛା କରି କରି କନେଷ୍ଟବଲ ଦୁହିଁଜଣ ଥକି ଯେତେବେଳେ ପିଲାଟିକୁ ରେଳ ଲାଇନ ଉପରେ ଶୋଇ ପଡ଼ିବାର ଦେଖିଲେ ଭାବିଲେ ଏଇଟା ସେହି ଚୋର । ଦୌଡ଼ି ଦୌଡ଼ି ଆସି ହାଲିଆ ହୋଇ ଶୋଇପଡ଼ିଛି । କିନ୍ତୁ ଯେତେ ଉଠେଇଲେ ବି ନଉଠିବାରୁ ତାକୁ ଟେକି ନେଇ ସେହି କୃଷ୍ଣଚୂଡ଼ା ଗଛମୂଳେ ଶୁଆଇ ଦେଇ ତାର ଉପର ପକେଟରୁ ସିଗାରେଟ ନେଇ ନିଆଁ ଲଗେଇ ଆଆନ୍ତି । ଠିକ୍ ସେତିକିବେଳେ ଘର୍ଘର କରି ଟ୍ରେନ ଆସିଲା ଓ ପିଲାଟିର ନିଦ ଭାଙ୍ଗିଗଲା । ପିଲାଟି ଆଖି ଖୋଲିବା ମାତ୍ରେ ସେମାନେ ତାକୁ ଥାନାକୁ ନେଇଗଲେ । ସେଆଡ଼େ ପିଲା ଘର ଲୋକେ ଖୋଜି ଖୋଜି ଯାଇ ଥାନାରେ ଡାଏରୀ କରିବାକୁ ପହଞ୍ଚିଲା ବେଳକୁ ଦେଖିଲେ ପୁଅ ତାଙ୍କର ଚୋର ବୋଲି ଧରାହୋଇ ଅଣା ହୋଇଛି । ବଡ ଅଡୁଆରେ ପଡ଼ିଲେ ପିଲାଟିର ବାପା । ପୁଅ ଆତ୍ମହତ୍ୟା କରିବାକୁ ଯାଇଥିଲା ଅଥଚ ଏମାନେ ଚୋର ବୋଲି ଧରିଆଣିଛନ୍ତି । ସଙ୍ଗେ ସଙ୍ଗେ ପକେଟରୁ "ମୋର ଆତ୍ମହତ୍ୟା ପାଇଁ କେହି ଦାୟୀ ନୁହନ୍ତି" ଚିଠିଟି ଥାନା ବାବୁଙ୍କୁ ଦେଖାଇଲେ । ଏବଂ ଏହା ଦେଖିବା ମାତ୍ରେ ପୁଲିସବାଲା ସଙ୍ଗେ ସଙ୍ଗେ ବିଶ୍ୱନାଥ ଆତ୍ମହତ୍ୟା କରୁଥିବା ଅପରାଧରେ କେସଟିଏ ଠୁକିଦେଲେ ।

ହଠାତ୍ ସମସ୍ତଙ୍କ ଆଖି ବିଶ୍ୱନାଥ ଉପରେ ନିବଦ୍ଧ ହୋଇଗଲା ।

କିନ୍ତୁ ବିଶ୍ୱନାଥ ସେତେବେଳକୁ ମୋଦକ ନିଶାରେ ଢୁଳେଇ ପଡ଼ିଥିଲା ।

□ ଆକାଶବାଣୀ
ସମ୍ବଲପୁର

କାହାଣୀ :

# ଅମୁହାଁ ଦେଉଳ

## ଭୂପେନ ମହାପାତ୍ର

ମୁଁ ଯୋଉଦିନ ପ୍ରଥମ କରି ବାଙ୍ଗିରିପୋଷି ଥାନାର ଦାୟିତ୍ୱ ଗ୍ରହଣ କଲି ସେତେବେଳକୁ ମୋର ଚାକିରି ମାତ୍ର ତିନିବର୍ଷ ହୋଇଥାଏ। ଏତେ କମ୍ ବୟସରୁ କୌଣସି ସବ-ଇନ୍ସପେକ୍ଟର ଥାନା ଦାୟିତ୍ୱରେ ନଥାନ୍ତି ବୋଲି ମୋର ସେ ଥାନକୁ ଖାରପ୍ରାପ୍ତ ଅଫିସର ହିସାବରେ ଯିବାର ଅର୍ଡ଼ର ବାହାରିବା ମାତ୍ରେ ମୋର ବନ୍ଧୁମାନଙ୍କର ଆଖି ଉପରକୁ ଚାଲି ଯାଇଥିଲା। କେହି କେହି ମନ୍ତବ୍ୟ ଦେଲେ ଏମିତି ଗୋଟେ କିଛି ହେବ ବୋଲି ଅନୁମାନ କରାଯାଉଥିଲା।

ମୟୂରଭଂଜ ଜିଲ୍ଲାର ସଦର ମହକୁମା ବାରିପଦା ଠାରୁ ମାତ୍ର ତିରିଶ କିଲୋମିଟର ରାଇରଙ୍ଗପୁର ଆଡ଼କୁ ଗଲେ ବାଙ୍ଗିରିପୋଷି ଥାନା ପଡ଼େ। ରାସ୍ତା କଡ଼ରେ ଥାନାଟା। ଅନେକ ଦିନର ପୁରୁଣା କୋଠା। ବେଶ ଭୁଜଥାଉ ଅଛି ବୋଲି ମନେ ହେବ।

ଏଇଟା ହେଉଛି ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳର କଥା।

ବେଡ଼ିଂ ସୁଟକେଶ ଧରି ବସ୍‌ରୁ ଓହ୍ଲେଇଲି ବେଳକୁ ବାଙ୍ଗିରିପୋଷି ଗାଁ ଟାରେ ସଂଜ ବି ଓହ୍ଲେଇ ପଡ଼ିବାକୁ ପ୍ରସ୍ତୁତ ହେଉଥାଏ।

କିନ୍ତୁ କି ଆଶ୍ଚର୍ଯ୍ୟ, କେହି କୁଆଡ଼େ ନାହାନ୍ତି। ବେଡ଼ିଂ ସୁଟକେଶ ଧରି ଅଗତ୍ୟା ମୁଁ ଥାନା ଆଡ଼କୁ ଆଗେଇଲି।

ଥାନା ବାରଣ୍ଡାରେ ପହଞ୍ଚି ଦେଖିଲି କେହି କୁଆଡ଼େ ନାହିଁ। ମଫସଲ ଥାନା ମାନଙ୍କରେ ଏମିତି ପ୍ରାୟ ହୁଏ।

ଘୁରିଆଡ଼େ କେମିତି ଗୋଟେ ମୋତେ ଖାଁ ଖାଁ ମାଡ଼ି ଆସିଲା ପରି ଲାଗିଲା। କାହାକୁ ଦେଖିଲେ ସିନା ଡାକିବି। ଧୀରେ ଧୀରେ ଥାନାର ପଛ ବାରଣ୍ଡାକୁ ଆସିଲି। ଦେଖିଲି ଖଣ୍ଡେ ଦୂରରେ ଗୋଟିଏ ଧାଡ଼ିକିଆ ଚାଳ ଘର। ଭିତରୁ ପିଲାଙ୍କ ପାଟି ଶୁଭୁଛି। ଏ ଗୁଡ଼ିକ ବୋଧେ ସିପେଇ ହାବିଲଦାରଙ୍କ ଘର।

ସେଇ ଘର ଭିତରୁ କିଏ ଜଣେ ଆସିଲା । ହାତରେ ଲଣ୍ଠନ । ବିଜୁଳି ସଂଯୋଗ ଥାନାକୁ ହୋଇନି କି ଏବେ ବିଜୁଳି ନାହିଁ ବୁଝି ହେଲାନି ।

ଲୋକଟି ଆସିଲା । ବାରଣ୍ଡାକୁ ଉଠି ଗୁଇ ଅଂଧାରରେ ମୋତେ ଦେଖି ଚମକି ଉଠିଲା । ପଚାରିଲା—କିଏ ?

ମୁଁ କହିଲି ମୁଁ ତୁମର ନୂଆ ଥାନା ଅଫିସର ।

ସେ ମତେ ସମ୍ମାନ ଦେଇ ପଚାରିଲା କିଛି ଖବର ନାହିଁ । ଏଇଛୁଆ ବସ୍‌ରେ ଆସିଲେକି ?

ମୁଁ ହଁ କହି ଚେୟାରଟା ଟାଣି ଆଣି ବସିପଡ଼ିଲି ।

ତୁମ ନାଁ କଅଣ ?

ରବୀନ୍ଦ୍ର ନାୟକ । ଏଠି ଦୁଇ ବର୍ଷ ହେଲା ରହିଲିଣି, ଏଠୁ ଯିବାବେଳ ବି ହୋଇ ଗଲାଣି ।

ତୁମ ବଡ଼ ବାବୁ କୁଆଡ଼େ ଗଲେ ?

ବସାରେ ଥିବେ ସାର ! ଏଇନେ ଡାକି ଦଉଚି । ସେ ବି ତ ଆପଣଙ୍କର ଆଜି ଆସିବା କଥା କିଛି କହି ନାହାନ୍ତି ।

ଗତ କାଲି ଖବର ପଠେଇଥିଲି ତମେ ସବୁ ପାଇନ ତା ହେଲେ ।

ଆମେ କିଛି ଜାଣିନୁ ସାର । ଖାଲି ଶୁଣିଥିଲୁଁ ଆପଣ ସ୍ୱାଗ ଭିତରେ ଆସିଯିବେ ବୋଲି ।

ଚା ଟିକିଏ ମିଳିବନି ? ମୁଁ କହିଲି ।

ମୁଁ, ସାର ସବୁ ବନ୍ଦୋବସ୍ତ କରି ଦଉଚି କହି ସେ ଦଉଡ଼ିଗଲା ବାରଣ୍ଡା ତଳକୁ ଆଉ ପାଟିକଲା—ସୁଧୀର ଟିକିଏ ଏଆଡ଼କୁ ଆଇଲୁ ।

ସୁଧୀର ଆସିଲା । ଗୋଟାଏ ଦଶ ବାର ବର୍ଷର ପିଲା । ଥାନା ସାମନାରେ ଥିବା ଜଳଖିଆ ଦୋକାନରେ ଚାକିରି କରେ ।

ରବୀନ୍ଦ୍ର କହିଲା,— ଯା ଆମ ନୂଆ ଥାନା ବାବୁ ଆସିଛନ୍ତି । ତାଙ୍କ ପାଇଁ ଦୁଇଟା ବଡ଼ମିଠା । ଦୁଇଟା ସିଙ୍ଗଡ଼ା, ଦୁଇଟା ଭେଜିଟେବୁଲ ଚପ୍ । ପାଏ ଛେନା ପୋଡ଼ । ଛେନା ପୋଡ଼ ଭଲ ନଥିଲେ ପାଏ ଛେନା । ଦିଟା ସନ୍ଦେଶ ଏବଂ ଗୋଟାଏ ସ୍ପେଶାଲ ଚା । ଶୀଘ୍ର ଆସିବୁ ।

ତା ପରେ ମୋ ଆଡ଼କୁ ଟିକିଏ ଟିକିଏ ଅନେଇ କହିଲା, ସାର ଅଣ୍ଡା ସିଝା କିମ୍ବା ଅମଲେଟ୍ ଆଣିବ କି ?

ମୁଁ ଟିକିଏ ହସି କହିଲି, ତମେ ଯେତକ ଅର୍ଡର ଦେଲଣି ସେତକ ଖାଇଲେ ମୁଁ ଆଉ ଆଜି ରାତିରେ କଅଣ କାଲି ସକାଳ ଯାଏ କିଛି ଖାଇ ପାରିବିନି ।

ରବୀନ୍ଦ୍ର ହସିଲା । ତା ହସରୁ ତା ବୟସ ବାରି ହେଉଥିଲା । ଆଗଦାନ୍ତ ଅନେକ ଦିନୁ ବିଦାୟ ନେଲାଣି । କେବଳ କଳ ଦାନ୍ତ କେଇଟା ଅସ୍ତିତ୍ୱ ଜାହିର କରୁଥାଏ । କିନ୍ତୁ କାମକୁ ଲାଗୁଥିବ ବୋଲି ମୋର ମନେ ହୁଏନା । ଗାଲ ଦୁଇଟା ଅସ୍ୱାଭାବିକ ଭାବେ ଗର୍ତ୍ତ ସୃଷ୍ଟି କରୁଥାଏ । ମୁଣ୍ଡରେ ବାଳ ଖୋଜିଲେ ବି ମିଳିବନି ।

ମୋ ପାଖକୁ ଆସି କହିଲା,—ହଜୁର ପିଲା ଲୋକ ନ ଖାଇଲେ ପୋଷ୍ୟସ ସୃଜନ କରିବେ କେମିତି ? ଦେହରେ ତାକତ ଥିବା ଦରକାର । ତାପରେ ପୁଣି ହସିଲା । ପିଲାଟି ଆଡକୁ ଚାହିଁ କହିଲା, ଆରେ ତୁ ଠିଆ ହେଉଚୁ କାହିଁକି ? ଯା ଯାହା ଯାହା କହିଲି ସବୁତକ ନେଇ ଆସିବୁ । ବାବୁଙ୍କୁ ଭୋକ ହବଣି ।

ପୁଣି ମୋତେ କହିଲା, କେତେବେଳେ ବାହାରି ଥିଲେ ?

ଦିନ ଦୁଇଟା ବସ୍‌ରେ । ବସ୍‌ଟା ଏତେ ଡେରି କରିବ ବୋଲି ଜାଣି ନଥିଲି । ପ୍ରତି ଅଧ ମାଇଲରେ ଥରେ ଅଟକେ । ଏତେ ବି ଭିଡ଼ ।

ସେ କହିଲା, ଏଇଟା ସାରା ବାରିପଦାରୁ ଏଆଡ଼କୁ ଆସୁଥିବା ଲାଷ୍ଟଗାଡ଼ି । ତେଣୁ ଏତେ ଭିଡ଼ ।

ପିଲାଟି ସ୍ୱା ଭିତରେ ଗୋଟାଏ ବଡ଼ ଥାଳରେ ଜଳଖିଆ ଗ୍ଲ'ଧରି ଆସି ହାଜରଥାଏ ।

ମୁଁ ସେଥିରୁ ମାତ୍ର ଗୋଟାଏ ସିଙ୍ଗାଡ଼ା ଖାଇ ଚାଟାକୁ ଧରିନେଲି । ତା ପରେ ପିଲାଟିକୁ କହିଲି,—ବାକି ସବୁ ଫେରେଇ ନେଇ ଯିବାକୁ ।

ରବୀନ୍ଦ୍ର କହିଲା, ଏଠି କିନ୍ତୁ ଏମିତି କେହି ଖାଆନ୍ତିନି । ନୂଆ ଚାକିରି କରିଚନ୍ତି କିନା ଖାଇ ଶିଖି ନାହାନ୍ତି । ତେଣୁ ଆମକୁ ଶିଖେଇବାକୁ ପଡ଼ିବ । ମାସେ ଦି ମାସ ଭିତରେ ବଳେ ଅଭ୍ୟାସରେ ପଡ଼ିଯିବେନି । ଏଠିତ ମାସକୁ ଚାରିଟା ଭୋଜି । ନ ଖାଇ ଯିବେ କୁଆଡ଼େ ?

ରବୀନ୍ଦ୍ରର ଇଙ୍ଗିତ ମୁଁ ବୁଝିଥିଲେ ମଧ୍ୟ କିଛି କହି ନପାରି କହିଲି—

ମୋର ପରା ପେଟ ବେମାରି । ମୁଁ କଅଣ ଖାଇପାରେ କି ? ପେଟ ପୂରିବା ପାଇଁ ଯେତିକି ଦରକାର ସେତିକି ମଧ୍ୟ ଖାଇ ପାରେଁନି । ତା'ଠୁ କମ୍ ଖାଏଁ । ମୋ ଡାକ୍ତରପରା ମନା କରିଚି ।

ରବୀନ୍ଦ୍ର ଟିକିଏ ରହିଗଲା । ତାପରେ ଜଳଖିଆ ଥାଳିଆଟା ପିଲା ହାତକୁ ବଢ଼େଇ ଦେଇ କହିଲା—ମୁଁ ଉପର ଘରେ ଆପଣଙ୍କ ରହିବାର ସବୁ ବ୍ୟବସ୍ଥା କରି ଦେଇ ଆସୁଚି । ବାବୁଙ୍କୁ ବି ଖବର ଦେଇ ଦେଉଚି । ମୁଁ କହିଲି ତାଙ୍କୁ

ଖବର ଦିଅ, କିନ୍ତୁ ଆଜି ରାତିରେ ଦରକାର ନାହିଁ । କାଲି ସକାଳେ ଦେଖା ଚଳିବ ।

ପରଦିନ ସକାଳ ଉଠିଲା ବେଳକୁ ମୋ ମୁଣ୍ଡ ପାଖରେ ଫ୍ଲାସ୍କରେ ଚା ଓ ଗୋଟାଏ ପାକେଟ୍ ସିଗାରେଟ୍ ଥୁଆ ହୋଇଛି । କାମ ଦାମ ସାରି ମୁଁ ତଳକୁ ଓହ୍ଲେଇ ଗଲା ବେଳକୁ ଥାନାବାବୁ ନାରାୟଣ ମହାନ୍ତି କେତେବେଳୁ ଆସି ଥାନା କାମରେ ଲାଗି ପଡ଼ି ଥାଆନ୍ତି ।

ନାରାୟଣ ବାବୁ ମୋଠୁ ଅନେକ ସିନିଅର । ପ୍ରାୟ ଦଶ ବର୍ଷ । ତାଙ୍କର ପ୍ରମୋସନ ବେଳ ହେଲାଣି । ମୁଁ ଚାକିରି ଆରମ୍ଭ କରୁଥାଏ ମାତ୍ର । ତା ଛଡ଼ା କାମରେ ନାରାୟଣ ବାବୁ ପୋଖତ ଅଫିସର ହିସାବରେ ଡିପାର୍ଟମେଣ୍ଟରେ ନାଁ ଅଛି । ମୁଁ ତେଣୁ ଅଫିସ ରୁମ ଭିତରକୁ ପଶି ତାଙ୍କୁ ନମସ୍କାର ବଢ଼େଇବା ମାତ୍ରେ ସେ ପାଟିକରି ଉଠିଲେ—ଆରେ ଆସ ଆସ । ତମେ କାଲିଠାରୁ ଆସିଲଣି ଅଥଚ ମୋତେ ଟିକିଏ ଖବର ଦେଲନି ।

ମୁଁ କହିଲି ଆପଣଙ୍କୁ କାଲି ଆଉ ହଇରାଣ କାହିଁକି କରି ଥାଆନ୍ତି ? ମୋର ସବୁ କାମ ତ ଟବାନ୍ଦ କରି ଦେଇଥିଲେ । କିଛି ଅସୁବିଧା ହେଲାନି ।

ନାରାୟଣ ବାବୁ ମୋତେ ଥାନା ଏ. ଏସ୍. ଆଇ. ଓ ଫୋର୍ସ ହାବିଲଦାରମାନଙ୍କ ସହ ପରିଚୟ କରେଇ ଦେଇ ଚାର୍ଜ ଦେବାକୁ ଆରମ୍ଭ କଲେ । ଥାନାରେ ବା ଚାର୍ଜ ଦେବାରେ କଅଣ ଥାଏ ? କେବଳ ମାଲଖାନା ବା ସରକାରୀ ଟଙ୍କା ପଇସା ଯଦି କିଛି ଥାଏ, ସେଇଟା ହିଁ ଦେଖି ନବୁସ । ଅଫିସ କାମ ବୋଇଲେ ମୋଟା ମୋଟି ଏତିକି । ତାପରେ ରହିଲା ଏରିଆ ଉପରେ ବ୍ରିଫିଙ୍ଗ । ଜଣେ ଅଫିସର ତାର ଏରିଆ ଉପରେ ଯେତେ ଅଧିକ ଜ୍ଞାନଥିବ ସେ ସେତିକି ଦକ୍ଷ ବୋଲି ଜଣାପଡ଼ିବ । ଅପରାଧ ତଦନ୍ତରେ ସେ ସେତିକି ପାରଙ୍ଗମ ବୋଲି ଜଣା ପଡ଼ିବ । ତେଣୁ ଏ ବ୍ରିଫିଙ୍ଗ ଉପରେ ଖୁବ୍ ବେଶୀ ଗୁରୁତ୍ୱ ଦିଆଯାଏ । ଏସବୁ ବିଷୟରେ ଜଣେ ଥାନା ଅଫିସରକୁ ଅନେକ ରେଜିଷ୍ଟର ଫାଇଲ ଇତ୍ୟାଦି ରଖିବାକୁ ପଡେ ।

ଥରେ ଯୋଉ ରେକର୍ଡ ତିଆରି ହୋଇଯାଏ ତାହା ଯୁଗ ଯୁଗ ଧରି ଚାଲେ ।

ନାରାୟଣ ବାବୁ ସେ ସବୁ ବିଷୟରେ ମୋତେ ବୁଝେଇବା ଆରମ୍ଭ କଲେ । ମୁଁ ମଧ୍ୟ ଚାକିରିରେ ନୂଆ ହୋଇଥିବାରୁ ଏସବୁ ଅଧିକ ଯତ୍ନ ସହକାରେ ଶୁଣିବାକୁ ଆରମ୍ଭ କଲି ।

ପ୍ରଥମେ ଏରିଆ ବିଷୟରେ କେତେ ଗାଁ, କେତେ ପଞ୍ଚାୟତ ଏବଂ କିଏ କିଏ ସବୁ ସରପଞ୍ଚ, ଚେୟାରମେନ ସେମାନଙ୍କ ଚରିତ୍ର, ପଲିଟିକାଲ

ଏଫିଲିଏସନ୍, ଅନ୍ୟାନ୍ୟ ବିଶିଷ୍ଟ ରାଜନୈତିକ ବା ଅଣରାଜନୈତିକ ବ୍ୟକ୍ତି, ବଡ଼ ବଡ଼ ସରକାରୀ ଅଫିସର, ପୁରୁଣା ରାଜା କିମ୍ବା ଜମିଦାର, ଖବର କାଗଜର ରିପୋର୍ଟର, ପୁଣି ସେମାନଙ୍କ ଭିତରୁ କେଉଁମାନେ ପୋଲିସ କିମ୍ବା ସରକାର ସପକ୍ଷରେ କିମ୍ବା ବିପକ୍ଷରେ—ଏସବୁ ଉପରେ ପୁଙ୍ଖାନୁପୁଙ୍ଖ ଏବଂ ବିଶେଷ ଘଟଣାବହୁଳ ଆଲୋଚନା ସରିଲା ପରେ, ସେ ଗୋଟିଏ ଗୁପ୍ତ ଖାତା ଦେଖେଇଲେ ।

ସେ କହିଲେ ଦେଖ ତମେ ପିଲା ଲୋକ । ତମେ ବୋଲି ଏଇଟା ମୁଁ ତମକୁ ଦେଖାଉଚି । ଅନ୍ୟକୁ ନୁହେଁ । ନୂଆକରି ଥାନା ଚାର୍ଜରେ ଆସିଚ । ତେଣୁ ତୁମକୁ ଏଇଟା ଅନେକ ପରିମାଣରେ ସାହାଯ୍ୟ କରିବ । ଏ ରେଜିଷ୍ଟରଟା ହେଲା ରାଢଦନ ଯୋଉମାନେ ଆଖି ବୁଜି ପୋଲିସକୁ ସାହାଯ୍ୟ କରନ୍ତି ଏବଂ ସମର୍ଥନ କରନ୍ତି ସେମାନଙ୍କ ନାଁ ଓ ଠିକଣା । ହସି ହସି ସେ କହିଲେ, ସେମାନେ ଯେ ଆମକୁ ମାଗଣାରେ ସାହାଯ୍ୟ କରନ୍ତି କିମ୍ବା ଆମେ ଯେ ତାଙ୍କୁ ମାସିକଭତ୍ତା ଦେଉଁ ତା ନୁହେଁ । ତେବେ ତାଙ୍କୁ ଆମେ ଭଲ ମନ୍ଦରେ ସାହାଯ୍ୟ କରୁଁ ।

ମୁଁ କଥାଟା ଠିକ୍ ଭାବେ ବୁଝି ପାରିଲିନି । ପଚାରିଲି ସେମାନେ ଆପଣଙ୍କୁ କେମିତି ଭାବେ ସାହାଯ୍ୟ କରନ୍ତି ।

କାହିଁକି ? ଯେ କୌଣସି ପ୍ରକାର ସାହାଯ୍ୟ ? ଆପଣଙ୍କର ସରକାରୀ କାମ ଠାରୁ ଆରମ୍ଭ କରି ନିଜର ବ୍ୟକ୍ତିଗତ କାମରେ । ଏପରିକି ରାତି ଦୁଇଟାରେ ଖବର ଦେଲେ ମଧ୍ୟ ଦୌଡ଼ି ଆସିବେ ।

ମୁଁ ତଥାପି କଥାଟା ବୁଝି ପାରିଲିନି । ସେ ତେଣୁ କହିଲେ, ପ୍ରଥମ କଥା ସେମାନେ ସେମାନଙ୍କ ଗାଁର ପ୍ରତ୍ୟେକ କଥା ଆସି କହିବେ । ଚୌକିଦାର ଠାରୁ ଆପଣ ତ ଆଉ ସବୁବେଳେ ସତ କଥା ପାଇ ପାରିବେନି । ସରପଞ୍ଚ ରାଜନୈତିକ ଲୋକ । ତେଣୁ ଆପଣଙ୍କୁ ସବୁବେଳେ ତୃତୀୟ ଲୋକ ଉପରେ ନିର୍ଭର କରିବାକୁ ପଡ଼ିବ ।

ମୁଁ କହିଲି ତୃତୀୟ ଲୋକ ଯେ ନିଶ୍ଚୟ ଆପଣଙ୍କୁ ସତ କଥା କହିବ ତାର ଗ୍ୟାରେଣ୍ଟି କଅଣ ଅଛି ।

ସେ କହିଲେ,—ଦେଖ ବାବୁ ସତ ଓ ମିଛ ଭିତରେ ଗୋଟାଏ ସୀମାରେଖା ଅଛି ସତ କିନ୍ତୁ ସେଇଟାକୁ ଗୋଟାଏ ବାସ୍ତବବାଦୀ ରେଖା ବୋଲି ମୁଁ କେବେ ଗ୍ରହଣ କରେଁନି । ମୁଁ ସେଇଟାକୁ ଆପେକ୍ଷିକ ବୋଲି ଧରି ନିଏଁ । ତେଣୁ ମୋତେ ଅର୍ଥାତ୍ ମୋର କେଶ୍‌କୁ ସୁହାଉଚିଲା ଭଳିଆ କଥା ଯଦି ମୁଁ ତା ଠୁ ପାଏ, ତେବେ ତାକୁ ସତ୍ୟ ବୋଲି ଧରିନେବାରେ ଆପତ୍ତି

କେଉଁଠି ରହିଲା ? ସେଇ କଥାଟା ଉପରେ ପ୍ରାଧାନ୍ୟ ଦେଇ ମୋ କାମରେ ଆଗେଇ ଯାଏଁ ।

ଏଥିରେ ଆପଣ ସବୁବେଳେ ସଫଳ ହୁଅନ୍ତି ? —ମୁଁ ପଚାରିଲି ଆଶ୍ଚର୍ଯ୍ୟ ହୋଇ । କାରଣ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ପାଶ୍ କରି ପୋଲିସ ଚାକିରି କରିବାକୁ ଆସିଥିଲେ ମଧ୍ୟ ନାରାୟଣ ବାବୁଙ୍କ ଦର୍ଶନ ମୋତେ ନୂଆପରି ଲାଗୁଥିଲା ।

ସେ କହିଲେ ସେଣ୍ଟ ପର୍ସେଣ୍ଟ ସଫଳ ହୋଇଛି । ତେବେ କାହାର ଅସୁବିଧାରେ ପଡ଼ି ଯୋଉଠି ଗୋଟିଏ କେଶ୍‌ରେ ମୋଟେ କ୍ଲୁ ପାଇନି ସେଠି ମଧ୍ୟ ମୁଁ ପଛେଇ ଯାଇନି । ସେଠିକି ବେଳେ ଏମାନଙ୍କୁ ଧରେଁ । କହେଁ ଏଇଟା ମୋର ପ୍ରେଷ୍ଟିଜ୍ ଇସୁ । ଏଇଟାକୁ ଯେମିତି ହେଲେ ସଲ୍‌ଭ୍ କରେଇବାକୁ ପଡ଼ିବ । ପରେ କୋର୍ଟରେ ଫେଲ୍ ହେଉ ସେଥିରେ କିଛି ଯାଏ ଆସେନି । ଫଳରେ ସେମାନେ ସାକ୍ଷୀ ଯୋଗାଡ଼ କରି ଅଣି ଥାନାରେ ହାଜର ହୁଅନ୍ତି କିମ୍ବା ନିଜେ ସାକ୍ଷୀ ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି ।

ହୋ ହୋଇ କରି କାନ୍ଧ ଫଟେଇ ସେ ହସିବାକୁ ଲାଗିଲେ । ତାଙ୍କ ସହିତ ଅନ୍ୟମାନେ ମଧ୍ୟ ।

ତାପରେ ସିଗାରେଟ୍‌ରେ ଶେଷ ଚୁମ୍ବନ ଦେଇ ସିଗାରେଟ୍ଟାକୁ କାଇଦାରେ ନିଶଟାକୁ ସାଉଁଳୁ ସାଉଁଳୁ କହିଲେ—ଆଜିଯାଏ ତ ଫେଲ ମାରିନି ।

ନାରାୟଣ ବାବୁ ପୋଲିସ ମେଡ଼େଲ ଓ ରାଷ୍ଟ୍ରପତି ପୁରସ୍କାର ସବୁ ପାଇଛନ୍ତି । ତାଙ୍କ ସର୍ଭିସ ଫାଇଲରେ ପୁରସ୍କାର ପାଇଁ ଆଉ ଯାଗାନାହିଁ ।

ନାରାୟଣ ବାବୁଙ୍କ ତଦନ୍ତର ଧାରା ପ୍ରଣାଳୀ ମଧ୍ୟ ଅନନ୍ୟ । କେବଳ ଏଇଥି ପାଇଁ ତାଙ୍କର କ୍ରାଇମ ବ୍ରାଞ୍ଚକୁ ବଦଳି ହୋଇଛି । ସର୍ବୁ ଏସ୍. ପି. ତାଙ୍କୁ ଭଲ ପାଆନ୍ତି । ସମସ୍ତେ ତାଙ୍କରି ପରି ହେବାକୁ ଉଦାହରଣ ଦିଅନ୍ତି ।

ମୁଁ ନୀରବ ରହିବା ଦେଖି ସେ ପଚାରିଲେ,—ଆଉ କିଛି ଜାଣିବାକୁ ଚାହାନ୍ତି ନା, ଏ ଫାଇଲ ଏଇଠି ବନ୍ଦ କରିବି । ତାପରେ ଟିକିଏ ରହି ସେ କହିଲେ, ଆଉ କଅଣ ଦରକାର ? ସାଥିରେ ଆପଣଙ୍କର ଏ. ଏସ୍. ଆଇ. ବାବୁମାନେ ଅଛନ୍ତି । ସେମାନେ ଏକକ୍ସପର୍ଟ ବଲି । ସେମାନେ ଆପଣଙ୍କୁ ସବୁବେଳେ ସାହାଯ୍ୟ କରିବେ । ସେମାନେ ପୋଖତ । ଦେଖନ୍ତୁ ନାହାନ୍ତି, କାହାରି ମୁଣ୍ଡରେ ବାଳବାଳ ଗୋଟିଏ ବି ନାହିଁ ।

ଏ. ଏସ୍. ଆଇ. କୁଳମଣି ବାବୁ ଏ ଥାନାରେ ଚାରିବର୍ଷ ହେଲା ରହି-ଲେଣି । ସେ ରହିଲେ ଆପଣଙ୍କୁ ମୋଟେ ଚିନ୍ତା କରିବାକୁ ପଡ଼ିବନି । ଆପଣଙ୍କ ଗୋଡ଼ରେ କଣ୍ଟା ବାଜିବାକୁ ଦିଆଯିବନି ।

ମୁଁ ମନେ ମନେ ଆଶ୍ୱସ୍ତ ହେଲି । ସହକର୍ମୀମାନଙ୍କ ଠାରୁ ସହଯୋଗ ମିଳିଲେ ଆଉ ଚିନ୍ତା କଅଣ ! ଅଫିସରର ସେତିକ ହିଁ ବାଞ୍ଛାପୂର୍ଣ୍ଣ ।

ମୁଁ ଧନ୍ୟବାଦ କହି ଟିକଏ ହସିଲି ବେଳକୁ ନାରାୟଣ ବାବୁ ଦାଗୀ ରେଜିଷ୍ଟର ଖୋଲିଲେଣି ।

ସେ କହିଲେ ଏଇ ଗୋଟାକ ବିଷୟରେ କହି ସାରିଲି ପରେ ମୋ କାମ ମୁଁ ଶେଷ କରିବ । ଗ୍ୟେର, ଡ଼ାକୁ, ସିନ୍ଧକଟାଳୀ, ପକେଟମାର ଇତ୍ୟାଦିଙ୍କ କଥା ଏଥିରେ ଅଛୁ । ଖାଲି ଆମ ଏରିଆରେ ନୁହେଁ ପଡ଼ୋଶୀ ଥାନାରେ ମଧ୍ୟ ଯୋଉମାନେ ବେଶୀ ଦୁର୍ଦ୍ଦାନ୍ତ ସେମାନଙ୍କ ଇତିହାସ ମଧ୍ୟ ଅଛି । ବେଳେବେଳେ ସେମାନେ ଆମ ଏରିଆ ଭିତରକୁ ପଶି ଆସି ଅପରାଧ କରି ପୁଣି ନିଜ ଏରିଆକୁ ପଳାନ୍ତି । ସେ ସମସ୍ତଙ୍କୁ ଯଦି ମଝିରେ ମଝିରେ ଚେକ୍ କରାଯାଏ ତେବେ ଅପରାଧ ସଂଖ୍ୟା ବଢ଼ି ପାରିବ ।

ମୋର ପ୍ରୋବେସନ୍ ପିରିଅଡ଼ ଭିତରେ ବାରିପଦା ଥାନାରେ ଥିଲି ବେଳେ ଏ ବିଷୟରେ କିଛି କିଛି ଧାରଣା ଥିଲା । ତେଣୁ ମୁଁ ଟିକଏ ଉତ୍ସୁକ ହୋଇ ଉଠିଲି ।

ନାରାୟଣ ବାବୁ କହିଲେ ଏଥିରେ ଏପରି କେତେକ ନାଁ ପାଇବେ ଯୋଉମାନଙ୍କୁ କେହି କେବେ ଅପରାଧୀ ବୋଲି ଜାଣିନାହାନ୍ତି । ସେମାନେ ସମାଜରେ ବେଶ ପ୍ରତିଷ୍ଠିତ ମଧ୍ୟ । କିନ୍ତୁ ଆମେ କଅଣ କରିବୁ । ଆଇନ ଆଗରେ ଆମେ ଶୃଙ୍ଖଳ ଦାସଟିଏ । ଫାଙ୍କି ଦେଲେ ଧରିପିବୁ । ଅପରାଧ ବୋଲି ଥରେ ଯଦି ଆମର ସନ୍ଦେହ ଆଖିରେ ପଡ଼ିଗଲା ଏବଂ ତା ନାଁ ଏ ଖାତାରେ ଉଠିଗଲା, ତେବେ ଆମେ ନିରୁପାୟ । ଭବିଷ୍ୟତକୁ ଯେ କୌଣସି ଘଟଣାରେ ତାର ହାତଥିବ ଏ ସମ୍ଭାବନାକୁ ଆମେ ପୁରାପୁରି ଏଡ଼ାଇ ଦେଇ ପାରୁନା । ବରଂ ସେଇ ଲାଇନ୍‌ରେ ଅନୁସନ୍ଧାନ କରୁ । ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁ ରହିଲି ।

ସେ କହିଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସରକାର ଯେ ସବୁ କେଶ୍‌ରେ ଇନ୍‌ଭେଷ୍ଟିଗେସନ୍ ହେଉ କମ୍ପା ଆସାମୀ ଧରାପଡ଼ୁ ନୁହେଁ, ତା ନୁହେଁ । ଅନେକ କେଶ୍‌ରେ ସବୁ ଆପାତପ୍ରମାଣ ଥାଇ ମଧ୍ୟ ପ୍ରେସାର ପଡ଼େ ଫାଇନାଲ ରିପୋର୍ଟ ଦେବାକୁ । ସେଠି ଆପଣ କଅଣ କରିବେ ? ତେଣୁ ଯେତେବେଳେ ଯୁଆଡ଼ୁ ହାଓ୍ୱା ଆସିବ ସେଇ ଆଡ଼କୁ ଛତା ଦେଖାଇବାକୁ ପଡ଼ିବ ।

ନାରାୟଣ ବାବୁ ରେଜିଷ୍ଟର ବନ୍ଦ କଲେ ।

ସ୍ଥା ଭିତରେ ବେଶ କିଛୁଦିନ ଆରାମରେ କଟିଗଲା । ନୂଆ ନୂଆ ଦାୟିତ୍ୱ ଗ୍ରହଣ କରିଥିବାରୁ ମୋତେ ପ୍ରତ୍ୟେକ କଥାରେ ଟିକିଏ ଟିକିନିଖି ଦେଖିବାକୁ ଇଚ୍ଛା ହେଉଥାଏ । ତେଣୁ ଟିକିଏ ପରିଶ୍ରମ କରିବାକୁ ପଡ଼ିଲା । ପରିଶ୍ରମ ପାଇଁ ମୋର ଆପତ୍ତି ନାହିଁ । ମୋର ଇଚ୍ଛା ମୋ ଏରିଆରେ ମୋଟେ କୌଣସି ଅପରାଧ ନହେଉ । ଅପରାଧ ଶୂନ୍ୟ ଦିନ, ସପ୍ତାହ ପକ୍ଷ ଯେମିତି ବଢ଼ି ଯାଉଥାଏ, ସେମିତି ମୋ ଭିତରେ ଗୋଟେ ଅଶା ଓ ଅଶ୍ୱାସନାର ସମ୍ଭବ୍ୟ ଚନ୍ଦ୍ର ଆପେ ଆପେ ଅଙ୍କି ହୋଇ ଯାଉଥାଏ । ଯୋଉ ଦିନ ପ୍ରତିଜ୍ଞା ପୂର୍ତ୍ତି ହେଲା ସେଦିନ ମୁଁ କୁଳମଣି ବାବୁଙ୍କୁ ଡାକି କହିଲି,—ଅଜି ଥାନାରେ ତ୍ରିନାଥ ମେଳାର ଆୟୋଜନ ହେଉ ।

ତ୍ରିନାଥ ଠାକୁରଙ୍କ ଉପରେ ମୋର ପିଲା କାଳରୁ ପ୍ରଗାଢ଼ ବିଶ୍ୱାସ । ମୋ ବାପାଙ୍କର ଓ ତାଙ୍କ ବାପାଙ୍କର ମଧ୍ୟ ସେଇ ବିଶ୍ୱାସ । ମୋର ଏ ବିଶ୍ୱାସ ପଛରେ କୌଣସି ବୈଜ୍ଞାନିକ ଯୁକ୍ତି ଥିଲା କି ନା ମୁଁ ଜାଣେନା ।

ସେଦିନ ରାତିରେ ମୁଁ ଭଲରେ ଶୋଇଥିଲି । ସୁନ୍ଦର ନିଦ ହୋଇଥିଲା । ଏମିତି ନିଘୋଡ଼ ନିଦ ମୋତେ ଆଗରୁ କେବେ ହୋଇଥିଲା ବୋଲି ମୋର ମନେ ନାହିଁ । ନିଦରେ ମୁଁ ଏମିତି ଶୋଇ ପଡ଼ିଥିଲି ଯେ ଉଠୁ ଉଠୁ ଅନେକ ଡେରି ହୋଇଗଲା ।

ନିଦରୁ ଉଠି ମୁଁ ପାହାଚର ତଳକୁ ଓହ୍ଲାଇଲା ବେଳକୁ ଦେଖିଲି ଥାନା ବାରଣ୍ଡାରେ ଲୋକଟିଏ ବସିଛି । ଚୌକିଦାରଟିଏ ହୋଇଥିବ ଭାବି ମୁଁ ତା ପାଖକୁ ଯାଇ ପଚାରିଲି—କିରେ ତୁ କଅଣ ଏତେ ସକାଳୁ ଆସିଲୁଣି ?

ସେ କିନା ଲୋକଟା କାନ୍ଦି ଉଠିଲା । କହିଲା ହଜୁର ମୋର ସର୍ବସ୍ୱ ସରି ଯାଇଛି । କାଲି ରାତିରେ ମୋ ଘରୁ ଚୋରମାନେ ସର୍ବସ୍ୱ ଲୁଟି ନେଇ ଯାଇଛନ୍ତି । ଝିଅ ବାହାଘର ପାଇଁ ଯେତେ ସବୁ ରଖିଥିଲି ଆଉ କିଛି ନାହିଁ ।

ମୁଁ ଚମକି ପଡ଼ିଲି । ମୋର ସମସ୍ତ ଆତ୍ମସନ୍ତୋଷ ଯେ ପୋଡ଼ି ପାଉଁଶ ହୋଇଯାଇଛି ଏଥିରେ ସନ୍ଦେହ ନାହିଁ ।

ପାଟି ଶୁଣି କୁଳମଣି ବାବୁ ଦୌଡ଼ି ଆସିଲେ । ସବୁ ଶୁଣି ବଡ଼ ଦମ୍ଭର ସହିତ ସେ ତାକୁ କହିଲେ—ହଉ ଏଥିରେ କାନ୍ଦିବାର କଅଣ ଅଛି । ଆମେ ଥାଉଁ ଥାଉଁ ତୋର ଚିନ୍ତା କଅଣ ? ଆମେ ଏବେ ଯାଉଛୁ । ଚୋର ନିଶ୍ଚୟ ଧରାପଡ଼ିବ । ଏବଂ ସବୁ ମାଲ ତୋର ମିଳିଯିବ । ତୁ ଚିନ୍ତା କରନା । ତୁ ଘରକୁ ଯାଆ । ଆମେ ଏବେ ଯାଇ ପହଞ୍ଚିବୁ ।

ତାପରେ ସେ ମୋତେ କହିଲେ—ଆପଣ ସାର୍ ବ୍ୟସ୍ତ ହୁଅନ୍ତୁ ନା । ଏଇଟା ସେ ରଘୁଆର କାମ ।

ରଘୁଆ ?

ହଁ ସାର ରଘୁ । ବଡ଼ ବଦମାସ । ଗୋଟାଏ ଗୋଟାଏ ଘରରେ ଛଅ ଘଣ୍ଟା ଶ୍ରେଣୀ ଭିତରେ ସେ ଓସ୍ତାଦ୍ । ଛଅ ଥର ଜେଲ ଗଲାଣି । ପଚାଶରୁ ବେଶୀ ବୟସ ହେଲାଣି । ତଥାପି ପ୍ରକୃତ ଗୁଣ୍ଡା ।

ଦିନ ନଅଟା ସମୟ ଆମେ ଯାଇଁ ମଙ୍ଗଳପୁର ଗାଁରେ ପହଞ୍ଚିଲୁ । ପାଖ ଗାଁରୁ ରଘୁଆକୁ ଡକାହେଲା । ସେ ଆସିଲା । ସାଥିରେ ତାର ସ୍ତ୍ରୀ ଓ ଦଶ ଏଗାର ବର୍ଷର ଗୋଟିଏ ପୁଅ ଓ ବାର ତେର ବର୍ଷର ଗୋଟିଏ ଝିଅ ।

ରଘୁ ଲମ୍ବ ହୋଇ ମୋ ଗୋଡ଼ ତଳେ ପଡ଼ିଗଲା । ବିଶ୍ୱାସ କରନ୍ତୁ ହଜୁର ମୁଁ କିଛି ଜାଣେନି । ଛଅଦିନ ହେଲା ମୋତେ ଜର । ମୁଁ ଉଠି ବସି ପାରୁନି । ହଜୁର ନିଜେ ଦେଖନ୍ତୁ । ସେ ତା ହାତଟା ମୋ ଆଡ଼କୁ ବଢ଼ାଇ ଦେଲା ।

ତା ସ୍ତ୍ରୀ ମୋ ଗୋଡ ଦିଟା ଜାବୁଡ଼ି ଧରିଲା । ହଜୁର ବିଶ୍ୱାସ କରନ୍ତୁ । ଛଅଦିନ ହେଲା ଘାଏ ବଛଣା ଗୁଡ଼ିନି । ପେଟକୁ ପାଣି ଟୋପେ ଯାଇନି । ମୋ ଛୁଆ ମଥାରେ ହାତ ଦେଇ କହୁଚି ।

କୁଳମଣି ବାବୁ ଚିଡ଼ିକି ଆସିଲେ—ଏ ମାଇକିନିଆ । କାହା ଆଗରେ ଭଳେଇ ହଉଚୁ ଲେ ? ମୁଁ କଅଣ ତୋତେ ଜାଣିନି ।

ମୁଁ ତାଙ୍କୁ ଅଟକେଇଲି । କହିଲି ଟିକିଏ ରହନ୍ତୁ ମୁଁ ତାକୁ ଟିକିଏ ଇଣ୍ଟରୋଗେଟ୍ କରେ ।

ସେ କହିଲେ, ସ୍ୱାକୁ ଇଣ୍ଟେରୋଗେସନ କେବଳ ବେତରେ କରାଯାଏ ସାର୍ । ଆପଣ ସ୍ୱାକୁ ମୋତେ ଛାଡ଼ି ଦିଅନ୍ତୁ । ମୁଁ ଠିକ୍ କଥା ଆଦାୟ କରିଦେବି । ମୋ ପାଖଦେଇ ଡେଇଁ ପଡ଼ି କୁଳମଣି ବାବୁ ରଘୁଆକୁ ଶକ୍ତ ଗୋଇଠା ମାରି ଦେଲେ । ଏ ବାଆ କହି ରଘୁଆ ତଳେ ପଡ଼ିଗଲା । ତା ସାଥିରେ ତାର ସ୍ତ୍ରୀ ଓ ପିଲମାନେ ମଧ୍ୟ ହେ ହେ କରି କାନ୍ଦି ଉଠିଲେ ।

ମୁଁ ରଘୁଆକୁ ଉଠେଇଲି । ପାଣି ଦେଲି ପିଇବାକୁ ।

ତା ପରେ ସମସ୍ତେ ନିରବ । ବାୟୁମଣ୍ଡଳଟା ହଠାତ୍ ଯେମିତି ଥଣ୍ଡା ହୋଇଗଲା । ଆମାକୁ ଆସିବା ପୂର୍ବରୁ ମୁଁ ରଘୁଆର ହିଷ୍ଟ୍ରି ସିଟ୍ ପଢ଼ିଚି । A କ୍ଲାସର ଦାଗୀ । ସବୁବେଳେ ଚେକ୍ କରାଯାଏ । ଅନ୍ତତଃପକ୍ଷେ ସପ୍ତାହରେ ଦୁଇ ତିନିଥର ନିଶ୍ଚୟ । ଛଅଥର ଜେଲ ଯାଇଚି । ସେଇ ଗୋଟିଏ ମୋଡସ ଅପରାଣ୍ଡି । ଯୋଉ ପ୍ରକାର ଶ୍ରେଣୀ ଯାଇଚି ସେ ପ୍ରକାର ଶ୍ରେଣୀ

କରିବା ପାଇଁ ଅଉ କେହି ଦାଗୀ ଆମ ଏରିଆରେ ନାହାନ୍ତି । ଅନ୍ୟ ଇଲାକାରେ ମଧ୍ୟ ନୁହେଁ ।

ମୁଁ ରଘୁଆକୁ ଅନେଇଲି । ସେ ବି ମୋତେ ଅନେଇଲା । ମୁଁ ତା ପାଖକୁ ଘୁଞ୍ଚିଯାଇ କହିଲି— ସତ କଥା କହିଦେଲେତ ଏତେ କଥା ହୁଅନ୍ତାନି । ତୋର ଏ ଅବସ୍ଥାରେ ଆମକୁ କଅଣ ମାରିବାକୁ ସୁଖ ଲାଗୁଚି ?

ରଘୁଆ କହିଲା କଥାଟି ସେଇଠି ବାବୁ । ମୁଁ ସତ କହୁଥିବା ଯାଏ ମୋ ଉପରେ ମାଡ଼ ପଡ଼େ । ମିଛ କହିଲେ ହିଁ ସେଇଟା ବନ୍ଦହୁଏ । ସତର ସୀମା ପାର ହେଲେ ଯାଇ ମୁଁ ବଞ୍ଚିବାର ଭରସା ପାଏଁ ।

ତାପରେ ?

ତାପରେ ଆଉ କଅଣ ? ମୁଁ ଜେଲ ଯାଏଁ । ବର୍ଷେ ମାସ ସେଠି ଆରାମରେ କଟେଇ ଫେରିଲେ ଦୁଇଦିନ ବି ଯାଇ ନଥିବ ପୁଣି ସେଇ ଅବସ୍ଥା । ଟିକଏ ରହି ସେ କହିଲା—ମୋ ପାଇଁ ଜେଲ ଭଲ ବାବୁ । ମୋତେ ପଠେଇ ଦିଅନ୍ତୁ ।

କୁଳମଣି ବାବୁ ପିଣ୍ଡା ଉପରୁ ପାଟିକରି ଉଠିଲେ । ତା କଥା ମୋଟେ ବିଶ୍ୱାସ କରନ୍ତୁନି ସାର୍ । ଏମିତି ଡ୍ରାମା ସେ ସବୁବେଳେ କରେ । ଏବଂ ଶେଷରେ ସେ ସବୁ ମାନିଯାଏ ।

ରଘୁଆ ନୀରବ ।

ମୁଁ କହିଲି କିରେ ନୀରବ ରହିଲୁ ଯେ । କୁଳମଣି ବାବୁଙ୍କ କଥାର ଜବାବ ଦଉନୁ ?

ସେ କହିଲା ମୁଁ କଅଣ ନାହିଁ କହୁଚି ହଜୁର । ମୁଁ ତ ସେଇ କଥା କହୁଚି ।

ରଘୁଆକୁ ସେ ଦିନ ଥାନାକୁ ଆଣି ଅଟକେଇ ରଖାଗଲା । ସଂଧ୍ୟା ସୁଦ୍ଧା ଆଉ ଯେତେ ଦାଗୀ ଥିଲେ ସେମାନଙ୍କୁ ମଧ୍ୟ ଥାନାକୁ ଆଣି ଅଲଗା ଅଲଗା ଜେରା କରାଗଲା । ରାତି ଦୁଇଟା ସୁଦ୍ଧା ସମସ୍ତଙ୍କ ଉପରେ ସବୁପ୍ରକାର ଶକ୍ତି ଓ କୌଶଳ ପ୍ରୟୋଗ କରି ଶେଷକୁ ଆମେ ଯେତେବେଳେ ଥକି ପଡ଼ିଲୁ ଏବଂ ଦାଗୀମାନେ ନିର୍ଜୀବ ପ୍ରାୟ ହୋଇ ପଡ଼ିଲେ, ସେତେବେଳେ ଆମ ଭିତରେ ଚିନ୍ତା ପଶିଲା—କାଲି ସକାଳେ S. P.ଙ୍କ ଠାରୁ ମେମୋ ଆସି ପହଞ୍ଚିବ । ଏତେ ବଡ଼ ଫେଲ୍ୟୁରକୁ କଅଣ କେହି କେବେ ସହ୍ୟ କରିପାରେ ? ପୋଲିସ ଉପରୁତ ଲୋକଙ୍କ ଆସ୍ଥା ତୁଟିଯିବ । ଆଉ ଏ ଖବରକାଗଜବାଲା କାଲି ସକାଳ ସେମାନେ ଏତେ ଏତେ ଅକ୍ଷରରେ ଛାପିଦେବେ ।

ଆମେ ଶେଷରେ ଠିକ୍ କଲୁଁ ରଘୁଆ ଆପାତତଃ ମାନି ଯାଉଥିବାରୁ ତାକୁ ସେଇ କେଶ୍‌ରେ ଫରୱାର୍ଡ କରି ଦିଆଯିବ । ଏବଂ ଅନ୍ୟମାନଙ୍କୁ ବିଭିନ୍ନ ଦଫାରେ ଜେଲ ହାଜତରେ ରଖିବା ପାଇଁ କୋର୍ଟକୁ ପଠେଇ ଦିଆଯିବ ।

ଉଦ୍ଦେଶ୍ୟ ହେଲା ସବୁ ଗୁଣ୍ଡାଙ୍କ ଜେଲରେ ରହିଲେ ଅନ୍ତତଃ ବେଶ୍ କିଛି ଦିନ ପାଇଁ ଆମେ ନିଶ୍ଚିନ୍ତ ଆରାମରେ ରହି ପାରିବା । ତା ଛଡ଼ା S. P.ଙ୍କ ମଧ୍ୟ ଦୃଢ଼ କାର୍ଯ୍ୟାନୁଷ୍ଠାନ ଫଳରେ ଅପରାଧ ପ୍ରବୃତ୍ତି ମାତ୍ରାରେ ରୋକା ଯାଇ ପାରିଛି ବୋଲି କହିହେବ ।

ତାହା ହିଁ ହେଲା । ସମସ୍ତଙ୍କ ପାଇଁ କାଗଜପତ୍ର ପ୍ରସ୍ତୁତ କରିବାବେଳକୁ ଆମକୁ ସେଦିନ ଡେରି ହୋଇଗଲା । ଏ. ଏସ୍. ଆଇ. ମାନେ ଏସବୁ କାମ କରୁଥିବା ବେଳେ ମୁଁ ନିଜର ଟେବୁଲ୍ ଉପରେ ଢୁଳେଇ ପଡ଼ିଥିଲି । ପାଖ କୋଠରୀରେ ଅନ୍ୟମାନେ ତାଙ୍କ କାମରେ ଲାଗି ଥାଆନ୍ତି ।

କିଏ ଜଣେ ମୋ ଅଫିସ ରୁମ୍ ଭିତରକୁ ପଶି ଆସୁଥିବାର ଶବ୍ଦ ଶୁଣି ମୁ ଚମକି ପଡ଼ିଲି ।

ମୋ ସାମନାରେ ଠିଆ ହୋଇଛି ବସନ୍ତପୁରୁ ପଞ୍ଚାୟତର ଚୌକିଦାର ।

ପଚାରିଲି କିରେ କଅଣ ହେଲା । ଏତେ ସକାଳୁ ?

ନମସ୍କାର ପକେଇ ସେ କହିଲା—ହଜୁର କାଲି ରାତିରେ ଆମ ପଞ୍ଚାୟତରେ ଏକାଥରେ ତିନି ତିନିଟା ଚୋରି । ପ୍ରାୟ ଦୁଇଲକ୍ଷ ଟଙ୍କାରୁ ବେଶୀ ଯାଇଛି ।

ମୋ ହୃତ୍‌ପିଣ୍ଡଟା ଏକାଥରେ ବନ୍ଦ ହୋଇଗଲା ପରି ଲାଗୁଥିଲା ।

ମୁଁ ପଛକୁ ଫେରି ଚାହିଁଲି ରଘୁଆ ହାଜତ ଭିତରୁ ଆଉ ହସି ହସି କହିଲା,—ମୁଁ କରିଛି ହଜୁର, ମୁଁ କରିଛି । ଏଥିରେ ବି ମୋ ନାଁ ଟା ଲେଖି ଦିଅନ୍ତୁ ।

ହାଜତର ରେଲିଂ ଭିତରୁ ତାର ହସର ଦାନ୍ତ ଗୁଡ଼ିକ ମୋତେ ପରିଷ୍କାର ଦେଖାଯାଉଥାଏ । ଜ୍ୱର ଜନିତ ଦୁର୍ବଳତା ବା ମାଡ଼ ଜନିତ ଅବସାଦ ତାର ଆଉ ମୋଟେ ନଥାଏ ।

□ କ୍ୱାଟର ନିଂ. ସି ୮, ନାଲକୋନଗର
ପୋଷ୍ଟ - ନାଲକୋନଗର
ଜିଲ୍ଲା - ଢେଙ୍କାନାଳ - ୭୫୯୧୪୫

• ଗୋଟିଏ ଦଳ ଅବସନ୍ନ ଏବଂ ଅବହେଳିତ ମଣିଷ ତାଂକର ଅଧିକାର ଜାଣିପାରୁ ନଥିବା ଅବସ୍ଥାରେ ମଣିଷ ସଭ୍ୟତାର ଯେଉଁ ଉନ୍ନତି ଘଟିଛି……

## କାହାଣୀ

# ଗୋଟିଏ ସୁଡ଼ଙ୍ଗରୁ ମୁକ୍ତି

## ରଜନୀକାନ୍ତ ଦାସ

ଭଗବାନ ବିଷ୍ଣୁ ଯେତେଥର ଅବତାର ଗ୍ରହଣ କରିଛନ୍ତି, ତାହାର କାରଣ ଗୁଡ଼ିକ ମାତ୍ର ଦୁଇଟି ଘଟଣାରେ ସୀମାବଦ୍ଧ । ଗୋଟିଏ ହେଉଛି ଭୂମି ସଂପର୍କୀୟ ବିବାଦ ଏବଂ ଅନ୍ୟଟି ନାରୀହରଣ । ପ୍ରତି ଯୁଗରେ ଏହି ବିବାଦ ଘଟୁଥିଲା ।

ପୃଥିବୀ ବାସୀଙ୍କ ହାତରେ ଭୂସଂପତ୍ତି ରହୁଥିବାରୁ ସବୁବେଳେ ବିବାଦ ଲାଗିଥାଏ । ଭଗବାନ ବିଷ୍ଣୁ କ୍ଷୀରସିନ୍ଧୁରେ ବିଶ୍ରାମ କରି ପାରୁନଥିଲେ । ସବୁବେଳେ ପୃଥିବୀ ବାସୀଙ୍କ କାନ୍ଦକଟା ଶୁଭୁଥିଲା । ଅନ୍ୟ କୋଦଟି ଥିଲା ନାରୀ ଜାତି ପ୍ରତି ଦୁର୍ବୃତ୍ତ ମାନଙ୍କର ମୋହ ଏବଂ ଅକର୍ଷଣ ।

ବିଷ୍ଣୁ ବିଚାର କରି ଦେଖିଲେ ଯେ ମଣିଷଙ୍କ ହାତରେ ଭୂସଂପତ୍ତି ଥିବାଯାଏ, ସେ କଦାପି ବିଶ୍ରାମ କରି ପାରିବେ ନାହିଁ । ସେଇ ହେତୁ ଗୋଟାଏ ଯୁଗରେ ଅବତାର ବଳରେ ଭୂସଂପତ୍ତିକୁ ଫେରାଇ ନିଆଯାଇଥିଲା । ଏହା ଥିଲା ବଳୀ ରାଜାଙ୍କ କାହାଣୀ । ତାହା ପରେ ଭଗବାନ କିଛି ଦିନ ବିଶ୍ରାମ କରିଥିଲେ ।

ବହୁତ ବର୍ଷ କଟିଗଲା । ଏବେ କିଛି ଦିନ ତଳେ ପୁଣି ଥରେ ଗୋଟିଏ ଘଟଣା ଘଟିଲା, ଯାହା ଉପରେ ଜରୁରୀ ହସ୍ତକ୍ଷେପ କରିବା ପାଇଁ ସୃଷ୍ଟିକର୍ତ୍ତା ବାଧ୍ୟ ହୋଇଛନ୍ତି ।

ସେ ବଳୀରାଜାଙ୍କ ପାଖରୁ ଭୂସଂପତ୍ତି ଫେରାଇଆଣି ସରକାରଙ୍କ ଜିମାରେ ଛାଡ଼ି ଦେଇଥିଲେ । ସରକାର ହେଉଛି ମାନବ ରଚିତ ଏକ ସଂସ୍ଥା । ତାହା କେବଳ ମର୍ତ୍ତ୍ୟ ଭୂମିରେ ରହିଥିଲା । ସ୍ୱର୍ଗରେ ରହିଥିଲା ଇନ୍ଦ୍ରଙ୍କ ସଂସ୍ଥା ।

ମର୍ତ୍ତ୍ୟ ଭୂମିର ସରକାର ଗୋଟାଏ ବିଭାଗ ଖୋଲି ଜମିବାଡ଼ିର ହିସାବ ରଖିଲେ । ଉତ୍ପାଦନ କାର୍ଯ୍ୟ ନିମନ୍ତେ ଜମି ଗୁଡ଼ିକ ଚାଷୀ ମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ । ସେମାନେ ଭୂମି ଦେହରୁ ଫସଲ ଫଳାଇ ସରକାରଙ୍କୁ ଖଜଣା ଦିଅନ୍ତି ।

ଏକଦା ଗୋଟାଏ ପ୍ରକାର ସବର୍ଣ୍ଣ ଗେରୁଆ ମାଟି ଉପରେ ଧଳେ ମଣିଷଙ୍କ ପାଖରୁ ଜମିବାଡ଼ି ସବୁ ଛଡ଼ାଇ ନେବା ଆବଶ୍ୟକ ହେଲା। ସରକାର ଏତେ ଭାବିଲେ ଯେ ସୃଷ୍ଟି କର୍ତ୍ତାଙ୍କୁ ନଜଣାଇ ସେ ତାହା ଛଡ଼ାଇ ଆଣିବେ ।

କିନ୍ତୁ ତାହା ହୋଇପାରିଲା ନାହିଁ । ପ୍ରକୃତରେ ଦେଖିବା ବେଳକୁ ସେହି ଅଞ୍ଚଳର ବାସିନ୍ଦାମାନେ ବାମନଙ୍କ ପରି ଦିଶୁଛନ୍ତି । ସେମାନେ ଯେତେବେଳେ ଠିଆ ହେଉଥିଲେ ପାଦ ଦୁଇଟା ସମତଳ ଭୂମି ଉପରେ ସମାନ ଭାବେ ପଡ଼ୁନଥିଲା । ପବନରେ ଦୋହଲିଲା ଭଳି ଗୁଳୁଥିଲେ । ଏଦୁଆ ଲୋକଙ୍କ ପରି ଚିଲ ଚିଲ ବେହୋଶ ଭାବେ କଥାବାର୍ତ୍ତା କରୁଥିଲେ ।

ସେମାନେ ସମଗ୍ର ପରିବେଶର ଦାସ । ଅର୍ଥାତ ସମସ୍ତ ପରିବେଶକୁ ଅନ୍ୟ କେହି ଜଣେ ନିୟନ୍ତ୍ରଣ କରୁଥିଲା । ହାତରେ ଭୂସଂପତ୍ତି ଥିଲେ ବି ନିଜର ଭୂସଂପତ୍ତି ତାଙ୍କର ଦାସ ଭଳି କଥା ମାନୁନଥିଲା ।

ଲୋକ ଗୃହୀନ ରହୁଥିଲେ ସୂର୍ଯ୍ୟଙ୍କ ଭିତରେ । ନୂଆଣିଆ କୁଡ଼ିଆ ଭିତର ବଂଚୁଥିଲେ । ଏଥିରୁ ଜଣା ପଡ଼ୁଚି ଯେ ସେମାନେ ପ୍ରକୃତିର ସନ୍ତାନ ହେଲେ ମଧ୍ୟ ପ୍ରାକୃତିକ ପାଣିପାଗ ସେମାନଙ୍କ ଉପରେ ନିଜସ୍ୱ ହାସଲ କରିଥିଲା ଏବଂ ସେମାନେ ତାହାର ଦାସ ହୋଇ ରହୁଥିଲେ । ଅନେକ ପ୍ରକାର ପରାଧୀନତାର ବଶବର୍ତ୍ତୀ ହୋଇ ସେମାନେ ଏହି ଅବସ୍ଥା ଭୋଗୁଥିଲେ ।

ସଂସାର ଭିତରେ ତାଙ୍କୁ କେହି ଚିହ୍ନୁନ୍ତି ନାହିଁ ଏବଂ ସେମାନେ ମଧ୍ୟ କାହାକୁ ଚିହ୍ନି ନାହାନ୍ତି । ସବର୍ଣ୍ଣ ଗେରୁଆ ମାଟିର ସନ୍ତାନ ଗୁଡ଼ିକ ଏକୁଟିଆ ରହି ଯାଇଥିଲେ ।

ଭଗବାନ ସୃଷ୍ଟିଙ୍କୁ ଆହ୍ୱାନ ମିଳିଲା ସେହି ସ୍ଥାନରୁ, ଯେଉଁଠାରେ ଏକ ନୂତନ ସହର ବସିବା ସ୍ଥିର ହେଲାଣି । ସେଇଟା ଗୋଟାଏ କଲକାରଖାନା ସହରରେ ପରିଣତ ହେବ । ସରକାର ନିଜର ପରିକଳ୍ପନା ମଞ୍ଜୁର କରି ରଖିଥିଲେ । ଗେରୁଆ ଏବଂ ସବର୍ଣ୍ଣ ମୃତ୍ତିକା ଉପରେ ବାସକରୁଥିବା ଲୋକଙ୍କ ଉପରେ ବିପଦ ଘନେଇ ଆସିଲା ।

ପୁରାତନ ଯୁଗରୁ ସେମାନେ କେବଳ ମାତ୍ର ଭୂତପ୍ରେତ ଓ ପିଶାଚ ମାନଙ୍କୁ ଚିହ୍ନିଛନ୍ତି । ସେମାନେ ଭାବୁଥିଲେ ଯେ ଜୀବନର ସବୁ ସୁଖଦୁଃଖ ପାଇଁ ଭୂତ ପ୍ରେତ ମାନେ ଦାୟୀ । ନିରାପଦରେ ରହିବା ଲାଗି ଭୂତ ପ୍ରେତ ମାନଙ୍କୁ ମଦ୍ୟ ପିଆଇ ସନ୍ତୁଷ୍ଟ କରି ରଖୁଥିଲେ । ଭୂତ ପ୍ରେତଙ୍କ ପ୍ରସାଦ ଭଳି ମଦ୍ୟ ପିଇବା ସେମାନଙ୍କର ଅଭ୍ୟାସରେ ପରିଣତ ହୋଇଥିଲା ।

ସହର ବସିବା ଲାଗି ଯେତେବେଳେ ପରିଯୋଜନା ଜାରିହେଲା ଏବଂ ଘୋଡ଼ସବାରମାନେ ଲୋକଙ୍କୁ ଉଠିଯିବା ଲାଗି ଘୋଷଣା କରି ବୁଲିଲେ,

ସେଠିକବେଳେ ସେମାନଙ୍କ ପରିବେଶର ନିପୁଣ କବିଥିବା ଶୁଭଚନ୍ଦ୍ର ଗୋଟାଏ ପ୍ରକାର ପରାମର୍ଶ ଦେଲେ । ସେହି ପରାମର୍ଶକୁ ସେମାନେ ଗ୍ରହଣ କରିଥିଲେ ।

ଶୁଭଚନ୍ଦ୍ର କହିଲେ—"ତୁମେମାନେ ଟଣ୍ଡେ ଟଣ୍ଡେ ପଥର ଲଦିହୋଇ ମାଟି ଉପରେ ବସି ରହ । ତାହାହେଲେ ତୁମକୁ କେହି ଉଚ୍ଛେଦ କରି ପାରିବେ ନାହିଁ ।"

ନୂଆ ସହର ବସିବାଲାଗି ଘର ଗୁଡ଼ାକ ଭଙ୍ଗାହେବ । ଛୋଟ ଗୁଡ଼ାକ ଉପୁଡ଼ି ପଡ଼ିବ । ଖାଲ, ଢିପ, ବଣବୁଦା, ପୋଖରୀ ଗଡ଼ିଆ ସବୁ ସମତଳ କରି ଦିଆଯିବ । ପୁରୁଣା ଭଙ୍ଗା ଘର ଗୁଡ଼ାକ ଆଉ ରହିପାରିବ ନାହିଁ ।

କିନ୍ତୁ ବାମନ ଚେହେରାଧାରୀ ମଣିଷମାନେ ବେକ ଉପରେ ପଥର ବାନ୍ଧି ବସିଥିଲେ । ଅବଶିଷ୍ଟେଟ ଶିମ୍ପି ଭଙ୍ଗା ଗୋଟାଏ ଗୋଟାଏ ବଡ଼ ବୋତଲ ସେମାନେ କାଖରେ ଜାକିଥିଲେ । ବୋତଲର ମୁହଁକୁ ଥରେ ଥରେ ଚୁମ୍ବନ କରି ସେମାନେ ତାହାର ସାହାଯ୍ୟରେ ନିଶ୍ୱାସପ୍ରଶ୍ୱାସ ନେଉଥିବା ଜଣାପଡ଼ୁଥିଲା ।

ଏହି ବୋତଲଟି ଥିଲା ଶୁଭଚନ୍ଦ୍ରଙ୍କର ଦାନ । ଲୋକଙ୍କ ଦେହରେ ବଳ ନଥିଲା । ଭୂତ ପ୍ରେତଙ୍କ ପ୍ରସାଦରୁ ମୁଣ୍ଡଏ ନପିଇଲେ କିଛୁ କଥାବାର୍ତ୍ତା କରି ପାରନ୍ତି ନାହିଁ । ପଥର ବାନ୍ଧିହୋଇ ନବସିଲେ ନିଶ୍ଚିତ ରୂପେ କେଉଁଆଡେ ଉଡ଼ିଯିବେ । ସେହି କାରଣରୁ ଅଭ୍ୟାସମାନଙ୍କୁ ଠିକାରେ ଧରିଥିବା ପରିବେଶର ମାଲିକ ମାନଙ୍କ ଆଦେଶହିଁ ଶିରୋଧାର୍ଯ୍ୟ ।

ବିବର୍ଣ୍ଣ ଗେରୁଆ ମାଟି ଉପରେ କଲକାରଖାନା ବସିବା ଲାଗି ପଡ଼ିଥିଲା ଯନ୍ତ୍ରପାତି । ନୂଆ ନୂଆ କୋଠାଘର ତିଆରି ହେଲା । ରାସ୍ତା, ପୋଲ୍ ଏବଂ କଲଭର୍ଟ ନିର୍ମାଣ ହେଲା । ଅନେକ ସ୍ଥାନରେ ବଡ଼ ବଡ଼ ଟନେଲ ପରି ଗର୍ତ୍ତ ଖୋଳାହେଲା ।

ଧନଗଡ ବଜାର ଆଲୁଅ ଜଳୁଛି । ଚତୁର୍ଦ୍ଦିଗକୁ ବଜାର ତାର ଟଣା-ହେଉଛି । ଡମ୍ପର, ବୁଲଡ଼ୋଜର ଏବଂ ଶହ ଶହ ଟ୍ରକର ଗର୍ଜନରେ ଆକାଶ ପାତାଳ କମ୍ପିଯାଉଛି । ପ୍ରଚଣ୍ଡ ଧୂଳିପଟଳ ଆକାଶକୁ ଅଚ୍ଛାଦିତ କରିଥିଲା ।

ପୁରାତନ ଜନବସତିର ପ୍ରତ୍ୟେକ ଇଞ୍ଚ ଜାଗା ଉପରେ ନୂଆ ନୂଆ ଆଗନ୍ତୁକ ପାଦ ଦେଇଛନ୍ତି । ସମସ୍ତେ ଖୋଜୁଛନ୍ତି ରହିବା ସ୍ଥାନ । କିନ୍ତୁ ସେଠାରେ ରହିଥିବା ପୁରାତନ ଭୂମି ମାଲିକମାନେ ନିଜ ବେକରେ ମହଣ ମହଣ ପଥର ବାନ୍ଧି ଅଚଳ ହୋଇ ବସିଛନ୍ତି । ସେମାନେ ସେଠାରୁ ହଟିବେ ନାହିଁ—ଏହାହିଁ

ଥିଲା ପ୍ରତିଜ୍ଞାବାଣୀ । ସେହି ଉଦ୍ଦେଶ୍ୟରେ ତାଙ୍କ ଦେହରେ ପଥର ବନ୍ଧା ଯାଇଥିଲା ।

ଭଗବାନ ବିଷ୍ଣୁଙ୍କ ପାଖରେ ଏହି ଖବର ପହଞ୍ଚିଗଲା । ସେ ପଠାଇଲେ ବିଶ୍ୱକର୍ମାଙ୍କୁ । ବିଶ୍ୱକର୍ମା ଜଣେ ବଡ ଇଞ୍ଜିନିୟର । ସେ ପ୍ରଥମେ କଳ କାରଖାନା ବସାଉଥିବା ଯନ୍ତ୍ରୀ ତନ୍ତ୍ରୀ ଓ ବିଶେଷଜ୍ଞ ମାନଙ୍କୁ ଭେଟିଲେ । ସେମାନେ ତାଙ୍କୁ ବହୁତ ଆଦରରେ ପାଗ୍ରେଷ୍ଟ ନେଇ ନିଜ ପ୍ରକଳ୍ପର ଡ୍ରଜାଇନ, ଡ୍ରଇଂ ଏବଂ ଏଷ୍ଟିମେଟ ବୁଝାଇ ଦେଇଥିଲେ ।

ବିଶ୍ୱକର୍ମାଙ୍କ ହୃଦ୍‌ବୋଧ ହୋଇଗଲା ଯେ ସଂସାର ଭିତରେ ନିଶ୍ଚିତ ରୂପେ ଗୋଟାଏ ପ୍ରକାର ଅଲୌକିକ ଘଟଣା ଘଟୁଛି । ଏହା ଫଳରେ ସ୍ୱର୍ଣ୍ଣ ମୃତ୍ତିକାର ଚେହେରା ବଦଳିଯିବ । ଗୋଟାଏ ଗୋଟାଏ ବଡ ଧରଣର କଳ କାରଖାନା ବସିବା ଲାଗି ବହୁତ ଗୁଡ଼ାଏ ଭୂମି ଦରକାର ।

ପୂର୍ବକାଳରେ ସବୁ ଗୁଡାକ ଯନ୍ତ୍ରପାତି କାରଖାନା ସ୍ୱର୍ଗ ଉପରେ ବସିଥିଲା । ସେହି କାରଣରୁ ସ୍ୱର୍ଗ ଭୂମିରେ ଅଧିକତର ସଭ୍ୟ ଅର୍ଥାତ ଦେବତାମାନେ ବାସ କରୁଥିବା କଥାଯାଉଛ । ଇନ୍ଦ୍ରଙ୍କ ଜିମାରେ କଳକାରଖାନା ବସାଇବାର ଦାୟିତ୍ୱ ନ୍ୟସ୍ତ ଥିଲା । ସେ ଅନେକ ଗୁଡାଏ ଯନ୍ତ୍ରପାତି କାରଖାନାବସାଇ ଯୁଦ୍ଧ ହତିଆର ମଧ୍ୟ ତିଆରି କରୁଥିଲେ ।

ଆକାଶ ଦେଶର ଶୂନ୍ୟ ଭୂମି ଉପରେ କାରଖାନା ବସୁଥିବାରୁ ସେଠାରେ କାହାକୁ ଜମିବାଡ଼ିରୁ ଉଚ୍ଛେଦ କରିବାର ପ୍ରଶ୍ନ ନଥିଲା । ଭଗବାନ ବିଷ୍ଣୁ ନିଦକ ହୋଇ ବିଶ୍ରାମ କରୁଥିଲେ ।

ସୃଷ୍ଟିକର୍ତ୍ତାଙ୍କ ପାଖରେ ବିଶ୍ୱକର୍ମା ଯେଉଁ ରିପୋର୍ଟ ଦେଲେ ସେଥିରୁ ଜଣାଗଲା ଯେ ଯନ୍ତ୍ରପାତି କାରଖାନା ବସାଇବାର ପୂର୍ବବର୍ତ୍ତୀ ଲକ୍ଷ୍ୟଗୁଡ଼ିକ ବଦଳିଗଲାଣି । ଏବେ ସେଗୁଡ଼ିକ ମର୍ତ୍ତ୍ୟ ଭୂମିରେ ବସିବ । କାରଣ ସ୍ୱର୍ଗ ଭୂମିରେ କାରଖାନା ଗୁଡ଼ିକ ବସୁଥିବାରୁ ମର୍ତ୍ତ୍ୟ ବାସୀଙ୍କୁ କିଛି ଉପକାର ମିଳୁନାହିଁ ।

ବଳୀରାଜାଙ୍କ ପାଖରୁ ଭୂସଂପତ୍ତି ଗୁଡ଼ିକ ଉଚ୍ଛେଦ କରିବା ସହଜ ସାଧ୍ୟ ଥିଲା । ଏବେ ଆଉ ତାହା ହୋଇପାରିବ ନାହିଁ । ଭଗବାନ ବିଷ୍ଣୁ ଯେଉଁଦିନଠାରୁ ଇନ୍ଦ୍ରଙ୍କ ହାତରୁ କ୍ଷମତା କାଢିଆଣି ସରକାରଙ୍କ ହାତରେ ଅର୍ପଣ କରିଛନ୍ତି, ସେହି ଦିନରୁ ପୂର୍ବତନ ପଦ୍ଧତି ଗୁଡ଼ିକ ବଦଳିଯାଇଛି । ପୃଥିବୀରେ ଜମି ସଂଗ୍ରହ କରିବାଲାଗି କ୍ଷତିପୂରଣ ଦେବାକୁ ପଡ଼ିଥାଏ ।

ପୃଥିବୀ ବାସୀଙ୍କୁ ସୁଖୀ ରଖିବା ଅବଶ୍ୟକ । ସୁଖୀ ରଖିବା ପାଇଁ ଯନ୍ତ୍ରପାତି ଆବଶ୍ୟକ ହୁଏ । ଯନ୍ତ୍ରପାତି ଦ୍ୱାରା ମଣିଷମାନେ ସୁଖୀ ଏବଂ ଜଗ୍ରପଦ ରହନ୍ତି । ଦେଶ ଭିତରେ କଳକାରଖାନା ବସାଇବା ଲାଗି ଭଗବାନଙ୍କୁ ପୃଥିବୀରେ ସ୍ୱଳ୍ପ ମିଆଦୀ ଅବତାର ଗ୍ରହଣ କରିବାକୁ ପଡ଼ୁଥାଏ । ସେତେବେଳକୁ କେବଳମାତ୍ର ମ୍ଲେଚ୍ଛ ଅବତାର ବାକୀ ରହିଥିଲା ।

ଏହି ଅବତାରରେ ଭଗବାନ ଜଣେ ମୋହିନୀ କନ୍ୟା ରୂପରେ ପହଞ୍ଚି-ଥିଲେ, କାରଣ ମହାଭାରତ ଯୁଦ୍ଧ ପରେ ତାଙ୍କ ଦେହରେ ଆଉ ତେଜବୀର୍ଯ୍ୟ ନଥିଲା ।

ସେହି ହେତୁରୁ ଅବତାର ବାଦର ପରବର୍ତ୍ତୀ ପ୍ରକ୍ରିୟା ଥିଲା ନାରୀଙ୍କ ରୂପରେ । ମୋହିନୀ କନ୍ୟା ରୂପରେ ଆସିଲାବେଳେ ତାଙ୍କର ପଛେ ପଛେ ସୁରାଷ୍ଟ୍ରର ଶଗଡ଼ ଗୁଡ଼ାକ କେଁ କଟର ନାଦ କରି ସ୍ୱର୍ଗ ରାଜ୍ୟରୁ ତଳକୁ ଖସୁଥିଲା ।

ମୋହିନୀ କନ୍ୟାଙ୍କ ହାତରେ ଥିଲା ଚେକ ବହି । ଦେଶ ଭିତରେ ସବୁ ଗୁଡ଼ାକ ବ୍ୟାଙ୍କରେ ତାଙ୍କ ନାମରେ ଅର୍ଥ ଜମା ହୋଇଥିଲା । ସେ ଚତୁର୍ଦ୍ଦିଗରେ ଆଖିବୁଲାଇ ଦେଖିଲେ ଯେ ମଣିଷ ମାନଙ୍କ ବେକ ପାଖରେ ପଥର ବୋଝ ବନ୍ଧା ହୋଇଛି ।

ସଙ୍ଗେ ସଙ୍ଗେ ସରକାରୀ କର୍ମଚାରୀଙ୍କୁ ଡ଼କାଇ ପଥର ଗୁଡ଼ାକ କାଟି ନେବା ପାଇଁ ଆଦେଶ ଦେଲେ । କିନ୍ତୁ ଯେତେ ପଥର କାଟୁଥିଲେ ବି ତାହା ଶେଷ ହେଉନଥିଲା । ମଣିଷମାନେ ବାରମ୍ବାର ପଥର ମୁଣ୍ଡାକୁ ନିଜ ପିଠି ଉପରେ ଲଦିହୋଇ ପଡ଼ୁଥିଲେ ।

ଅବକାଶ ବିଭାଗର ମୁଖ୍ୟ ଅଫିସରଙ୍କୁ ଜବାବ ଦେବା ଲାଗି ପଡ଼ିଥିଲା । ସେ ହେଉଛନ୍ତି ଅଭ୍ୟାସ ବିଭାଗର ଅଫିସର । ଅର୍ଥାତ ମଣିଷ ମାନଙ୍କ ଅଭ୍ୟାସର ଜିମା ନେଇଛନ୍ତି । ପୁଲିସ ବିଭାଗ ଦୁରଭ୍ୟାସ ଏବଂ ଚେତନା ବିଭାଗର ଜିମା ନେଇଥିଲା । ବିଭାଗଗୁଡ଼ିକର ନାମକରଣ ଏହି ରୂପେ ଯୁଗଯୁଗରୁ ପ୍ରଚଳିତ ।

ଅବକାଶ ଅଫିସରଙ୍କୁ ମୋହିନୀ କନ୍ୟା ପଚାରିଲେ—"ଏମାନେ କଣ କାହାର କରଜଦାର କି ?"

ଅଫିସର ଜଣକ ବିନୀତ କଣ୍ଠରେ କହିଲେ—"ମାଡ଼ାମଙ୍କ ଅନୁମାନ ବିଲକୁଲ ଠିକ୍ । ଏମାନେ ସମସ୍ତେ ଅଭ୍ୟାସ ଏବଂ ପରିବେଶର ଦାସ । ଅଭ୍ୟାସଗତ

କାରଣହେଉ ଏମାନେ ଜଣେ ଜଣେ ମାଲିକଙ୍କର କରଜଦାର ହୋଇ ରହିଛନ୍ତି ।"

ମୋହିନୀ କନ୍ୟା ଅବସ୍ଥାକୁ ବୁଝିଗଲେ । ସେ କହିଲେ, "ଏମାନଙ୍କୁ ଶାପମୁକ୍ତ କରିବାକୁ ହେବ । ପୂରୁଷାନୁକ୍ରମିକ ଭାବେ ପ୍ରାଣୀ ଗୁଡ଼ିକ ଯେଉଁସବୁ ବନ୍ଧନରେ ପଡ଼ିଛନ୍ତି ସେଥିରୁ ସେମାନେ ମୁକ୍ତ ପାଆନ୍ତୁ । ଋଣରୁ ମୁକ୍ତ ନ ହେବା ପର୍ଯ୍ୟନ୍ତ ଏମାନଙ୍କ ଦେହରୁ ପଥର ବୋଝ ଖସିବ ନାହିଁ ।"

ଏଥିକ କହିସାରି ରେଭିନନ୍ୟୁ ଅଫିସର ମାନଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ତାଲିକା ଦେଖିଥିଲେ । ସେଥିରେ ସେମାନଙ୍କ ସଂପତ୍ତିବାଡ଼ିର ମୂଲ୍ୟାୟନ କରାଯାଇଥିଲା ।

ମାତାମଙ୍କ ଆଦେଶ ବଳରେ ପୂର୍ବ ପଦ୍ଧତି ବଦଳି ଯାଇଥିଲା । କ୍ଷତି-କ୍ଷତିପୂରଣରେ ଅର୍ଥାତ୍ ମୂଲ୍ୟ ଭରଣା ନକରି ସଂପତ୍ତି ଉଚ୍ଛେଦ କରିବା ପ୍ରଥା ଗୋଟାଏ ଥରର କଲମ ଗାରରେ ଉଠାଇ ଦିଆଗଲା ।

ବହୁତ ବଡ ଅଙ୍କର ହିସାବ ଦେଖିବା ପରେ ମୋହିନୀକନ୍ୟା ଏକାଥରକେ ଲକ୍ଷ ଲକ୍ଷ ଟଙ୍କାର ଚେକ କାଟି ଅଫିସରମାନଙ୍କ ହାତକୁ ବଢାଇଦେଲେ । ତାହା ପରେ କ୍ଷତିପୂରଣ ଟଙ୍କା ବାଣ୍ଟିବା କାର୍ଯ୍ୟ ଆରମ୍ଭ ହୋଇଗଲା ।

ଅଭ୍ୟାସଗତ କାରଣ ଗୁଡ଼ିକର ଠିକା ନେଇଥିବା ପାର୍ଥିବ ମାଲିକର ମନଭିତରେ ଅପାର ଆନନ୍ଦ ଜାତ ହୋଇଥାଏ । ଶୁଭଚନ୍ଦ୍ରଙ୍କ ଭାବରେ ସେ ଆଦେଶଦେଲା ପଥର ବୋଝ ଫିଙ୍ଗିଦେବାକୁ ।

ସେମାନେ ତାହାର ଆଦେଶ ପାଳନ କରିଥିଲେ । ମାଟି ଉପରେ ସିଧା ସିଧା ପାଦ ପକାଇ ପାରୁନଥିବା ଲୋକମାନଙ୍କୁ ହଠାତ ସତେଜ କରିଦେଇ ଠିଆ ହେବା ନିମନ୍ତେ ସେ ସୁଯୋଗ ଦେଇଥିଲା ।

କ୍ଷତିପୂରଣ ପାଇସାରିଥିବା ଲୋକ ଗୁଡ଼ାକ ଗୋଟାଏ ମାଟି ଘର ଘର ଭିତରେ ସମ୍ମିଳିତ ହୋଇ ରହୁଥିଲେ । ପରଦିନ ସକାଳୁ ସକାଳୁ ସେମାନେ ଆସି ପହଞ୍ଚି ଯାଉଥିଲେ ଶୁଭଚନ୍ଦ୍ରଙ୍କ ପାଖରେ ।

ଏହାର ଭିତରେ ମୋହିନୀ କନ୍ୟା ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ପୃଥିବୀ ଉପରେ ତାଙ୍କର କାର୍ଯ୍ୟ ଅଳ୍ପ ସମୟ ମଧ୍ୟରେ ଶେଷ ହୋଇଗଲା । ତାଙ୍କ ପଛରେ ଅନେକ ଗୁଡ଼ାଏ ଶଗଡରେ ଲଦାହୋଇ ଆସିଥିବା ପ୍ରସ୍ତରଖଣ୍ଡ ଗୁଡ଼ାକ ମାଟି ଉପରେ ଗଡ଼ୁଥାଏ । ●

**ଅନାବନା ବନସ୍ତ ମଧ୍ୟରେ ମଣିଷ ନାମରେ ଏକ ଗଛ ଉଠିଲା । ସେହି ମଣିଷ ପୁଣି ଦ୍ରୁମହେଲା । ଅନେକ ଦ୍ରୁମ ମହାଦ୍ରୁମରେ ପରିଣତ ହେଲେ । କିନ୍ତୁ ଆଜି କାଟିଏ ଗଛ ବନସ୍ପତି ଭଳି ଦେହରେ ଘଷି ହେଲେ ବି ସେମାନେ ଗଛ ନୁହନ୍ତି, ମଣିଷ ମଧ୍ୟ ନୁହନ୍ତି……।**

## କାହାଣୀ : ॥ ଚେଡ଼ି ॥ ବିନୋଦ ରାଉତରାୟ

ଅନେକ ପିଲାଙ୍କ ସମ୍ବନ୍ଧରେ ଅନେକ କଥା ଶୁଣାଯାଏ । ସବୁକଥା ମନେରଖି ହୁଏନାହିଁ । ମନେ ରଖିବା ମଧ୍ୟ ସମ୍ଭବ ନୁହେଁ । ମନେରହେ ସେହିଭଳି ସ୍ମରଣୀୟ କଥା, ଯେଉଁମାନଙ୍କ ସହିତ ସ୍ଥାନ ବିଶେଷରେ ପରିଚୟ ଘଟେ ଓ ଯେଉଁ ସମ୍ବନ୍ଧ ସ୍ଥାପିତ ହୁଏ ତାହା କାହାଣୀ ଭଳି ଅପରିଚିତ ଆବରଣ ମଧ୍ୟରୁ ନିର୍ଭେଜାସତ୍ୟ ଭିତରକୁ ଟାଣିନେଇଯାଏ । ମନୋଜଗତର ଝରକା ଓ ଦରଜା ଗୁଡ଼ିକ ଆପେ ଆପେ ଖୋଲିଯାଏ ଭିନ୍ନ୍‌ରୂପ । ଶେଷରେ ତାହାହିଁ ହୋଇଉଠେ ମହାଗତ । ସେହିଭଳି ପିଲାଙ୍କ କାହାଣୀ ମୋ ମତରେ ସାହିତ୍ୟରେ ସ୍ଥାନ ପାଇବା ଉଚିତ । ସେହିମାନେ ହିଁ ଦିନେ ବୋଲାଇବେ ଆମ ପରମ୍ପରାର — ସଂସ୍କୃତିର ପ୍ରତୀକ !

କଟକରେ ଥିବା ସମୟରେ ଶ୍ରୀଚଣ୍ଡୀଙ୍କ ସାନ୍ଧ୍ୟଦର୍ଶନକୁ ମୁଁ ପ୍ରାୟ ଯାଇଥାଏ । ଧର୍ମକର୍ମରେ ମନବଳାଇବାର ସ୍ପୃହା ଯେତେ ନଥାଏ, ସେହି ଅଞ୍ଚଳରେ ବୁଲାଚଲାକରି ସାନ୍ଧ୍ୟ ପରିବେଶକୁ କିଛିଟା ଉପଭୋଗ କରିବାର ଲୋଭଥାଏ ତାହାଠାରୁ ଅଧିକ । ସେଦିନ ଶ୍ରୀଚଣ୍ଡୀଙ୍କ ଦର୍ଶନ ଶେଷକରି ମନ୍ଦିର ସାମ୍ନାରେ କିଛି ସମୟ ଆଡ଼୍‌ହୋଇ ଠିଆ ହୋଇଥାଏ । ଦେଖୁଥାଏ ଯାଦୁକରର ଟୋପିରୁ ବିଭିନ୍ନ ପ୍ରକାରର କନକ ବାହାରିଲା ଭଳି ମନ୍ଦିର ଭିତରୁ ବିଭିନ୍ନ ଧରଣର ମଣିଷ ବାହାରି ରାଜପଥ ଉପରେ ମିଳାଇ ଯାଉଥାନ୍ତି । କିଏ ଗେଡ଼ା. କିଏ ମୋଟା, କିଏ ଢେଙ୍ଗା, କିଏ ରେଗା, କିଏ ସୁନ୍ଦରୀ, କିଏ କୁଦରୀ. କିଏ ଥଲଥଲ ଅନ୍ତଲପେଟା, କିଏ ଚକ୍ ଚକ୍ ଚନ୍ଦାମୁଣ୍ଡିଆ, କିଏ ଝିଙ୍କୁଝିଙ୍କୁ, କିଏ ଟିଙ୍କୁଟିଙ୍କୁ, କିଏ ବୃଦ୍ଧ, କିଏ କୁବ୍ଜ, କିଏ ଘୁରୁକେଶୀ,

କିଏ ମୃଦୁହାସୀ, କିଏ ଚଟୁଘୋଡ଼ା, କିଏ ଚଷମାଯୋଡ଼ା । ଏହିପରି ଭଳି କି ଭଳି ମଣିଷ । ଅଥଚ କାହାରି ପ୍ରତି, କାହାର ଲକ୍ଷ୍ୟ ନାହିଁ । କେହି କାହାରି ସମସ୍ୟା ସହିତ ଜଡ଼ିତ ନୁହନ୍ତି । ସମସ୍ତେ ସ୍ୱତଂତ୍ର । ସମସ୍ତେ ବ୍ୟସ୍ତ ଚଞ୍ଚଳ । ସମସ୍ତଙ୍କ ମସ୍ତକରେ ମହାମାୟାଙ୍କର ଅଯାଚିତ ଆଶୀର୍ବାଦ ।

କିଛି ସମୟପରେ ଏହିପରି ବେଶ ଓ ପରିବେଷ୍ଟନୀ ଚିଟା ଲାଗିବାରୁ ଆଉ ସେଥିପ୍ରତି ଦୃକ୍‌ପାତ ନକରି ଲମ୍ବପାଦ ପକାଇ ଜନକାଟକ ଆଡ଼କୁ ଆଗେଇଲି । ଦଥଁ ଦର୍ଶନ ହେଲା, ଏଥର ନୈମିତ୍ତିକ ସାନ୍ଧ୍ୟ ସମୀରଣ ସେବନରେ ଢକାର୍ଯ୍ୟ ଆପତ୍ତି ନାହିଁ । ଏହିପରି ସମୟରେ ପଛରୁ କାହାର କୋମଳ କଣ୍ଠସ୍ୱର ଶୁଣାଗଲା । ପ୍ରଚଣ୍ଡ ଅନିଚ୍ଛାସତ୍ତ୍ୱେ ପଛକୁ ଚାହିଁ ଦେଖିଲି ଦୁଇଟି ପିଲା ମୋର ପିସ୍ତୁ ଧରିଛନ୍ତି । ଗୋଟିଏ ପାଞ୍ଚ କି ଛଅ ବର୍ଷର ପୁଅ । ଅନ୍ୟଟି ଦଶବାର ବର୍ଷର ଝିଅ । ରଙ୍ଗତ ପୂର୍ଣ୍ଣ କଳା । ସେଥିରେ ପୁଣି ଧୂଳି ମଳିର ପ୍ରଲେପ ଦେହମୟ । ସର୍ବାଙ୍ଗ କ୍ଷୁଧିତତା ଅତ୍ୟନ୍ତ ସ୍ପଷ୍ଟ । ମୁଁ ଚାହିଁବା ମାତ୍ରେ ଝିଅଟି କହି ଉଠିଲା—"ବାବୁ, ପଇସାଟିଏ...... ।"

ପୁଅଟି ଅବିକଳ ତା କଥାର ପୁନରାବୃତ୍ତି କଲାଭଳି କହିଲା । ଶିଶୁ କଣ୍ଠର ଆତଙ୍କ ଆଶ୍ରିତ ଅନୁନୟ । ଟିକେ ବିରକ୍ତି ପ୍ରକାଶ କରି ଆଗକୁ ମାଡ଼ି ଚାଲିଲି । କଟକ କିମ୍ବା ଭୁବନେଶ୍ୱର ରାସ୍ତାରେ ମଳିନ, ଭୁଗ୍ନ, ଅପରି-ଚ୍ଛନ୍ନ ପିଲାମାନଙ୍କର ବିଭତ୍ସ ସଂଗ୍ରାମ ଦେଖି ଦେଖି ସାଧାରଣ ଭାବରେ ମୋ ମନର ସମସ୍ତ ପ୍ରତିକ୍ରିୟା ପ୍ରାୟ ଲୋପପାଇ ଆସିଛି । ଦେଶର ବିଭିନ୍ନ ରାଜ୍ୟରୁ, ବିଭିନ୍ନ ଅଞ୍ଚଳରୁ ବହୁ ଶିଶୁ ସହରକୁ ଦୈନିକ ଆମଦାନୀ ହେଉଛନ୍ତି । କିଏ ଚାହା ଦୋକାନରେ କପ୍ ପ୍ଲେଟ ଧୋଉଛି, ଆଉ କିଏ କାରଖାନାରେ ବିଡ଼ି ବଳୁଛି, କିଏ ରାସ୍ତା କଡ଼ରୁ ଭଙ୍ଗା ଟିଣ, କାଚବୋତଲ, ଛିଣ୍ଡା କାଗଜ, ରଦ୍ଦିକନା ଆଦି ସଂଗ୍ରହ କରୁଛି, କିଏ ଭିକ ମାଗୁଛି । କିଞ୍ଚିତ ବଡ଼ ହୋଇଗଲେ ବସ୍ ଷ୍ଟାଣ୍ଡରେ ପକେଟମାରୁ ଦଳରେ ସାମିଲ ହୋଇ ଯାଉଛି କିମ୍ବା ସିନେମା ଟିକଟରେ ହାତ ସଫେଇ କରୁଛି । ଝିଅ ପିଲାଟିଏ ହେଲେ କଥା ନାହିଁ । କେତେ ବଦନାମ, କେତେ ବିପଦ, କେତେ ଗୁପ୍ତ ଦୁରୁଦୁରୁ, କେତେ ଆଶାନ୍ତିର ସୀମା ନାହିଁ । ଗୁଣ୍ଡା, ମଦ୍ୟପ, ଲଫଙ୍ଗା, ବେଶ୍ୱମାଲ ବିକୃତକାମୀମାନଙ୍କ କାମନା ଚରିତାର୍ଥର ଉପଜୀବ୍ୟ ହେଉଛି । ଏମାନଙ୍କର ନିରାପତ୍ତାର କୌଣସି ପ୍ରକାର ବନ୍ଦୋବସ୍ତ ନାହିଁ । ମନଯୋଗ ଓ ସହାନୁଭୂତିର ସହିତ ଏମାନଙ୍କର କଥା କେହି ଚିନ୍ତା କରନ୍ତି ନାହିଁ । ଘୃଣା, ଅବିଶ୍ୱାସ, ଅତ୍ୟାଚାର, ଅଶାନ୍ତି, ମଧ୍ୟରେ ଏମାନେ ଦୈନିକ ନିଷ୍ପେଷିତ । ଅଥଚ ମହା-ନଗରୀ ଗୁଡ଼ିକ ଅଶାନ୍ତି, କୋଳାହଳ ଓ ସଂଗ୍ରାମ ମଧ୍ୟରେ ଦିନକୁ ଦିନ ଗରଜ

ତନ୍ମୀତ ସୌଧ ଶୋଭିତ ହୋଇ ଉପରକୁ ଉଠୁଛୁ ଫୁଲ ଫୁଲ; ଅବକଳ ବସ୍ତାକୁ ପ୍ରକରେ ଭର୍ତ୍ତି ବୃଣ ଭଳି । ପ୍ରାଣରେ, ମର୍ମରେ ଚିନ୍ତାରେ ଓ ଚେତନାରେ କେହିହେଲେ ଏହି ବାନ୍ତୁତମାନଙ୍କ ସମସ୍ୟାକୁ ସ୍ଥିରକୁ ଅଣି ସମାଧାନର ସୂତ୍ର ଯୋଗାଇ ଦେଉନାହାନ୍ତି । ସ୍ଥଳକ, ପାଳକ, ରକ୍ଷକ, ଭକ୍ଷକ, ଶାସକ, ଶୋଷକ, ଆଦି ବହୁ ବଧ ଭୂମିକାରେ ଦୈନିକ ଅବତୀର୍ଣ୍ଣ ହେଉଥିବା ମଣିଷମାନେ ଏଥିପ୍ରତି ଆଦୌ ଦୃଷ୍ଟି ଦଅନ୍ତି ନାହିଁ । ଏପରି କ୍ଷେତ୍ରରେ ଶସ୍ତା ବଦାନ୍ୟତା ଦେଖାଇ ସେମାନଙ୍କ ହାତରେ ପାଞ୍ଚ ପଇସିଟିଏ କି ଦଶ ପଇସିଟିଏ ଗୁଞ୍ଜିଦେବା ଜୀବନ ସଂଗ୍ରାମର ସ୍ଥୂଳ ଓ ସୂକ୍ଷ୍ମ ସନ୍ଧପତ୍ରରେ ସ୍ୱାକ୍ଷର ଦେବା ଅବସ୍ଥାରେ ମୁଁ ଆପାତତଃ ନଥିଲି ।

ତଥାପି ପିଲା ଦୁଇଟି ବାବୁ ବାବୁ କହି ମୋର ପିଚ୍ଛାଧରି ପ୍ରାୟ ଦୌଡ଼ିବାର ଉପକ୍ରମ କରୁଥାନ୍ତି । ଏହିପରି ଭାବେ ଯେତେବେଳେ ଆସି ଖ୍ରୀଷ୍ଟ କଲେଜ ପାଖାପାଖି ପହଞ୍ଚିଗଲିଣି, ସେତେବେଳେ ଅନୁଭବ କଲି ସେମାନେ ପଛରେ ଦୌଡ଼ି ଦୌଡ଼ି ଅଣନିଶ୍ୱାସୀ ହୋଇ ପଡ଼ୁଛନ୍ତି । କିନ୍ତୁ ଆଶା ଛାଡ଼ୁଇ ନାହାନ୍ତି । ଯେତେ ସମୟ ପର୍ଯ୍ୟନ୍ତ ଶ୍ୱାସନଳୀସ୍ଥା ଚାଲୁଛି ସେତେକ୍ଷଣ ପର୍ଯ୍ୟନ୍ତ ଆଶା ଅଛି । ମନେ ମନେ ଭାବିଲି, ଏମାନେ ନିଶ୍ଚୟ ଯେ କୌଣସି ଭଦ୍ରଲୋକ ପଛରେ ଯୋକ ଭଳି ଲାଗି ଚାଲୁଛନ୍ତି । ଏହି ଋପାୟଟିକୁ ଜୀବନ ଧାରଣର ପ୍ରଧାନ ସୂତ୍ର ଭାବେ ଗ୍ରହଣ କରିନେଇଛନ୍ତି ସେମାନେ । ଶ୍ରୀଚଣ୍ଡୀଙ୍କ ମନ୍ଦିର ସାମ୍ନାରେ ଭୁଲ ଗୁଲ ବହୁ ବ୍ୟକ୍ତିଙ୍କ ହାତପତାଇ ନିରାଶହେବା ଅପେକ୍ଷା ଜଣଙ୍କର ପଛେ ପଛେ କିଛି ବାଟ ଯାଇ, ତାହାକୁ ବିରକ୍ତ କରାଇ କିଛି ପାଇବା ଏକ ଚମତ୍କାର ଫିକର ।

ଗତି ଶିଥିଳକରି ଫେରି ଚାହିଁଲି । ସେମାନଙ୍କ ମତଗତି ଠଉରାଇବାର ଚେଷ୍ଟାକଲି । ଚପି ପଡ଼ିଥିବା ଅତି ମଇଳା ଧୂଳି ଧୂସର ଚଡ଼ିପ୍ୟାଣ୍ଟଟିକୁ ଗୋଟିଏ ହାତରେ ପେଟପାଖରୁ ମୁଠାଇ ଧରି ପୁଅଟି ପ୍ରାୟ ଦୌଡ଼ିବାଭଳି ଚାଲି ଆସୁଛି । ଆଖିରେ ତାର ପ୍ରଜ୍ଜ୍ୱଳ ବୁଭୁକ୍ଷା ସାଙ୍ଗକୁ ଭୟ ଓ ଆତୁରତା । ତାର ହାତ ମୋର ପଞ୍ଜାବୀ ଧାରକୁ ଛୁଇଁ କି ନଛୁଇଁ ଏହିଭଳି ଅବସ୍ଥା । ଅସ୍ପଷ୍ଟ ଭାବରେ ପାଟିରୁ ବାହାରୁଛି ଶବ୍ଦ — ବାବୁ···ହେ, ବା···ବୁ·· । ଝିଅଟି ଚାଲିଛି ପ୍ରାୟ ଡ଼ବଲମାର୍ଚ୍ଚିଂ ଢଙ୍ଗରେ । ମହିଁ ରାସ୍ତାରେ ବାଧ୍ୟ ହୋଇ ଠିଆ ହୋଇ ପଡ଼ିଲି । ତେଜୋଦୀପ୍ତ କଣ୍ଠରେ କହିଲି—"ତୁମମାନଙ୍କୁ କିଛି ମିଳିବ ନାହିଁ । ତୁମେସବୁ ଭଦ୍ରଲୋକମାନଙ୍କୁ ବାଟଚାଲିଇ ଦେଉନାହଁ !"

ମୋର ଏ କୃତ୍ରିମ କୋପରେ ସେମାନେ ଆଦୌ ଶଙ୍କିଗଲେ ନାହିଁ । ବରଂ ଏପ୍ରକାର ବ୍ୟବହାର ପ୍ରଦର୍ଶନ କଲେ, ଯେଉଁଥିର ସହଜରେ ଜାଣି

ହୋଇଯିବ ଯେ ଏଭଳି କଥା ବହୁ ପୂର୍ବରୁ ସେମାନଙ୍କ ଦେହ ସୁଦ୍ଧା ହୋଇ ଯାଇଛି । ମୋର ପ୍ରଶ୍ନର କଠିନ ମୂର୍ତ୍ତି ଆଡ଼କୁ ଅନାଇ ପୁଅଟି ହସିଦେଲା ଅଦ୍ଭୁତ ନିଷ୍ପାପ ହସ । ହଳଦିଆ ଦାନ୍ତ ଗୁଡାକ ମଧ୍ୟରୁ ଯେପରି ଦୁଇଟା ଶଳପଡ଼ି ତାର ବୟସ ସମ୍ବନ୍ଧରେ ସୂଚନା ଦେଉଛି । ପାଖକୁ କହିତ ଲାଗି ଆସି ଝିଅଟି କେବଳ ଲମ୍ବ ଲମ୍ବ ନିଶ୍ୱାସ ଛାଡୁଥାଏ । ଶୂନ୍ୟ ଦୃଷ୍ଟିରେ ଅନାଇ ରହିଲା କିଛି କ୍ଷଣ ସେମାନଙ୍କ ଆଡ଼କୁ । ତାହାପରେ ଧୀରେ ଧୀରେ କହିଲି—

"ପଇସା ପାଇଲେ ପରେ କଣ କରୁଚୁରେ ?"

"—ଖାଇବୁ—" ସାହସ ସଂଚୟ କରି ପୁଅଟି ଉତ୍ତର ଦେଲା ?

—ଯେତେ ପଇସା ପାଉଛ ସବୁ କଣ ଖାଇ ଦେଉଛ ?

ଏଥର ଝିଅଟି ନିଜର ବିଷାଦ ଭରା କଣ୍ଠରେ ପ୍ରକାଶ କଲା— "କେତେ ପଇସା ଆଉ ପାଉଛୁ ବାବୁ ? କେହୁ ପ୍ରାୟ ଦେଉ ନାହାନ୍ତି । ଦେଖ, ନାହାନ୍ତି କେତେ କୋଢିଆ ଲୋକ ମନ୍ଦିର ଆଗରେ ପଡ଼ିଛନ୍ତି । ସେମାନେ ପ୍ରାୟ ସେଠି ଘରକରି ଗଲେଣି । ଆମେ ତାଙ୍କ ଗୃହ ପାଖରେ ବୁଲି ବୁଲି ମାଗିଲେ ଆମ ଉପରେ ରାଗ କରୁଛନ୍ତି । ଆମକୁ ଗାଳି ଗୁଲଜ ଦେଇ ବାହାର କରି ଦେଉଛନ୍ତି । ଗୋଡ଼ି ପକାଇ ଘଉଡ଼ାଉଛନ୍ତି । ସେଥିପାଇଁ ଆମେ ବାବୁ ମାନଙ୍କ ପଛରେ ଗୋଡ଼େଇ ଗୋଡ଼େଇ ମାଗୁଛୁ । କେତେବେଳେ ମିଳୁଛି, କେତେବେଳେ ମିଳୁନାହିଁ ।

ଏକା ଥରକେ ଏତେ ଗୁଡାଏ କଥା କହି ପକାଇ ସେ ପୁଅଟିକୁ ଆଦର କରିବା ଭଙ୍ଗିରେ ପାଖକୁ ଟାଣିନେଲା । ସ୍ତୁପୀକୃତ ସାମାଜିକ ବୈଷମ୍ୟର ଯେପରି ଏମାନେ ମୂର୍ତ୍ତିମାନ ପ୍ରତୀକ । ଏକବିଂଶ ଶତାବ୍ଦୀର ସ୍ୱାଧୀନ ନାଗରିକ !

ସଂଧ୍ୟାପରେ ଧୀରେ ଧୀରେ ଏ ଅଞ୍ଚଳଟି ପ୍ରାୟ ନିର୍ଜନ ହୋଇଆସେ । ଧୂସର ସରଳରେଖା ପରି ଲମ୍ବି ଯାଇଥିବା ରାସ୍ତାରେ ଆଲୁଅର ବ୍ୟବସ୍ଥା ଅପ୍ରତୁଳ । ଆକାଶରେ ଶୁକ୍ଳପକ୍ଷ ତ୍ରୟୋଦଶୀର ଜହ୍ନଥିଲେ ମଧ୍ୟ କୃଷ୍ଣଚୂଡ଼ାର ଆସ୍ତରଣ ଭେଦକରି ଆସୁଥିବା ଜ୍ୟୋତ୍ସ୍ନାରେ ନିଷ୍ପ୍ରଭ ଉଜ୍ଜ୍ୱଳତା । ସେହି ନିଷ୍ପ୍ରଭ ଆଲୋକ ମଧ୍ୟରେ ଦେଖିଲେ ଯେପରି ସେମାନଙ୍କ ଦେହର ସ୍ୱାଭାବିକ ରଙ୍ଗବାରି ହେଉନାହିଁ । କେବଳ ଆଖିର ତାରା ଦୁଇଗୋଟି ଚକ୍ ଚକ୍ କରୁଛି ମାତ୍ର । ପ୍ରକୃତ ସ୍ନେହ, ଭଲ ପାଇବା ଭଳି ଉପଯୁକ୍ତ ପରିବେଶରୁ ବଞ୍ଚିତ ହୋଇ ଏହି ଶିଶୁମାନଙ୍କ ମନରେ ପ୍ରାୟ ହୀନମନ୍ୟତା ଜନ୍ମେ । ସେଥିରୁ ସେମାନଙ୍କ ସ୍ୱଭାବ ହୋଇ ଉଠେ ବିଶୃଙ୍ଖଳ । ଅଥଚ ପିଲାଟି ଦିନରୁ ଅଭାବ, ଅନିଶ୍ଚୟତା, ଉଦ୍‌ବେଗ, ନିରାପତ୍ତାବିହୀନ ପରିବେଶ ମଧ୍ୟରେ ବଢ଼ିବା

ସଙ୍ଗେ ସଙ୍ଗେ ଆକ୍ରମଣାତ୍ମକ ଓ ବିଦ୍ରୋହୀ ମନୋଭାବ ଗଢିଥିବା ସମ୍ଭବତଃ । ଏହି ସଂଧ୍ୟାରେ କୃତ୍ରିମ ଆଲୋକ ରାସ୍ତା ପାଖରେ ବିକ୍ଷିପ୍ତଭାବେ ବୁଲୁଥିବା ଲଙ୍ଗଳା ପିଲାଙ୍କର ଫଙ୍କ ଲା ଅପସଂସ୍କୃତ କ୍ରମେ ସମାଜ ଉପରକୁ ଓହ୍ଲାଇ ଆସୁଛି ।

ସେମାନଙ୍କର କାକୁତିପୂର୍ଣ୍ଣ ଆଖିରେ କାତର ପ୍ରାର୍ଥନା ! କହିଲି—"ମୋ ସାଙ୍ଗରେ ଆମ ଘରକୁ ଯାଇପାରିବ ? ସେଠାରେ ତୁମକୁ ଖାଇବାକୁ ଦିଆଯିବ । ପଇସା ଦିଆଯିବ ନାହିଁ ।"

ଦୁହେଁ ଉତ୍ସାହର ସହିତ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ । ଏଥର ମୁଁ ଚାଲିଲି ଆଗେ ଆଗେ । ସେମାନେ ପଛମ ଅନ୍ତରର ସହିତ ମୋ ପଛେ ପଛେ ଚାଲୁଥାନ୍ତି । ଭାରତ ଯେତେବେଳେ କୃଷିଭିତ୍ତିକ ସମାଜ ଉପରେ ସଂପୂର୍ଣ୍ଣ ନିର୍ଭର କରୁଥିଲା, ସେତେବେଳେ ନିଜର ଗୋଷ୍ଠୀଗତ ଜୀବନ ମଧ୍ୟରେ ପୁରୁଷ, ନାରୀ ଓ ଶିଶୁ ଏକ ସଙ୍ଗେ କାର୍ଯ୍ୟ କରୁଥିଲେ । ଏକାନ୍ତ ଗୋଟିଏ ଗୋଟିଏ ପରିବାର ଗ୍ରାମୀଣ ସମାଜ ମଧ୍ୟରେ ନିଜେ ଜୀବନ କଟାଉଥିଲେ । ଶିଳ୍ପର ପ୍ରସାର ସଙ୍ଗେ ସଙ୍ଗେ ସହରୀ ସଭ୍ୟତାର ବ୍ୟାପକ ମୁଖ ଗ୍ରାମର ସରଳ ଆଡ଼ମ୍ବର ବିହୀନ ଜୀବନକୁ ଗ୍ରାସ କରିବାକୁ ବସିଲାଣି । ଏହାର ମଧ୍ୟରେ ଗୋବର ଲିପା ମାଟି ପିଣ୍ଡାର ସଂସ୍କାର କ୍ରମଶଃ ଲୁପ୍ତ ପ୍ରାୟ । ପ୍ରକୃତି ସହିତ ଏକାତ୍ମ ହୋଇ ବାସ କରିବାର ରହସ୍ୟ ମନର ବିବର୍ଣ୍ଣ ମାନଚିତ୍ର ମଧ୍ୟରୁ କେଉଁଆଡ଼େ ହଜିଯାଇ ଗଲାଣି । ଶିଳ୍ପାୟନର ଔରସରୁ ଯେଉଁ ଆଧୁନିକ ଜନଜୀବନ ଜନ୍ମ ହୋଇଛି ସେଥିରେ ଏହି ଅବହେଳିତ କୋହରା ଆଖି, କାଦୁଅ ମୁହାଁ ଶିଶୁମାନେ ହିଁ ଅନ୍ୟାୟ, ଅବିଚାର, ଦୁଃଖ, ବେଦନାର ପ୍ରତିନିଧି ଭଳି ଚାରିଆଡ଼କୁ ବ୍ୟାପି ଯାଉଛନ୍ତି । ଚାରିଆଡ଼େ ନିଜର ଲୁପ୍ତ ଅଧିକାରକୁ ସାବ୍ୟସ୍ତ କରୁଛନ୍ତି ।

ଚାଲୁଥିବା ଅବସ୍ଥାରେ ଝିଅଟିକୁ ନଚେଇ ଚାହିଁ ପଚାରିଲି—"ତମମାନଙ୍କ ଘର କେଉଁଠି ?"

ଝିଅଟି କେବଳ ଉତ୍ତର ଦେଲାନାହିଁ, ଅକସ୍ମାତ୍ ଉବୁଡ଼ା ମାଟିଆର ପାଣି ଭଳି ଢାଳି ଦେଇଗଲା ତାର ଦୁଃଖପିଷ୍ଟ ଜୀବନର କାରୁଣ୍ୟ !

—"ତା ଘର ଏଇଠି; ଆଉ ଆମ ଘର ନୟାଗଡ଼ । ମୋର ବାପା କେବେଠାରୁ ମରିଛି । ମୁଁ ଜାଣି ନାହିଁ କି ବାପାଙ୍କୁ ଦେଖିଲି ଭଲ ମନେ ପଡ଼ୁନାହିଁ । ବୋଉ ମୋର ସବୁ । ସେ କେତେ ନିଜର, କେତେଭଲ ତାହା କହିହେବ । କିଛି କାଳପରେ ବୋଉର ବି ମନବଦଳିଲା । ଆମ ଗାଆଁର ଆଉ ଜଣଙ୍କୁ ସେ ଦୁତୀୟ ହେଲା । ମୁଁ ବୋଉ ସହିତ ଯାଇଁ ରହିଲି ତାଙ୍କ

ଘରେ । ସେମାନେ କିନ୍ତୁ ସେଠାରେ ମୋତେ ଭଲ ବ୍ୟବହାର କଲେନାହିଁ । ବହୁ ସମୟରେ ଅଢ଼ ଷ୍ଲେଟ ଷ୍ଲେଟ କଥା ପାଇଁ ସେଠାରେ ମାଡ଼ଗାଳି ଖାଉଥିଲି । ଏସବୁ ଦେଖି ବୋଉ କେବଳ ମୁହଁ ଶୁଖାଇ ପକାଏ । ଆଉ ସେ ରାକ୍ଷସମାନଙ୍କ କବଳରୁ ମୋତେ ମୁକୁଳାଇ ପାରେ ନାହିଁ ।

"ପରିସ୍ଥିତି ଓ ଅବସ୍ଥା ଦୃଷ୍ଟିରୁ ମୋର ବାପା ଥରେ ବୋଉ ସହିତ ନାନା ପ୍ରକାର ପରାମର୍ଶ କରି ମୋତେ ଭୁବନେଶ୍ୱର ଠାରେ ଛାଡ଼ିବା ପାଇଁ ଠିକ୍ କଲେ । ସେଠାରେ କିଛି ଦିନ ପାଇଁ ରହିବ କେଉଁବାକୁ ଘରେ । ତାହା ହେଲେ ମୋ ଉପରୁ ଅଯଥା ଜୁଲମ ବନ୍ଦ ହୋଇଯିବ । ଆଉ ମଧ୍ୟ ମୁଁ ଖାଇପିଇ ସୁଖରେ ରହିବ । କିଛି ଦିନ ନୂଆ ସ୍ଥାନରେ ନୂଆ ଲୋକଙ୍କ ମେଳରେ ରହିଲେ ମନ ବଦଳିଯିବ । ସେଦିନ ରାତିରେ ବୋଉ ତାର ନସ୍ୱନ ପିଲାଟାକୁ କୋଳରେ ପୂରାଇ ବହୁତ କାନ୍ଦିଲା । ମୁଁ ମଧ୍ୟ ତାହା ସହିତ କାନ୍ଦି କାନ୍ଦି ଶୋଇ ପଡ଼ିଥିଲି ।

"ପରଦିନ ସକାଳୁ ଗାଧୋଇ ପାଧୋଇ ଭଲ ଯାମାପଟା ପିନ୍ଧି ନୂଆବାପା ସହିତ ବାହାରି ଆସିଲି । ବୋଉ ଆମକୁ ବଳାଇ ଦେଇଗଲା ଗାଆଁ ମୁଣ୍ଡରେ । ଥରକୁ ଥର ମୁଁ ଅନାଉ ଥାଏ ପଛକୁ । ଦେଖୁଥାଏ ପଥର ମୂର୍ତ୍ତିଟାଏ ଭଳି ବୋଉ ସିମିତ ପୋଷଣ୍ଠି ମୁଡ଼ାରେ ଠିଆ ହୋଇଛି । ଶେଷକୁ ଯେତେବେଳେ ବୋଉ ଆଉ ଆଖିକୁ ଦୃଶିଲା ନାହିଁ, ମୁଁ ପଛକୁ ନଗ୍ରହି ଆଗମୁହାଁ ହେଲି । ମୋର ନିରସ ଅସହାୟ ଜୀବନର ଏକମାତ୍ର ସାହାଭରସା ଥିଲା ବୋଉ ! ତା ପାଖରୁ ଅସି କେବଳ ହନ୍ତସନ୍ତ ହେଉଛି । କେବେ ଆଉ ବୋଉକୁ ଦେଖି ପାରିବ କି ନାହିଁ ଠାକୁର ଜାଣନ୍ତି ······।"

ଏତିକ କହୁ କହୁ ଝିଅଟିର ଆଖିରୁ ବଡ଼ ବଡ଼ ଲୁହ ଝରି ପଡ଼ିଲା । ସେଦିପରି ସେ କୋହ ଉଛୁଳା କଣ୍ଠରେ କହି ଚାଲିଥିଲା—

"ନୂଆ ବାପା ମୋତେ ଆଣିରଖାଇ ଦେଇଗଲେ ଗୋଟିଏ ଗୁଡ଼ିଆ ଦୋକାନରେ । ସେ ଦୋକାନୀର ଘର କୁଆଡ଼େ ଆମ ଗାଆଁ ପାଖରେ । ଲେଖାଯୋଖାରେ ବନ୍ଧୁବାନ୍ଧବ ହେବ କି କଣ । ମୋର ସେଠାରେ କାମ ହେଲା ଅଇଁଠା ବାସନକୁ ସଫା କରିବା । ଆଉ ଗରାଖମାନଙ୍କୁ ଗିଲାସ ଭର୍ତ୍ତି କରି ପାଣି ଯୋଗାଇଦେବା । କଲ ଛଆଣ କରିଦେଇ ଭଳି ଏହିକାମ ମୁଁ ସକାଳ ପହରୁ ରାତଯାଏ କରିଯାଉଥିଲି । ପାଣିରେ ସବୁବେଳେ ଘାଣ୍ଟି ଚକଟି ହୋଇ ଗୋଡ଼ ହାତ ଶେତା ପଡ଼ିଯାଇଥିଲା । ଆଙ୍ଗୁଠି ସନ୍ଧିରେ ପାଣି କନ୍ଦା ହୋଇଥିଲା ।"

"ଦିନେ ଶ୍ଳେକ କଳରେ ଦିଖଣ୍ଡ ଗରମ ପୁରୀର ଲୋଭ ସମ୍ଭାଳି ପାରିଲି ନାହିଁ । ସିମିତ ଗୁଣ୍ଡରେ ଦେଇଛି ସାଙ୍ଗେ ସାଙ୍ଗେ ମାଲିକ କୁଆଡ଼ୁ ଆସି

ପ୍ରତାପୀ ଗୃହିଣୀରେ ଗୃହିଁ ବୋଟାଏ ଧକ୍କା ଦେଲ ଯେ ଅଣ୍ଟେଇ ପଡ଼ିଲି । ତାହା ଉପରେ ଚଟକଣା, ବିଧା, ଗୋଇଠାରେ ମୋର ଦେହ ଦଳେ ହୋଇଗଲା । ତଥାପି ସେହି ସକାଳ ପହରୁ ରାତଯାଏ ହାଡଭଙ୍ଗା ଖଟଣି ଖଟି ଯାଉଥାଏ । ପ୍ରବୋଧନା ଦେଇ ଅହ୍ଲା ପଦେ କହିବାକୁ କେହିନାହିଁ । ଦିନେ ସମସ୍ତେ ଶୋଇ ପଡ଼ିଲା ପରେ ରାତିର ଅନ୍ଧାର ଭିତରେ ଅଣ୍ଟାଳି ଅଣ୍ଟାଳି ବାହାର ଦରଜା ଫିଟାଇ ବସ୍ତାକୁ ଗୋଡ଼ କାଢ଼ିଲି ଜର୍ଣ୍ଣସୀ ଅନ୍ଧେଷିତାଭଳି । ସେ ଦୋକାନୀ ମୋତେ ଆଉ ଖୋଜିଲେ ନାହିଁ ଜାଣି ପାରିଲି ନାହିଁ । ତାହା ମୁଣ୍ଡରୁ ବୋଝଟାଏ ଖସିଗଲା । ଶେଷକୁ ଆସି ପହଞ୍ଚିଛି ଏଠାରେ ।

ଆଶ୍ରୟ ସନ୍ଧାନରେ ଅମାନୁଷିକ ଅତ୍ୟାଚାରରୁ ପଳାଇ ଆସି ରାସ୍ତା ଘାଟରେ ମାଗି ଖାଉଥିବା ଝିଅଟିର କେଶ ଅଦୌ ଅସ୍ୱାଭାବିକ ନୁହେଁ, କେବେ ତାହାକୁ ସ୍ୱାଭାବିକ ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ । ଏହି ଅବହେଳିତ ଦୁଃସ୍ଥ ଶିଶୁମାନଙ୍କ ପାଇଁ ସରକାରୀ ସ୍ତରରେ ସଫଳ ଆଇନର ବ୍ୟବସ୍ଥା ହୁଏତ ଦିନେ ସମ୍ଭବ ହେବ । ବର୍ତ୍ତମାନ କିନ୍ତୁ ଯିଏ ରାସ୍ତାକଡ଼ର ପିମ୍ପୁଡ଼ି ଭଳି ଜୀବନ କଟାଉଛି; ଆଉ ଦୁଇ ତିନି ବର୍ଷ ମଧ୍ୟରେ ମହାନଗରୀର ରାଜପଥ ଧାରରେ ସେ ଯେଉଁ ସମସ୍ୟାର ସମ୍ମୁଖୀନ ହେବ, ସେଥିରେ କେତେ ଦୂର ଚାରିତ୍ରିକ ଦୃଢ଼ତା ଓ ସ୍ୱାସ୍ଥ୍ୟରକ୍ଷା କରିପାରିବ ? କେତେଦୂର ନିରାପଦରେ ଚଳପ୍ରଚଳ ହୋଇ ପାରିବ ? ଚିନ୍ତା କରିବାମାତ୍ରେ ମୋର ଦେହ ସ୍ୱତଃ ଶୀତେଇ ଉଠିଲା । ଅଜଣାଭୟ, ଆଶଙ୍କା ଓ ଉତ୍ତେଜନାରେ ମସ୍ତିଷ୍କର ସ୍ନାୟୁକେନ୍ଦ୍ର ଗୁଡ଼ିକ ଅଡୁଆ ତଡ଼ୁଆ ହେବାକୁ ଆରମ୍ଭକଲା ।

ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ କୈଫିୟତ୍ ତଲବ୍ କରିବା ଢଙ୍ଗରେ ପ୍ରଶ୍ନ କଲି—"ଏପିଲାଟିତ ତୋର ଝିଅ ନୁହେଁ, ଏହାକୁ ସାଙ୍ଗରେ ଆଣିଲୁ କେଉଁଠୁ ?"

ଏପ୍ରଶ୍ନ ମଧ୍ୟ କୌଣସି ପ୍ରକାର ଅସ୍ୱସ୍ତି କିମ୍ବା ମାଧୁର୍ଯ୍ୟର ସୂଚନା ନଥିଲା । ବରଂ ଥିଲା ଅଳ୍ପ କିଛି କୌତୂହଳୀ ପ୍ରବୃତ୍ତି । ଏଥର କିନ୍ତୁ ଝିଅଟି ଉପରକୁ ମୁହଁ ଉଠାଇଲା । ପ୍ରଶ୍ନଟି ଯିମିତି ତାର ହୃଦୟର ଗଭୀରତମ ପ୍ରଦେଶରେ ଆଲୋଡ଼ନ ସୃଷ୍ଟି କରୁଛି । ଆଖିର ତାରା ଦୁଇଟି ଯେପରି ଗଭୀର ଅଶ୍ରୁ ବନ୍ୟାସରେ ଟଳ୍ ଟଳ୍ କରୁଛି । ନାକପୁଡା ଦୁଇଟିକୁ ଫୁଲେଇ ଉତ୍ତେଜି ସଙ୍କୋଚର ସହିତ ପ୍ରକାଶ କଲା—"ଏମାନଙ୍କ ଘର ଏହି ବାଈଶପଲ୍ଲି ଅ କୋଠ ଅପଲସ୍ତ ରାସ୍ତାରେ । ସନ୍ତସନ୍ତିଆ ମାଟି ଚୁଲର କୋଠରୀ ବଖରାଏ । ଛୋଟିଆ ପିଣ୍ଡା ତେନାଏ । ଘର ପାଖରେ ଅଳିଆ ଅଳିଆ ଆଉ ପଚା ଶୁଖୁଆ ପୋଡ଼ାର

ଗଛ । ଭଣଭଣ ମାଛି, ମଶା । ଶୀଅନ୍ତା ନରକପୁରୀ ବାବୁ ! ମଣିଷ ସେଠାରେ ବଡେ ଘୃଣ୍ୟ ଭଳି ।"

ପ୍ରକୃତରେ ଭାରତୀୟ ଧର୍ମଶାସ୍ତ୍ରରେ ଏହି କୁତ୍ସିତ ଘୃଣ୍ୟଙ୍କୁ ଯଥେଷ୍ଟ ମର୍ଯ୍ୟାଦା ଦିଆଯାଇଛି । ସେ ସ୍ଥାନ ପାଇଛି ଭଗବାନ କୃଷ୍ଣଙ୍କର ତୃତୀୟ ଅବତାର ରୂପେ । ପର୍ଯ୍ୟାପ୍ତ କଙ୍କାଳ ଓ ପଙ୍କିଳ ପରିବେଶ ମଧ୍ୟରେ ଭାରତର କେତେ ଶିଶୁ ସନ୍ତାନ ଦୈନିକ ଜନ୍ମ ନିଅନ୍ତି । ମଣିଷ ହେବା ପାଇଁ ଜୀବନ ସଂଗ୍ରାମକୁ ଓହ୍ଲାଇ ଆସନ୍ତି । ସାପ ବେଙ୍ଗ ମୂଷା ଚୂଚୁନ୍ଦରୀଙ୍କ ସହିତ ଏକାଠି ବାସ କରନ୍ତି । ନର୍ଦ୍ଦମା ଧାରରୁ ଖାଦ୍ୟ ଗୋଟାଇ ଖାଇ ଶରୀରକୁ ପୁଷ୍ଟ କରନ୍ତି । ତାର କିଏ ହିସାବ ରଖିଛି ଏଦେଶର ଗଣତନ୍ତ୍ର କମ୍ବା ସମାଜ ତନ୍ତ୍ରୀମାନେ ? ସେମାନଙ୍କ ନିମନ୍ତେ କି ଶିକ୍ଷା ଦରକାର, କି ସଂସ୍କୃତି ଦରକାର, କି ନୀତି ଦରକାର, କଉଳ ଦୁର୍ନୀତି ଦରକାର, ଉଗ୍ରତା ଦରକାର, ବ୍ୟଗ୍ରତା ଦରକାର, ମାରିବା ଦରକାର. ମରିବା ଦରକାର, ମୁଣ୍ଡ ଟେକିବା ଦରକାର, ମୁଣ୍ଡ ନୁଆଁଇବା ଦରକାର ତା'ର କିଏ କୌଣସି ଶୃଙ୍ଖଳାବଦ୍ଧ ସୁଚିନ୍ତିତ ଯୋଜନା କରି-ସାରିଲଣି ? ସବୁ ଆବଶ୍ୟକତା, ସବୁ ସମସ୍ୟା, ସବୁ ସଂକଟ, ସବୁ ନିବେଦନ, ସବୁ ଆବେଦନ ମିମିତ୍ତ ଆସି ଠିଆ ହୋଇଛି କ୍ଷମତାଦୁର୍ଗର ପାଚେରୀ ପାଖରେ ବର୍ଣ୍ଣାଢ୍ୟ ପଟୁଆର ଭଳି ।

ଅବନ୍ୟସ୍ତ ବିପର୍ଯ୍ୟସ୍ତ ନୁଖୁରା ମାଙ୍କଡବାଳ କେରାକୁ ଦୁଇ ପାଖକୁ ଝୁଲାଇ ହଲାଇ ସେ କହିଗ୍ଲଲା ଥାଏ—"ଏହାର ବାପା ଶକ୍ପାଟାଣେ । ମାଆ ଘର ପାଞ୍ଚ ଘରର କାମବୁଣୀ । ବୁଲିବୁଲି ବାସନ ମାଜେ, ବୋଲହାକ କରେ । ବଡ଼ଭାଇ ଦିଜଣ ଷ୍ଟେସନ ବଜାରରେ ଭିକ ମାଗନ୍ତି, ଆଉ ସୁଯୋଗ ଦେଖି କେଉଁଠୁ କିଛି ହାତ ସଫେଇ କରନ୍ତି । ସେଥିପାଇଁ ଷ୍ଟେସନ୍ ବଜାରରେ ଥିବା ସରଦାରକୁ ସବୁ ରବିବାର ଦିନ ଦୁଇ ଟଙ୍କା ଲେଖାଏ ସଲାମୀ ଦିଅନ୍ତି । ଶୁଣିଛି ସେହି ସରଦାର ପାଖରେ ପ୍ରାୟ ଦେଢଶହ ଜଣ ପିଲା ଅଛନ୍ତି । ଝଗଡ, ଅଧମ, ନୀଚ, ହୀନ ବେଉସାକରି ପେଟ ପୋଷୁଛନ୍ତି । ପେଟପୋଷ, କାହିଁ ଦୋଷ ! ସେମାନଙ୍କ ତଳକୁ ଯେଉଁ ଭଉଣୀ ସେ ପ୍ରାୟ ମୋଭଳି କି ମୋ ଠାରୁ ଟିକେ ଶ୍ରେଷ୍ଠ । ରାସ୍ତା କଡ଼ରୁ ଉଙ୍ଗାଟିଣ, ଶିଶି, ବୋତଲ, କାଚଚୂଡ଼ି ସଂଗ୍ରହ କରି ନିଏ ଘରକୁ । ଜିନିସ ଅଧିକ ହେଲେ ଘରେ ମାଆତାର ବୁଲାବେପାରୀଙ୍କୁ ଡ଼ାକି ଆଣିଦେଇ ଦିଏ । ଟଙ୍କାଏ ଦି ଟଙ୍କା ମିଳେ ।"

କେତୋଟି ମୁହୂର୍ତ୍ତର ନୀରବତା ପରେ ସେ ପୁଣି କହିଲା—"ସେହି ମାନଙ୍କ ପାଖରେ ମୁଁ ମୁଣ୍ଡ ଗୁଞ୍ଜିଛି । ଦୁଇ ଭାଇଙ୍କ ହେବ ଏ ପିଲାଟି ମୋ ସାଙ୍ଗରେ ଅସୁଛି ମାଗିବା ପାଇଁ ।"

କଥାର ଖିଅ ସରି ଆସିଲା ବେଳକୁ ଆମେ ପ୍ରାୟ କନକାଛକ ଟପି ପିଙ୍କେଶ୍ୱର ସାହି ଭିତରକୁ ପଶିସାରିଥିଲୁ । କ୍ୱଚିତ ଅନ୍ଧମିକା, କ୍ୱଚିତ ସ୍ୱାର୍ଥପରତା, କ୍ୱଚିତ ନଷ୍ଟ ରତା କ୍ୱଚିତ ସଂକୀର୍ଣ୍ଣତା, କ୍ୱଚିତ ଈର୍ଷତା, କ୍ୱଚିତ ମୂର୍ଖତା କ୍ୱଚିତ ନୀଚତାର ନର୍ଯୀପ ହେଉଛି ଆଜିର ମଧ୍ୟବିତ୍ତ ନାଗରିକ । ମୁଁ ସେହି ପ୍ରକାର ମଧ୍ୟରୁ ଭିନ୍ନହୋଇ ନପାରେ । ତଥାପି ଏହି ନର୍ଯୀପର ମହାଫେଣ୍ଟଣ ମଧ୍ୟରେ ଯେତିକି ମାନବିକତାର ସ୍ପର୍ଶ ରହୁଛି; ତାହାର ଫଳରେ ଏକ ଅବ୍ୟକ୍ତ ବେଦନାରେ ମୋର ଅନ୍ତଃସ୍ଥଳ ଗ୍ରମଣ ହଉଥିଲା । ହାୟ ଈଶ୍ୱର ! ପଚାରିଲି "ଏତେ ରାତି ହେଲାଣି, ତମେ ଦୁହେଁ ଫେରିବ କିମିତି ?"

ପୁଅଟି ଅ.ବାକାବା ହୋଇ କେବଳ ଅନାଇଲା । ତାର ମୌନ ନିର୍ବେଦ ମୁଖମଣ୍ଡଳରେ ଆନନ୍ଦ ଝାମ୍ପା ବସ୍ତୁସ୍ଥର ଚାହ୍ଣିବଣ ସୁଦ୍ଧା ନଥିଲା । ଝିଅଟି କହିଲା—"ଏହି ଗଳି ମୁଣ୍ଡ ଟପିଗଲେ ମଧର ଯାଏ ଗିବାକୁ ସିଧା ଗୋଟାଏ ରାସ୍ତା ପଡ଼ିଛି । ଏ ଟୋକାର ବାପା ଶକ୍ତା ଠିଆକରି ଛକ ମୁଣ୍ଡରେ ଆମକୁ ଖୋଜୁଥିବ ଯେ--"

ପିଣ୍ଡା ଉପରକୁ ଉଠିବା ସଙ୍ଗେ ସଙ୍ଗେ ସ୍ତ୍ରୀକୁ କହିଲି—"ବନର ଖତ ଓ ଡାଲି ତରକାରୀ ଯେତେ କିଛି ବଳି ପଡ଼ିଛି ଖାଲପାଣି ଟଙ୍ଗିକରେ ଏ ବାହାରି ପିଲାଙ୍କୁ ସେଥିରୁ ମୁଠେ ଅଧେ ଦେଇଦେ— ।"

ଲୁଗାପଟା ବଦଳି, ଗୋଡ଼ ହାତ ଧୋଇଆସି ଦେଖେତ ସେ ପିଲା ଦୁଇଟି ଖାଲପାଣ ଧରି ଚାଲିଭାଲି ଯାଇ ଗଲେଣି । ପିଣ୍ଡାତଳକୁ ଓହ୍ଲାଇ ପଡ଼ି ଗଳି ମୁଣ୍ଡଯାଏ ନଠେଇ ଗ୍ରୁହିଁଲି । ସେମାନଙ୍କର ଚାହ୍ଣିବର୍ଣ ନାହିଁ । ଘ୍ଲଣଆଡ ନଥିର ନସୁରୁ । ଗଛର ପତ୍ରଟିଏ ସୁଦ୍ଧା ହଲୁ ନଥାଏ ।

□ ଅଧ୍ୟକ୍ଷ, ଗଭର୍ଣ୍ଣମେଣ୍ଟ କଲେଜ ଅଫ
ଆର୍ଟସ ଏଣ୍ଡ କ୍ରାଫଟ
ଖଲ୍ଲିକୋଟ, ଗଂଜାମ

ବିଶ୍ୱାସ ରଖ ! ବିଶ୍ୱାସ ରଖ !! ଭାରତବର୍ଷରେ ସମସ୍ତେ ବିଶ୍ୱାସରେ ବନ୍ଧା । ତଥାପି ନୂଆ ଚେଲାଙ୍କ ବିଶ୍ୱାସ ପୁରୁଣା ବିଷ ସାଥିରେ ଫେଣ୍ଟି ହୋଇ ସର୍ପାଘାତ ଦେଲେ ବି ବିଷଘାରୁ ନାହିଁ ।

## କାହାଣୀ

# ଲୋକନାଟକ

ଶରତ ନାରାୟଣ ବେହେରା

ବିଶ୍ୱାସରେ ବିଷ ମିଶାଇବା କାରବାର ଅତି ପ୍ରାଚୀନ । ଯେଉଁଦିନ ଭଗବାନ ମଣିଷକୁ ଏହି ପୃଥିବୀରେ ବାସ କରିବାକୁ ପଠାଇଲେ ସେହିଦିନୁ ଏହି ବିଶ୍ୱାସଘାତକ କାରବାର ଚାଲି ଆସୁଛି । ବାପ ପୁଅକୁ, ଭାଇ ଭାଇକୁ,— ଗୋଟିଏ କଥାରେ କହିଲେ ମଣିଷ ମଣିଷର ବିଶ୍ୱାସରେ ବିଷ ମିଶାଇ ଆସିଛି ।

କିନ୍ତୁ ବିଷରେ ବିଶ୍ୱାସ ମିଶାଇବା ଏକଦମ ନୂଆ ନହେଲେବି ଅତି ବିରଳ ନିଶ୍ଚୟ । ଏବଂ ଏହିପରି ଏକ ବିରଳ ଘଟନା ଘଟିଗଲା କିଛିଦିନ ତଳେ ମିଲକୁପଡ଼ା ଗାଁରେ ।

ଅବଶ୍ୟ ମିଲକୁପଡା ଗାଁରେ ଘଟିଯାଇଥିବା ଏହି ଐତିହାସିକ ଘଟନା ବର୍ଣ୍ଣନା କରିବା ପୂର୍ବରୁ ଏହାର ନାମକରଣ ସଂପର୍କରେ ଆଲୋକପାତ ନକଲେ ପୂର୍ବାପର ସଂପର୍କ ରକ୍ଷା କରିବାରେ କିଛିତ ବାଧା ଉପୁଜିପାରେ । କାରଣ ଘଟନାଟିର ଏକ ମୁଖ୍ୟ ଅଭିନେତାଙ୍କର ଘନିଷ୍ଠ ସଂପର୍କ ରହିଛି ଗ୍ରାମର ନାମ କରଣରେ ।

ଅଭିନେତାଙ୍କ ଘନିଷ୍ଠ ସଂପର୍କ ପୁଣି ଗ୍ରାମର ନାମ କରଣରେ ? ମାନେ ସ୍ୱତମତ ନାଟକ !

ହଁ, ନାଟକ ବୁହେଁ ଅ.ଉ କଣ । ପୃଥିବୀଟା ଯେ ଏକ ନାଟ୍ୟଶାଳା !

ମିଲକୁ କୁମର ମିଲକୁପଡା ଗାଁର ଯୁବକ ସଂଘର ପ୍ରତିଷ୍ଠାତା ସଭାପତି । ଟିକିଏ ଟାଉଟରିଆ ପ୍ରକୃତିର ବୋଲି ତାକ ନାଁ ଅଛି ଅ.ମ ପାଖ ଆ.ଠ ଦଶଟା ଗାଁରେ । ତେଣୁ କାହାର କେଉ୍ ମାମଲା ହେବା ମାତେ ବାହାର ପଡେ

ସାହାଯ୍ୟ କରିବାକୁ । ଓକିଲ ଖଂଜିବାରୁ, ସାକ୍ଷୀଗୁଡ଼ା ଯୋଗାଡ଼ କରିବା ଆଦି ସବୁକାମ ମିଲକୁ ଦ୍ୱାରା ଯେମିତି ହୋଇପାରେ ଆଉ କାହାରି ଦେଇ ହୋଇପାରେ ନାହିଁ ବୋଲି ସେ ଅଞ୍ଚଳର ଲୋକଙ୍କ ବିଶ୍ୱାସ । ତେଣୁ ବେଳେବେଳେ ମିଲକୁ ଉଭୟ ବାଦୀ ଓ ପ୍ରତିବାଦୀଙ୍କୁ ଏକା ସାଙ୍ଗରେ ସାହାଯ୍ୟର ହାତ ବଢ଼େଇ ଦେଇଥିବାର ଦେଖାଯାଏ ।

କିନ୍ତୁ ପୃଥିବୀରେ ହିଂସୁକ ଲୋକର ଅଭାବ ନାହିଁ । ସେମାନଙ୍କ ଭିତରେ କେତେ ଜଣ ମିଲକୁ ପଡ଼ା ଅଞ୍ଚଳରେ ଥିଲେ । ମିଲକୁର ଏପରି ସାହାଯ୍ୟର ଉଭୟ ହାତ ପ୍ରସାରଣରେ ସନ୍ଦେହର ମୋହର ମାରିବାକୁ ଚେଷ୍ଟା କରନ୍ତି । ହେଲେ ମିଲକୁ ଯେଉଁ ଜବାବର ଚାପଡ଼ ମାରେ ସେଥିରେ ସମସ୍ତଙ୍କର ମୁହଁ ବଙ୍କା ହୋଇଯାଏ । ହିଂସୁକ ଦଳ ଉଁସୁଁ କରି ପାରନ୍ତି ନାହିଁ ।

ମିଲକୁ କହେ - "ଭାଇମାନେ ! ଆମର ଯୁବକ ସଂଘ ପାଖରେ ସବୁ ଗାଁ ଲୋକ ସମାନ । କେହି ଶତ୍ରୁ ନୁହେଁକି କେହି ମିତ୍ର ନୁହେଁ । ସମସ୍ତେ ସମାନ ଆମ ଆଖିରେ । ତେଣୁ ଆମକୁ ଯେକେହି ସାହାଯ୍ୟ ମାଗିବ ଆମେ ସାହାଯ୍ୟ କରିବୁ । କାହାରିକୁ ନାହିଁ କରି ଫେରାଇ ଦେବୁ ନାହିଁ ନିରାଶ କରି ।

ଖାସ୍ ସେଇଥିପାଇଁ ମିଲକୁର ଯୁବକ ସଂଘର ସଭ୍ୟମାନେ ସାହାଯ୍ୟ କରି କରି ଏମିତି ପୋଖତ ହୋଇ ଗଲେଣି ଯେ ଯେମିତି କେସ୍ ମାମଲା ପାଇଁ ସାକ୍ଷୀ ଦରକାର ପଡ଼ିଲେ ବି କଲ୍ ବାହାରି ପଡ଼ିବେ । ମିଲକୁ ଭଗବାନଙ୍କ କିରିଆ କରି କହେ, ଲଣ୍ଡନରେ ଘଟିଯାଇଥିବା ମର୍ଡର କେସ୍‌ରେ ସାକ୍ଷୀ ଦରକାର ପଡ଼ିଲେ ବି ତାର ସଂଘର ସଭ୍ୟମାନେ ଯାଇ ସାକ୍ଷୀଦେଇ ପଳେଇ ଆସି ପାରିବେ । ଏବଂ ତା ସଦ୍ଧତ ମାଇନର ପଢ଼ିଲା ବେଳେ ମୁଖସ୍ଥ କରିଥିବା ଏକମାତ୍ର ପୁଷିକେଟ ଗୀତଟି ଗାଇ ହସି ହସି ଗଡ଼ିଯାଏ । କିନ୍ତୁ ଗାଁ ଲୋକ ସବେଁତ ଗଉଁଲିଆ । ସେମାନେ ପୁସି ବଲେଇ ଲଣ୍ଡନ ଯାଇ ରାଣୀଙ୍କୁ ଦେଖି ଫେରିବାର ମର୍ମ ନ ବୁଝିଲେ ବି ମିଲକୁର ଆବୃତ୍ତି କରିବାର ଢଙ୍ଗ ଦେଖି ହସି ପକାନ୍ତି ।

ଏହିପରି କରିତକର୍ମା ଯେଉଁ ସଂଘର ସଭ୍ୟମାନେ ସେହି ସଂଘର ପ୍ରତିଷ୍ଠାତା ସଭାପତି କେମିତି ବିଶ୍ୱକର୍ମାଟାଏ ହୋଇଥିବ ଥରେ ଶାନ୍ତ ଚିତ୍ତରେ ଚିନ୍ତା କରି ଦେଖନ୍ତୁ । ତେଣୁ ପୂର୍ବତନ ରାଜା ସିଂହାସନ ଆରୋହଣ କଲାପରେ ପ୍ରଥମଥର ପାରିଧିକୁ ଯାଇ ଯେଉଁ ସ୍ଥାନରେ ପ୍ରଥମେ କୁଟରିଟିଏ ମାରି ଗୋଟିଏ ଗ୍ରାମ ସ୍ଥାପନ କରି କୁଟୁରିଚଆଁ ନାମକରଣ କରିଥିଲେ, ସେହି ଗ୍ରାମର ଏମନ୍ତ ବିଖ୍ୟାତ ଯୁବକସଂଘର ପ୍ରତିଷ୍ଠାତା ନାଁରେ ଯଦି କୁଟୁରିଚଆଁ ଗାଁକୁ ମିଲକୁପଡ଼ା ନାମିତ କରାଯାଏ କେହି ପ୍ରତିବାଦ କରିବେ କାହିଁକି ?

ତେବେ କେଉଁକାଳରୁ ଗୋରାମାନେ ଏଦେଶ ଛାଡ଼ିଗଲେ ପରେ ବି ଏବେ ମଧ୍ୟ କେହି କେହି ଗୋରା ଚମଡ଼ା ପ୍ରତି ସମ୍ମାନ ଦେଖାଇବା ଭୁଲି ନଥିବା ପରି କୁଟୁରିଆଁ ଗାଁରେ କେହି କେହି ବୁଢ଼ା ପୂର୍ବତନ ରାଜାଙ୍କର ଲୁଣଖିଆ ଆନୁଗତ୍ୟ ପ୍ରକାଶ କରି ପ୍ରଥମେ ନୂତନ ନାମକରଣ ପ୍ରସ୍ତାବକୁ ମୃଦୁ ଆପତ୍ତି କରିଥିଲେ ।

କିନ୍ତୁ ମିଲକୁ ସାଫ୍ ସାଫ୍ ତାର ବାପା ଓ ସେହି ବୟସର ଲୋକମାନଙ୍କୁ ଶୁଣେଇ ଦେଲା, ଇଂରେଜ ସମ୍ରାଟ, ବଡ଼ଲାଟମାନଙ୍କ ନାଁରେ ରାସ୍ତାଘାଟ, ଘରଦ୍ୱାର ଥିଲେ ବି ସେ ସବୁର ନାଁ ଏବେ ବଦଳି ଗଲଣି ସ୍ୱାଧୀନତା ପରେ । ଅଥଚ ରାଜୁତି ଗଲାପରେ ବି ତୁମେମାନେ ଚାହୁଁଛ ରଜାଙ୍କ ଦିଆଁ ନାଁ ରହିଥିବ । ଛି ଛି...... !

ଏଣୁ ସଙ୍ଗେ ସଙ୍ଗେ ମିଲକୁ ତାର ଯୁବକ ସଂଘର ଜରୁରୀ ବୈଠକ ଡାକି ଗାଁର ନାଁ ବଦଳେଇବା ପାଇଁ ପ୍ରସ୍ତାବ ପାସ କରିବାକୁ କହିଲା । କିନ୍ତୁ ନାଁ ବଦଳେଇ ଦେବ କହିଲେ ତ ଚଳିବ ନାହିଁ । ନୂଆଁ ନାଁଟା କଣ ହେବ ବାଛିବା କି କମ କଷ୍ଟ ! ସାରାଦିନ ଧରି ସମସ୍ତଙ୍କର ମନପସନ୍ଦ ନାଁଟିଏ ବାଛି ନ ପାରିବାରୁ ବାଧ୍ୟ ହୋଇ ଟୋକାରୁର ପ୍ରସ୍ତାବକୁ ଗ୍ରହଣ କରି ଗାଁର ନାଁ ମିଲକୁପଡ଼ା ହୋଇଗଲା । ଖାଲି ପ୍ରସ୍ତାବ ପାସକରି ସେମାନେ ସନ୍ତୁଷ୍ଟ ହୋଇ ରହିଲେ ନାହିଁ । ସେହିଦିନ ସହରକୁ ଯାଇ ମିଲକୁପଡ଼ା ଗାଁ ସାଇନବୋର୍ଡଟେ ଲେଖେଇ ଆଣି ଗାଁ ମୁଣ୍ଡ ବରଗଛରେ ଝୁଲେଇ ଦେଲେ ।

ସେହି ସାଇନବୋର୍ଡ ଝୁଲୁଥିବା ବରଗଛ ତଳେ ସେଦିନ ଗାଁଲୋକେ ଆବିଷ୍କାର କଲେ ନୀଳକଣ୍ଠ ବାବୁଙ୍କୁ । ଦୀର୍ଘ ଉନଶହ ବର୍ଷକାଳ ହିମାଳୟରେ ତପସ୍ୟା କଲାପରେ ସିଦ୍ଧିଲାଭ କରି ସିଧା ଆସି ପହଞ୍ଚିଥିଲେ ମିଲକୁପଡ଼ା ଗାଁରେ ।

ଏତେ ଛୋଟ ଗାଁରେ ଏତେ ବଡ଼ ବାବାଜୀଙ୍କ ଆବିର୍ଭାବ କମ କଥା ନୁହେଁ । କିମିତିକେ କଥାଟା ପ୍ରଚାରିତ ହୋଇଗଲା । ଆଖପାଖ ଦଶଟା ଗାଁର ଲୋକ ଆସି ରୁଣ୍ଡ ହେଲେ ବାବାଜୀଙ୍କୁ ଦର୍ଶନ କରିବାକୁ । ମିଲକୁ କଚେରୀ କାମରେ ସହରକୁ ଯାଇଥିଲା । ଫେରି ଆସି ଦେଖିଲା ହରିବୋଲ ଆରମ୍ଭ ହୋଇ ଯାଇଛି । ସେବେ ତାର ସଂଘର ସଭ୍ୟ ମାନଙ୍କୁ ଡାକି ପହଞ୍ଚିଗଲା ସାହାଯ୍ୟର ହାତ ପ୍ରସାରିବାକୁ । କିନ୍ତୁ ମିଲକୁ ତାଙ୍କର ଗାଁ ଲୋକଙ୍କ ପରି ଗାଉଁଲିଆ ନୁହେଁ । ପିଲାଦିନେ ଚାଟଶାଳୀରେ ପଢ଼ିଥିଲା ପାଣି ପିଇବ ଛାଣି ପଇସା ନେବ ଗଣି । ପାଠରୁ ପାଣି କଥାଟା ଭୁଲିଯାଇ ପଇସା କଥାଟା ମନେ ରଖିଛି ।

ବରଗଛ ତଳେ ପହଞ୍ଚିବା ଆଗରୁ ମିଲକୁ କହିଲା—"ଆଜି କାଲି ଖାଣ୍ଟି ନୋଟ ଅପେକ୍ଷା ନକଲି ନୋଟ ସଂଖ୍ୟା ଅଧିକ ହେଲାପରି ଖାଣ୍ଟି ବାବାଜୀଙ୍କ

ଅପେକ୍ଷା ନକରି ବାବାଜୀ ବେଶୀ ଗୁଲବୁଲ କରୁଛନ୍ତି । ତେଣୁ ପରୀକ୍ଷା ନକରି ଭଲଗିବା ଉଚିତ ହେବ ନାହିଁ ।"

ସବୁ ସଭ୍ୟ ହାତ ଟେକିଲେ ।

ମିଲକୁ କହିଲା,—"ମୁଁ ପରୀକ୍ଷା କରିବ । ବାବାଜୀ ଯଦି ପାସ କରନ୍ତି ଗାଁରେ ପୂଜାପାଉଁ ରହିବେ । ନୋହିଲେ ଉଗାଡ଼ କରିଦେବା ।"

ସବୁ ସଭ୍ୟ ତାଳି ମାରିଲେ ।

ନୀଳକଣ୍ଠ ବାବା ହିମାଳୟରୁ ଭଗବାନଙ୍କ ଅଦେଶରେ ବାଟ ପଚାରି ପଚାରି ସିଧା ଆସି ମିଲକୁପଡ଼ା ଗାଁରେ ପହଞ୍ଚିଥିବା ଜାଣି ଗାଁ ଲୋକମାନେ ଠେଲପେଲ ହୋଇଥାଆନ୍ତି ମୁଣ୍ଡିଆ ମାରିବାକୁ । ମିଲକୁ ସମସ୍ତଙ୍କ ଠେଲି ଆଗକୁ ଯାଇ ଚଟକରି ନୀଳକଣ୍ଠ ବାବାଙ୍କୁ ପଚାରିଦେଲା,—"ବାବା ଆପଣଙ୍କ କହିବା ମତେ, ଭଗବାନ ଆପଣଙ୍କୁ ପଠେଇଛନ୍ତି ଆମର ମିଲକୁପଡ଼ା ଗାଁକୁ ।"

ନୀଳକଣ୍ଠ ବାବା ହୁଁ ସୂଚକ ଈଶ୍ୱରୀୟ ହସ ହସିଲେ ।

ତା'ପରେ ଅସଲ ପ୍ରଶ୍ନଟା ପଚାରି ଦେଲା ମିଲକୁ—"ଅଚ୍ଛା ବାବା, ଭଗବାନ ଆମର ଏହି ଗାଁର ନାଁଟା କେମିତି ଜାଣି ପାରିଲେ ?"

ନୀଳକଣ୍ଠ ବାବା ଏମିତି ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲେ । ତାଙ୍କ ମୁହଁର ହସ କୁଆଡ଼େ ଉଭେଇ ଗଲା । ଆଖି ବୁଜିଦେଲେ ।

ସେତେବେଳକୁ ଅନ୍ୟ ସଭ୍ୟମାନେ ମିଲାକୁ ପାଖରେ ପହଞ୍ଚି ଯାଇଥିଲେ । ମିଲକୁ ଟେଁକାଳୁର କାନେ ଫୁସକି ମାରିଲା,—"ଦଅନ୍ତୁ ବାବା ଉତ୍ତର ଏବେ ।"

ବେଶ କେତୋଟି ମୁହୂର୍ତ୍ତ ଆଖି ବୁଜି ବସିଲା ପରେ ନୀଳକଣ୍ଠ ବାବା ଆଖି ଖୋଲିଲେ । ଲୋକଗହଳିରେ ଗଜ ଗଜ କରୁଥିବା ମିଲକୁପଡ଼ାର ଗାଁ ମୁଣ୍ଡା ହଠାତ୍ ମିଲକୁର ପ୍ରଶ୍ନପରେ ନୀଳକଣ୍ଠ ବାବା ଯେମିତି ଆଖିବୁଜି ଦେଲେ କାଳି ପଡ଼ି ଯାଇଥିଲା ମଶାଣିପଡ଼ା ପରି । ନୀଳକଣ୍ଠ ବାବା ଆଖି ଖୋଲିବା ମାତ୍ରେ ଯେମିତି ଜୀବନ ପାଇଁଗଲା ସମସ୍ତଙ୍କର ।"

କୁଟିଳ ହସରୁ ଟିଏ ହସି ମିଲକୁ ପଚାରିଲା—"ଚୁପ ରହିଲ କାହିଁକି ? ଉତ୍ତର ଦଅ ।"

ପୁଣି ହସିଲେ ବାବା ନୀଳକଣ୍ଠ ।

ତା'ପରେ କହିଲେ,—"ଆଖି ବୁଜି ମୁଁ ଭଗବାନଙ୍କୁ ପଚାରୁଥିଲି ତୁମେ କେମିତି ଜାଣିଲ ଏହି ମିଲକୁପଡ଼ା ଗାଁର ନାଁ ପ୍ରଭୁ ? ତୁମେ ମତେ ଏଠିକି ପଠାଇଲ ଯେ ମୁଁ ଏକଟିଆ କରିବ କଣ ।"

ଏଥର ଟେଁକାଳୁ ତା'ର ବୁଦ୍ଧିର କସରତ ଦେଖାଇଲା । —"କଣ ଭଗବାନ ଉତ୍ତର ଦେଲେ ?"

ସ୍ମିତହସି ନୀଳକଣ୍ଠ ବାବା କହିଲେ,—"ହଁ ବାବା ମିଲକ୍, ଓ ଟେଁକାରୁ ଭଗବାନ କହିଲେ—ମିଲକୁପଡ଼ା ଗାଁର ମିଲକ୍ ଓ ଟେଁକାରୁ ଆଦ ତୁମକୁ ସାହାଯ୍ୟ କରିବେ । ବର୍ତ୍ତମାନ ସେମାନେ ତୁମ ସାମନାରେ ବସିଛନ୍ତି ।"

ଆଁ ଆଁ ଏଁ !! ମିଲକ୍ ମୁହଁରୁ ଆଉ କଥା ବାହାରିଲା ନାହିଁ । ଆଁ ହୋଇ ମୁହଁ ମେଲା ରହିଗଲା ।

ଆଶୀର୍ବାଦ ସୂଚକ ମୂଳକ ହସି ନୀଳକଣ୍ଠ ବାବା କହିଲେ,—"ଏଥିରେ ମୋର ବାହାଦୁରୀ କିଛି ନାହିଁ ବତ୍ସ, ସବୁ ସେହି କରୁଣାମୟଙ୍କର ଅପାର କରୁଣା ।"

କହିବା ବାହୁଲ୍ୟ ମିଲକ୍ ସଙ୍ଗେ ସଙ୍ଗେ ସମସ୍ତ ସଭିଙ୍କ ସହିତ ନୀଳକଣ୍ଠ ବାବାଙ୍କ ପାଦତଳେ ଲମ୍ବଗୁଣ୍ଡ ହୋଇ ପଡ଼ିଗଲା ଓ ମୁକ୍ତକଣ୍ଠରେ ଦୋଷ ସ୍ୱୀକାର କଲା—"ଆମକୁ କ୍ଷମା କରି ଦିଅନ୍ତୁ ବାବା, ଆମେ ଆପଣଙ୍କୁ ନକଲି ବାବା ଭାବି ପରୀକ୍ଷା କରୁଥିଲୁ । ଆମକୁ ପାଦଧୂଳି ଦେଇ ମାଫକରି ଦିଅନ୍ତୁ ।"

ଏବଂ ବାବା ନୀଳକଣ୍ଠ ପାଦଧୂଳି ଦେବା ଆଗରୁ ମିଲକ୍ ବାବାଙ୍କ ପାଦ ପୋଛି ଆଣି ନିଜମୁଣ୍ଡରେ ମାରି ଟେଁକାରୁ ଆଦି ଅନ୍ୟ ସମସ୍ତଙ୍କ ମୁଣ୍ଡରେ ମାରିଲା ।

ତାପରେ ଆଣ୍ଠୁ ମାଡ଼ି ହାତ ଯୋଡ଼ି ମିଲକ୍ ପ୍ରାର୍ଥନା କଲା—"ଆଦେଶ କରନ୍ତୁ ବାବା, ଏ ଦାସ କଣ ଆପଣଙ୍କ କପରି ସେବାକରିବ ?"

ସ୍ମିତହସି ବାବା କହିଲେ—"ବାବା ମିଲକ୍, ଟେଁକାରୁ ସର୍ବସ୍ୱତ୍ୟାଗୀ ସନ୍ନ୍ୟାସୀ ମୁଁ । ମୋର ବା କିସ ପ୍ରୟୋଜନ । ତେବେ ଯେତେ ସନ୍ନ୍ୟାସୀ ହେଲେ ବି ମଣିଷଟାଏତ । ଭଗବାନ ବି ତ ମଣିଷ ଜନ୍ମନେଇ ଘରଦ୍ୱାର କରି ସାଂସାରିକ ଜୀବନ ଯାପନ କଲେ । ତେଣୁ ମୋ ମୁଣ୍ଡ ଉପରେ ଛୁଡିଟିଏ ଦରକାର ଖରାବର୍ଷା ଶୀତରୁ ରକ୍ଷା ପାଇବାକୁ । ଆଉ ତେଲ ଲୁଣ କଥା ମୁଁ ଭାବିବି କାହିଁ ମୋର ଏତେ ଏତେ ଭକ୍ତ ଥାଇଁ ଥାଇଁ !"

ଅହାହା କି ସ୍ୱୀକାରୋକ୍ତି ।

ସଙ୍ଗେ ସଙ୍ଗେ ସମସ୍ତ ଗ୍ରାମବାସୀଙ୍କୁ ହରିବୋଲ ଦିଆଇ ମିଲକ୍ ଲାଗି ପଡିଲା ନୀଳକଣ୍ଠ ବାବାଙ୍କ ଲାଗି ଆଶ୍ରମ ତିଆରି କରିବାକୁ ଓ ଦୁଇଦିନ ଭିତରେ ଘସି ଲିପି ସୁନ୍ଦର ଆଶ୍ରମଟିଏ ନିର୍ମିତ ହୋଇଗଲା ।

ସେଦିନ ସନ୍ଧ୍ୟାରେ ଯେତେବେଳେ ଲୋକ ଗହଳି ଅମିଗଲା, କାଉ କୋଇଲି ନିଜ ନିଜ ବସାକୁ ଫେରିଗଲେ ଓ କୁଲିହାମାନେ ହୁକେ ହୋ ରବ ଧରେ ପାରି ସାରିଲେ ମିଲକ୍ ଟେଁ ଲଇଟି ମାରି ମାରି ସବାନ୍ଧବେ ଗୋପନରେ

ଆଶ୍ରମରେ ପହଞ୍ଚି ବାବାଙ୍କୁ ନିବେଦନ କଲି,—"ଭଜନ କୀର୍ତ୍ତନର କିପରି ଆୟୋଜନ ହେବ ନିର୍ଦ୍ଦେଶ କରନ୍ତୁ ବାବା ।"

ସନ୍ତୁଷ୍ଟ ହୋଇ ହସି ହସି ନୀଳକଣ୍ଠ ବାବା ଆଶୀର୍ବାଦ କଲେ,—"ମୁଁ ତୁମ-ମାନଙ୍କର ସେବାରେ ସନ୍ତୁଷ୍ଟ । ମୋର ଆଉ କିଛି ପ୍ରୟୋଜନ ନାହିଁ । ଖାଲି ତୁମେ ମୋ ଉପରେ ବିଶ୍ୱାସ ରଖ । ତୁମର ବିଶ୍ୱାସ ହିଁ ହେବ ମୋ ପ୍ରତି ତୁମର ଶ୍ରେଷ୍ଠ ଭକ୍ତି ଅର୍ଘ୍ୟ ।"

ତାହାହିଁ ହେଲା ।

ମିଲକୁ ଓ ତାର ଯୁବକ ସଂଘର ସଭ୍ୟମାନେ ନୀଳକଣ୍ଠ ବାବାଙ୍କର ଅତି ବିଶ୍ୱସ୍ତ ହୋଇଗଲେ । ପ୍ରତିଦିନ ସନ୍ଧ୍ୟାହେଲେ ସମସ୍ତେ ଯାଇ ଆଶ୍ରମରେ ପହଞ୍ଚି ବାବାଙ୍କ ସହିତ ଭଜନ କୀର୍ତ୍ତନ କରନ୍ତି । ଏହା ଦେଖି ମିଲକୁର ବାପା ସମେତ ବୁଢ଼ାମାନେ ଆଶ୍ୱସ୍ତ ହେଲେ ଯେ, ଆଉ ଯାହା ହେଉବା ନହେଉ ଗାଁରେ ନୂଆ କେସମାମଲା ଦାଏର ହୋଇ ନାହିଁ । ପୁଲିସବାଲା ଆସି ଡେରାଘରେ ଡେରା ପକଉ ନାହାନ୍ତି ।

ତାପରେ ଦିନେ ରାତିରେ ନୀଳକଣ୍ଠ ବାବାଙ୍କ ଆଶ୍ରମରେ ହଠାତ୍ ଭଜନ କୀର୍ତ୍ତନ ନାଦ ସ୍ତବ୍ଧ ହୋଇଗଲା । ମିଲକୁ ତାର ସାଥୀମାନେ ନୀଳକଣ୍ଠୀ ସାଙ୍ଗ ଏବେମର ସେବେମର ଅବସ୍ଥାରେ ଡାକ୍ତରଖାନାକୁ ବୁହା ହୋଇଗଲେ ଓ ବାବା ନୀଳକଣ୍ଠ ଉଭାନ୍ !

କିନ୍ତୁ ମିଲକୁ, ଟେକାରୁ ଆଦିଙ୍କର ଭାଗ୍ୟ ଭଲ, ସେମାନେ ବାବାଙ୍କ ଆଶୀର୍ବାଦରେ ନାଗବାଛା ସାଜି ଗ୍ରାମବାସୀ ମାନଙ୍କୁ ନାଗ ସର୍ପାଘାତରୁ ରକ୍ଷା କରିବାକୁ ବାବା ନୀଳକଣ୍ଠଙ୍କ ସ୍ୱହସ୍ତରୁ ବିଷରେ ବିଶ୍ୱାସ ମିଶାଇ ଖାଇଥିଲେ ମଧ୍ୟ ସଙ୍ଗେ ସଙ୍ଗେ ଡାକ୍ତରଖାନାରେ ପହଞ୍ଚି ଯାଇଥିବାରୁ ପୈତୃକ ପ୍ରାଣଟି ମାନ ଫେରି ପାଇଲେ ।

ଏହା ଭିତରେ ଅନେକ ବର୍ଷ ବିତି ଯାଇଛି । କୁଟରାଚୁଆଁ ଗାଁ ତାର ପୂର୍ବ ନାମ ଫେରି ପାଇଛି । କିନ୍ତୁ ହିମାଳୟରୁ କେହି ନୀଳକଣ୍ଠ ବାବାଙ୍କ ଆଗମନ ନୋହିବା ହେତୁ ଆଉ କୌଣସି ରୋମାଞ୍ଚକର ନାଟକ ଅଭିନୀତ ହୋଇ ପାରିନାହିଁ ।

☐ ଆକାଶବାଣୀ
ସମ୍ବଲପୁର

**ଗୋଟିଏ ପାଖରେ ପାହାଡ଼ ଅନ୍ୟ ପାଖରେ ଟେନେସ ପଡ଼ିଆ । ମଝିରେ ଅଛନ୍ତି ପ୍ରୀତଚନ୍ଦ୍ର ଏବଂ ତାଙ୍କର ପତ୍ନୀ । ଇଷ୍ଟଇଣ୍ଡିଆ କଂପାନୀ ବେଳର ଇତିହାସ ପୁଅ ବାପାଙ୍କ ମନେ ପକାଇ ଦେଉଛି·········**

## କାହାଣୀ ॥ ସଂଭବାମି ॥ ଭୂପେନ ମହାପାତ୍ର

---

ସହରର ଯୋଉ ଅଂଶରେ ସେ ଦିନ ସୂର୍ଯ୍ୟ ଅତି ଅସ୍ତ ବ୍ୟସ୍ତ ହୋଇ ଓହ୍ଲାଇ ପଡୁଥିଲା ପଛ ଏବଂ ଉଚ ଶାଳ ଓ ପିଅଶାଳ ଜଂଗଲର ମଥା ଉପରୁ ଠିକ ସେଇ ଅଂଶରେ ବେଶ ଗୋଟାଏ ସୌଖୀନ ବାସଭବନର ନରମ ଘାସ ଗାଲିଚା ଉପରେ ପ୍ରୀତଚନ୍ଦ୍ର ବସି ପୁରୁଣା ତଥା ବାକି ପଡ଼ିଥିବା ଫାଇଲ ଉପରେ ମନୋନିବେଶ କରିଥିଲେ ।

ମହୁଲ ଫୁଲର ମହୁଆ ମହକ ଭିତରେ ଦିନର ସୂର୍ଯ୍ୟାସ୍ତ କିମ୍ବା ସୂର୍ଯ୍ୟୋଦୟ କେତେବେଳେ ଆସେ କିମ୍ବା ଯାଏ ସେ କଥା ପ୍ରୀତଚନ୍ଦ୍ର ଜାଣି ପାରନ୍ତିନ ।

ଅଫିସରେ ସେ ଯେତିକି ଫାଇଲ ଦେଖନ୍ତି ଘରେ ତାଠୁ ବରଂ ବେଶୀ, କମ୍ ନୁହେଁ ।

ଉଚ ପଦବୀରେ ପ୍ରୀତଚନ୍ଦ୍ର ଏ ସହରକୁ ଆସିବାର ବେଶ କିଛି ଦିନ ହୋଇ ଗଲାଣି ।

ସରକାରରେ ତାଙ୍କର ନାଁ ଅଛି । ଏ ଜିଲ୍ଲାର ପ୍ରୋବ୍ଲେମ୍ ସହିତ ପ୍ରୀତଚନ୍ଦ୍ର ବେଶ୍ ପରିଚିତ । ଆଗରୁ ଥରେ ସେ ଏଠି ଏସ୍. ଡି. ଓ. ଥିଲେ । ଆଉ ତା ଛଡ଼ା ଲୋକଙ୍କ ସମସ୍ୟାକୁ ପ୍ରୀତଚନ୍ଦ୍ର ବେଶ୍ ଉପଲବ୍ଧି କରି ପାରନ୍ତି ଏବଂ ସେଇ ଅନୁସାରେ ସରକାରଙ୍କ ଚିନ୍ତାଧାରାର ସଫଳ ରୂପାୟନ ପାଇଁ ଏକ ସୁଷ୍ଠୁ ଉପାୟ ଅତି ସହଜରେ ବାହାର କରି ପାରନ୍ତି ବୋଲି ସେ ଉଭୟ ସରକାର ଏବଂ ଲୋକଙ୍କ ମଧ୍ୟରେ ଖୁବ୍ ଶୀଘ୍ର ଆପଣାର ହୋଇ ପାରନ୍ତି ।

ମୋଟାମୋଟି ଏଇଟା ତାଙ୍କର ପରିଚୟ ।

ଡିସେମ୍ବରର ସଂଧ୍ୟା । ସଂଧ୍ୟାର ଶିରୁଆ ଥଣ୍ଡା । ଥଣ୍ଡାର ମର୍ମଭେଦୀ ଅତ୍ୟାଚାର ଏବଂ ଏ ଅତ୍ୟାଚାରର ମୃଦୁ ପୀଡ଼ନ ପ୍ରୀତଚନ୍ଦ୍ର ଅନୁଭବ କରି

ପାରୁନଥିଲେ । ସେ ପୂରପୂର ଫାଇଲ ମାନଙ୍କରେ ମଜ୍ଜି ଯାଉଥିଲେ । ସବୁ କାମ ସେ ଆଜି ଶେଷ କରିବାକୁ ଚାହାନ୍ତି । ଅସନ୍ତା କାଲି ତାଙ୍କୁ ଟ୍ୟୁରରେ ଯିବାକୁ ପଡ଼ିବ । ଅନ୍ତତଃ ଅସନ୍ତା ଅସେମ୍ବ୍ଲି ଅଧିବେଶନ ଆରମ୍ଭ ପୂର୍ବରୁ ସେ ନିଜ ଅଂଚଳରେ ଆରମ୍ଭ ହୋଇଥିବା ଯୋଜନା ଗୁଡ଼ିକ ସମ୍ପର୍କରେ ଏକ ପ୍ରତ୍ୟକ୍ଷ ଜ୍ଞାନ ସଂଗ୍ରହ କରିପାରି ଥିବେ ଯୋଉଁଟାକି ତାଙ୍କୁ ଅଧିବେଶନ ସମୟରେ ବିଭିନ୍ନ ପ୍ରଶ୍ନ ଗୁଡ଼ିକର ଯଥା ତଥ୍ୟ ଉତ୍ତର ନିର୍ଦ୍ଦିଷ୍ଟ ଭାବରେ ଦେବାକୁ ସକ୍ଷମ କରି ପାରିବ ।

ପ୍ରୀତିଚନ୍ଦ୍ର ନିଜ କର୍ତ୍ତବ୍ୟ ବିଷୟରେ ବେଶ ସଚେତନ ।

ଷ୍ଟେନୋ ତଥା ହେଡ୍ କ୍ଲର୍କ ଅଜ୍ଞାବହ ଭାବେ ଅପେକ୍ଷା କରନ୍ତି । ଗଦାଏ ଫାଇଲ ଗଲଣି । ଆଉ ଗଦାଏ ଅଛି ।

ଆଉ ସେ ପାଖରେ ଗୋଲାପର ବଗିଚା । ରଙ୍ଗ ବେରଙ୍ଗର ଫୁଲ । ଆଉ ସେଇ ଫୁଲର ପାଖୁଡ଼ା ଭିତରେ ନିଜକୁ ଗୋଟାଏ ପ୍ରଜାପତି ପରି ସଜେଇ ଘରି ବୁଲୁଥିଲେ ଚନ୍ଦ୍ରିକା । ନିଜର ଉପସ୍ଥିତି ଦୃଢ଼ତର ସେ କରେଇବାକୁ ଚାହିଁ ମଧ୍ୟ ସେ ଯେତେବେଳେ ପ୍ରୀତିଚନ୍ଦ୍ରଙ୍କ ଧ୍ୟାନ ଭଂଗ କରେଇ ନ ପାରିଲେ, ସେତେବେଳେ ଅନୁଚ୍ଚ ସ୍ୱରରେ ପାଟିକରି ପଚାରିଲେ—ଚା' ପଠେଇବି କି ?

ପ୍ରୀତିଚନ୍ଦ୍ର କଥାର ମର୍ମ ବୁଝିଲେ । ଘରେ ଥିଲାବେଳେ ପ୍ରୀତିଚନ୍ଦ୍ର ଓ ଚନ୍ଦ୍ରିକା ଦୁହେଁ ବସି ଗୋଲାପର ନନ୍ଦନ କାନନ ଭିତରେ ହିଁ ସଂଧ୍ୟା-ବେଳେ ଚା ପାନ କରନ୍ତି ।

ଫାଇଲ୍ ଉପରୁ ପ୍ରୀତିଚନ୍ଦ୍ର କିନ୍ତୁ ମୁହଁ ଉଠେଇ ପାରିଲେନି । ଆଖି ଦୁଇଟାକୁ ସେମିତି ଲୁଚେଇ ରଖି ସେ ଉତ୍ତର ଦେଲେ—ଆଉ ମାତ୍ର ମିନିଟ୍ ପ୍ଲିଜ୍ !

ଚନ୍ଦ୍ରିକା ସେତେବେଳେ ଲନ୍ ଉପରେ ବସିପଡ଼ି ନୂଆ କରି ଗ୍ରେଫ୍ଟ କରାଯାଇଥିବା ଗୋଲାପ ଗଛର ଡାଳରେ କଢ଼ିଟିଏ କେମିତି ଆସ୍ତେ ଆସ୍ତେ ଫୁଟି ଆସୁଚି ତାକୁଇ ଡାହାଣ ହାତର ଦୁଇଟି ଅଙ୍ଗୁଳି ଭିତରେ ରଖି ମନେ ମନେ ମାପୁଥିଲେ ।

ସୂର୍ଯ୍ୟ ସେତେବେଳେ ଅଉ ଦେଖାଯାଉ ନଥିଲେ ମଧ୍ୟ ବୁଡ଼ି ଯାଇଥିଲେ ବୋଲି କୁହାଯାଇ ପାରିବନି । ତାର ଚିହ୍ନ ଦୂର ପାହାଡ଼ର ଅତ୍ୟୁଚ୍ଚ ଶିଖରରେ ଶେଷ ରଶ୍ମି ଲାଲ୍ ହୋଇ ନିଜର ଅସ୍ତିତ୍ୱ ଜାହିର କରୁଥିଲା ଦର୍ପ ଓ ଦମ୍ଭର ସହିତ ।

(୬)

ଅଫିସ କାମ ସେତିକରେ ବାକି ରଖି ପ୍ରୀତିଚନ୍ଦ୍ର ଉଠି ଆସିଲେ ଚନ୍ଦ୍ରିକାଙ୍କ ପାଖକୁ ।

ସେଇ ବଗିଚା ଭିତରେ ଚା ସ୍ନାକ୍ସ୍ ସବୁ ସୁନ୍ଦର ଭାବେ ସଜାହୋଇ ସଫେଦ୍ ଚାଦର ଢାଙ୍କି ଚନ୍ଦ୍ରିକା ଅପେକ୍ଷା କରିଥିଲେ ।

ପ୍ରୀତିଚନ୍ଦ୍ର ଓ ଚନ୍ଦ୍ରିକା ଠିଆ ହୋଇଥିଲେ ପାଖକୁ ଲାଗି ଲାଗି । କିନ୍ତୁ ଚନ୍ଦ୍ରିକାଙ୍କ ମୁହଁରେ ଏକ ଅଭାବନୀୟ ଭାବାବେଗ ।

ପ୍ରୀତିଚନ୍ଦ୍ର ବୁଝି ପାରିଲେ, କିନ୍ତୁ—

କିନ୍ତୁ ବାସ୍ତବ ଜୀବନର ରୁଟିନ କାର୍ଯ୍ୟକ୍ରମ ସରକାରଙ୍କ ରୁଟିନ ଭିତରେ ଆବଦ୍ଧ ହୋଇ ରହି ପାରେନା । ପାରିଲାନି ମଧ୍ୟ । ମୁକ୍ତ ହେବାକୁ ବାଧ୍ୟ । କିନ୍ତୁ ପ୍ରୀତିଚନ୍ଦ୍ରଙ୍କ କର୍ତ୍ତବ୍ୟ ବୋଧ ନିଜ ଭିତରେ ରହି ସେତେବେଳେ ଚିତ୍କାର କରୁଥିଲା । କହୁଥିଲା ମୋତେ ମୁକ୍ତ ଦିଅ । ମୁଁ ତମ ବ୍ୟକ୍ତିଗତ ଜୀବନ ଭିତରେ ବନ୍ଧା ପଡ଼ିବାକୁ ଚାହେଁନି । ମୁଁ ତମ ପାଇଁ ନୁହେଁ ମୁଁ ସମସ୍ତଙ୍କ ପାଇଁ ।

ପ୍ରୀତିଚନ୍ଦ୍ର ଶୀଘ୍ର ଶୀଘ୍ର ଚା ପିଇ ଚାଲି ଯିବାକୁ ଚାହୁଁଥିଲେ ।

ଚନ୍ଦ୍ରିକା ଅନ୍ୟମନସ୍କ ଭାବେ ଚା ପିଉଥିଲେ ଦୂର ପାହାଡ଼ର ସୌନ୍ଦର୍ଯ୍ୟ ଦେଖି ଦେଖି । ସେ ମଧ୍ୟ ପ୍ରୀତିଚନ୍ଦ୍ରଙ୍କ ମାନସିକ ସୀମା ସରହଦ୍ ଭିତରକୁ ଆସି ଗୋଟାଏ ସ୍ଥିର ପାଣିରେ ଢେଲାଟିଏ ପକାଇ ଢେଉ ସୃଷ୍ଟି କରିବାକୁ ଚାହୁଁ ନଥିଲେ, ଯଦିଓ ସେ ସେଇ ମୁହୂର୍ତ୍ତରେ ଏ ଅସ୍ୱାଭାବିକ ନିରବତାକୁ ସହ୍ୟ ମଧ୍ୟ କରି ପାରୁନଥିଲେ ।

ଚନ୍ଦ୍ରିକା ମୁହଁ ଉପରେ ପାଉଁଶିଆ ମେଘର ଗୋଟାଏ ଛିଟା । ପ୍ରୀତିଚନ୍ଦ୍ର ନିଜକୁ ଅପରାଧୀ ମନେ କଲେ । ନିଜର ସ୍ୱାର୍ଥପରତାକୁ ସେ ଧିକ୍କାର କଲେ, ନିଜର ଔଦ୍ଧତ୍ୟକୁ ସେ ଘୃଣା କଲେ ।

ଚନ୍ଦ୍ରିକାଙ୍କ ଆଖି ତଥାପି ଦୂର ପାହାଡ଼ର ମଥା ଉପରେ ଲାଗି ରହିଥିଲା, ଯଦିଓ ସେଠି ସେମିତି କିଛି ଦେଖିବାର ନଥିଲା ।

ଚା ଟା ବେଶ୍ ଭଲ ହୋଇଛି, ଖୁବ ଭଲ ଲାଗିଲା । ତଳକୁ ମୁହଁ ପୋତିଲେ କପ୍ ପ୍ଲେଟ୍ ଟା ଟେବୁଲ ଉପରେ ଥୋଇ ଦେଇ । କ୍ରିମ୍ ବିସ୍କୁଟ୍ ଖଣ୍ଡେ ଠିକ୍ ମଝିରୁ ଦୁଇ ଦାନ୍ତରେ ଠକ୍‌କରି କାଟି ଦେଇ ଏବଂ ନରମ ତଥା ଏକ ସରଳ ଆଖିରେ ଅନେଇଲେ ଚନ୍ଦ୍ରିକାଙ୍କ ଆଡ଼େ ।

ଧନ୍ୟବାଦ ।

ଚନ୍ଦ୍ରକାଙ୍କ ଆଖି ସେମିତ ଦୂର ପାହାଡ଼ର ମଥା ଉପରେ ବନ୍ଧା ହୋଇ ପଡ଼ିଥିଲା । କେବଳ ଆସ୍ତେ ଆସ୍ତେ ତଳକୁ ଖସି ଗଛର ପତ୍ର ଦେହରେ ପୁଣି ଅଟକି ଗଲା ।

ପରସ୍ଥିତିକୁ ହାଲକା କରିବାକୁ ଯାଇ ପ୍ରୀତଚନ୍ଦ୍ର କହିଲେ—ବିଶ୍ୱାସ କର—ଘ୍ନ ଟା ଖୁବ୍ ଭଲ ହୋଇଛି । ଅନ୍ତତଃ ଏଇ ପ୍ରକାର ଗାଢ଼ ମାନସିକ ପରିଶ୍ରମ ପରେ ଏମିତି କପେ ଘ୍ନ······ଅବଶ୍ୟ ପରିବେଶଟା ଘ୍ନ ଅପେକ୍ଷା ଆହୁରି ସୁନ୍ଦର !

"ସେଠିକି ଥାଉ । ତମେ କଅଣ କାଲି ପୁଣି ଟୂ୍ୟରରେ ଯିବ ?" ଚନ୍ଦ୍ରକାଙ୍କ କଣ୍ଠରେ ଥିଲା ଓଜନିଆ ସ୍ୱର । ଅଭିମାନର ମେଘ ଢ଼ାଙ୍କି ପକେଇଥିଲା ।

"ଯିବିବୋଲି ଭାବୁଛି ।"

କେମିତି କେଜାଣି ଟେନିସ୍ ବଲଟେ ଆସି ଘ୍ନ କପ୍‌ରେ ଠପ୍‌କିନି ପଡ଼ିଲା । କପ୍ ଓ ପ୍ଲେଟ ତଳେ ଖସିପଡ଼ି ଦୁଇଖଣ୍ଡ ହୋଇଗଲା ।

ଚମକି ପଡ଼ିଲେ ଚନ୍ଦ୍ରକା ଓ ପ୍ରୀତଚନ୍ଦ୍ର ।

"ସରି ପାପା !" ଗୋଲାପ ଗଛ ଉହାଡ଼ରୁ ସିଦ୍ଧାର୍ଥ ଆସି ଦୁଇଜଣଙ୍କ ମଝିରେ ଛିଡ଼ା ହୋଇଗଲା ଠିକ୍ ଗୋଟାଏ ପୋଲିସ ହାତର କଏଦୀପରି ।

ସିଦ୍ଧାର୍ଥ ପ୍ରୀତଚନ୍ଦ୍ରଙ୍କ ଏକ ମାତ୍ର ପୁତ୍ର । ସାତରୁ ଆଠ ପଢ଼ିଛି । ଭାରତର ଅନ୍ୟତମ ସର୍ବାଧୁନିକ ଇଂଲିଶ ମିଡ଼ିୟମ ସ୍କୁଲରେ ପଢେ । କଲୋନି ସହର ପାଖରୁ ଅଳ୍ପ ଦୂରରେ । ସ୍କୁଲର ଗୋଟିଏ ଉଜ୍ଜ୍ୱଳ ତାରକା ବୋଲି ତାକୁ ଶିକ୍ଷକମାନେ କହନ୍ତି । ଅସାଧାରଣ ପ୍ରତିଭା । ଅପୂର୍ବ ଧୀ ଶକ୍ତି ।

ନରମି ଆସିଲା ସେମାନଙ୍କ ବିରକ୍ତିର ମୁହଁ ।

ସିଦ୍ଧାର୍ଥ ହାତରୁ ଟେନିସ ବଲଟି ନେଇ ପ୍ରୀତଚନ୍ଦ୍ର କହିଲେ—"ପରୀକ୍ଷା ଆଉ କେତେଦିନ ? ମନଦେଇ ପଢ଼ାପଢ଼ି ଚାଲିଛି ?''

"ସବୁ ଠିକ୍ ଚାଲିଛି ପାପା । କିନ୍ତୁ ମୋର ଅସମ୍ଭବ ରାଗ ରସିଦ୍ ଖାଁ ଉପରେ ।"

ରସିଦ ଖାଁ ? ତମର କିଏ ନୂଆ ଟିଚର ଆସିଚନ୍ତି କି ତମ ସ୍କୁଲକୁ ! କାହିଁ ମୁଁ ତ ଏଯାଏ ଜାଣିନି । କେବେ ଆସିଲେ, କଅଣ ପଢ଼ାନ୍ତି ?"

ଧେତ୍, ମୁଁ କଅଣ ସ୍କୁଲ ଟିଚରଙ୍କ କଥା କହୁଛି । ଇତିହାସର ରସିଦ୍ ଖାଁ ଜଣେ ବଡ଼ ବୀର ଥିଲେ । ତାଙ୍କରି ଗପ ଆଜି ଆମକୁ ସାର କହୁଥିଲେ ।

"ଇତିହାସର ରସିଦ୍ ଖାଁ ?"

ପ୍ରୀତିଚନ୍ଦ୍ର ଇତିହାସର ଛାତ୍ର । ବିଶ୍ୱବିଦ୍ୟାଳୟର କୃତୀଛାତ୍ର, ସ୍ୱର୍ଣ୍ଣପଦକ ଧାରୀ । ଗବେଷଣା କରିବାକୁ ଉପାଧି ମଧ୍ୟ ପାଇଛନ୍ତି, କିନ୍ତୁ ଇତିହାସର ବୀର ରସିଦ୍ ଖାଁ ହଠାତ୍ ତାଙ୍କର ମନେ ପଡ଼ିଲେନି ।

"ତୁମେ କାହା କଥା କହୁଛ ସିଦ୍ଧାର୍ଥ । କୋଉ ରସିଦ ଖାଁ ମୋର ତ ମନେ ପଡ଼ୁନି ।"

"ତୁମେ କଅଣ ଏବେ ଆଉ କଲେଜର ଅଧ୍ୟାପକ ହେବ ଯେ ସେ କଥା ତମର ମନେ ପଡ଼ିବ ? ଅଧ୍ୟାପକ ହେଇଥିଲେତ ମୋ ବାପା ତମ ପାଖ ମାଡ଼ି ନଥାନ୍ତେ" —ରହସ୍ୟ କରିବାକୁ ଚନ୍ଦ୍ରିକା କହିଲେ ।

"ମାନେ ? ମୋ ରସିଦ୍ ଖାଁ ପଢ଼ିବା ସାଥି ତମ ବାପା ଅର୍ଥାତ୍ ମୋ ଶଶୁରଙ୍କ କଅଣ ସମ୍ପର୍କ ମୁଁ ବୁଝି ପାରୁନି ।"

ଚନ୍ଦ୍ରିକା ନିଜକୁ ଅପରାଧିନୀ ମନେ କଲେ । ସେ କହିଲେ—"ତମ ରସିଦ୍ ଖାଁକୁ ମୁଁ ମଧ୍ୟ ଜାଣିନି । ମୁଁ ରାଜନୀତି ବିଜ୍ଞାନର ଛାତ୍ରୀ । ସେ କଥା ତମ ବାପା କହିବେ । ତମେ ତାଙ୍କୁ ପଚାର । ତେବେ ମୋର କହିବାର କଥାଥିଲା ଯେ ତମ ବାପା ଯଦି କଲେଜରେ ଅଧ୍ୟାପକ ଥିଲେ ।"

"ଆରେ ସତେ ନା କଅଣ ! ଏବେ ଥିଲେତ ଆହୁରି ଭଲ ହେଇଥାଆନ୍ତା । ମୁଁ ତାଙ୍କୁ ପ୍ରଶ୍ନ ପଚାରି ହଇରାଣ କରିଦିଅନ୍ତି ।"—ସିଦ୍ଧାର୍ଥ କହିଲା ଆନନ୍ଦାତିଶଯ୍ୟରେ ।

"ଆଃ, ଏବେଣି ପଚରନା ; ମୁଁ କଅଣ ଉତ୍ତର ଦେବାକୁ ମନା କରୁଛି ?"—ସିଦ୍ଧାର୍ଥ ପିଠିରେ ହାତ ବୁଲାଇ ବୁଲାଇ ପ୍ରୀତିଚନ୍ଦ୍ର କହିଲେ ।

"ତେବେ କୁହ । ତମର ରସିଦ ଖାଁ ଲୋକଟା ଏମିତି କାହିଁକି ?"

"ଆରେ କୋଉ ରସିଦ୍ ଖାଁ ? ମୋତେ ତାର ଟିକିଏ ରେଫେରେନ୍ସ ଦିଅ ।"

"ରସିଦ ଖାଁକୁ ତମେ ଜାଣିନ ? ଏଇଠି ସେ ଥିଲେ କଟକର ନବାବ ଯେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରଥମେ ପ୍ରଥମେ ଆସି ଓଡ଼ିଶାରେ ବାଣିଜ୍ୟ କରିବାକୁ ଆରମ୍ଭ କରିଥିଲେ । ଆଜି ଆମକୁ ସାର ପଢ଼ାଉଥିଲେ । ସେ କୁଆଡେ ଜବରଦସ୍ତ ଲୋକଙ୍କଠୁ କର ଅଦାୟ କରିବାରେ ଧୂରନ୍ଧର ଥିଲେ ।"

ପ୍ରୀତିଚନ୍ଦ୍ରଙ୍କର ମନେ ପଡ଼ିଲା, ଅନେକ ଦିନ ତଳର କଥା । ସେତେବେଳେ ରସିଦ ଖାଁ ଆସିଥିଲେ ଓଡ଼ିଶାକୁ ନବାବ୍ ହେଇ । ସଚିଓ ଥିଲେ

ସେ ବୀର ତଥା ଦୁଃସାହସୀ, କିନ୍ତୁ ରେ ଅତ୍ୟନ୍ତ ଧନଲୋଲୁପ ଦୁର୍ନୀତି ପରାୟଣ । ସେ ଏତେ ଦୁର୍ନୀତିଗ୍ରସ୍ତ ଥିଲେ ଯେ ଯେତେବେଳେ ଯାହାଠୁ ଭେଟି ବା ଉପଢୌକନ ନେଉଥିଲେ ସେତେବେଳେ ତିନୋଟି ଉପଢୌକନ ସେ ଆଦାୟ କରୁଥିଲେ—ଗୋଟିଏ ନିଜ ପାଇଁ, ଅନ୍ୟଟି କଲିକତା ନବାବଙ୍କ ପାଇଁ ଏବଂ ଆଉ ଗୋଟିଏ ଦିଲ୍ଲୀର ବାଦଶାହାଙ୍କ ପାଇଁ । କିନ୍ତୁ ପ୍ରକୃତରେ ସବୁ ଗୁଡ଼ିକ ସେ ନିଜେ ରଖି ପକାଉଥିଲେ ।

ଇତିହାସର କୃତଘ୍ନ ପ୍ରୀତିଚନ୍ଦ୍ର, ସେଦିନ ଇତିହାସର ଗୋଟାଏ ପୃଷ୍ଠା ଉପରେ ପଦଚାରଣ କରିବାକୁ ଲାଗିଲେ ।

କଟକର ନବାବ ରସିଦ ଖାଁ ଆସୁଥିଲେ ରାସ୍ତାରେ ସୈନ୍ୟସାମନ୍ତଙ୍କ ସହ ଅନ୍ୟପଟରୁ ବାଲେଶ୍ୱରର ପ୍ରଖ୍ୟାତ ନୌବାଣିଜ୍ୟ ବ୍ୟବସାୟୀ କ୍ଷେମଚନ୍ଦ୍ର ସାହା ନିଜର ବନ୍ଧୁବର୍ଗ ସହ ବଡ଼ଠାଟ ଶୋଭାଯାତ୍ରାରେ ଯାଉଥିଲେ ନିଜ ଝିଅର ବିବାହ ପାଇଁ ଗୋଟିଏ ପାତ୍ର ଦେଖିବାକୁ । କେବଳ ହାତୀ ଓ ଘୋଡ଼ାର ଶୋଭାଯାତ୍ରା । ଅଧିକାଂଶ ଘୋଡ଼ା ଆରବୀୟ । କେବଳ ରାଜା ମହାରାଜାମାନେ ହିଁ ସେତେବେଳେ ଆରବୀୟ ଘୋଡ଼ା ବ୍ୟବହାର କରି ପାରୁଥିଲେ । ସାହାଙ୍କ ମୁଣ୍ଡରେ ଥିଲା ସେଦିନ ଗୋଟାଏ ହୀରା ଖଚିତ ପଗଡ଼ି । ତାହା ହିଁ ଥିଲା ସେ ସମୟର ଆଭିଜାତ୍ୟ ।

ବୁଢ଼ାବଳଙ୍ଗ ନଦୀ କୂଳରେ ନବାବ ରସିଦ ଖାଁ ଦେଖିଲେ ସାହାଙ୍କର ଶୋଭାଯାତ୍ରାକୁ । ଏତେ ବଡ଼ ଶୋଭାଯାତ୍ରା ? କାହାର ଏ ଦୁଃସାହସ ? ନବାବଙ୍କ ରାଜ୍ୟରେ ନବାବଙ୍କ ଅଜ୍ଞାତସାରରେ ଏତେବଡ଼ ଶୋଭାଯାତ୍ରାର ଅଧିକାରୀ କିଏ ? ନବାବଙ୍କ ମନରେ ଅସଂଖ୍ୟ ପ୍ରଶ୍ନବାଚୀ । ସେନାପତିଙ୍କୁ ଅଦେଶ ଦେଲେ ଶୋଭାଯାତ୍ରାର ଅଧିକାରୀଙ୍କୁ ଡ଼ାକି ଆଣିବାକୁ ।

କ୍ଷେମଚନ୍ଦ୍ର ନବାବ ଡ଼ାକରା ଶୁଣି ଚମକି ପଡ଼ିଲେ ।

କିନ୍ତୁ ସେ ଚାଲାକ ଲୋକ । ବ୍ୟବସାୟୀ ବୁଦ୍ଧି । ତୁରନ୍ତ ନିଜ ମୁଣ୍ଡରୁ ପଗଡ଼ି ଖୋଲି ଦେଇ ଗୋଟାଏ ବୁଦା ମୂଳରେ ଲୁଚେଇ ଦେଇ ସିଲକ କନାର ପଗଡ଼ି ବାନ୍ଧି ନବାବଙ୍କୁ ଯାଇ ସଲାମ କଲେ ।

ନବାବ ସଙ୍ଗେ ସଙ୍ଗେ କହିଲେ—"ସଲାମ୍ କଲେ ସଲାମୀ ଦେବାକୁ ହୁଏ ଏକଥା ଜାଣିଛନ୍ତ ?"

ଥର ଥର କ୍ଷେମଚନ୍ଦ୍ର କହିଲେ—"କେତେ ହଜୁର?"

"ଏକ ଲକ୍ଷ ମୁଦ୍ରା ।

"ଏକ ଲକ୍ଷ ?" କ୍ଷେମଚନ୍ଦ୍ରଙ୍କ କପାଳରେ ଆଖି ଖୋସି କହିଲେ ।

"ଛାଠ୍ କମ୍ କଅଣ ନବାବ ଗ୍ରହଣ କରନ୍ତି ?" ତାଙ୍କ ଆଖିରେ କ୍ରୂର ହସର ଇସାରା ।

"ମୋତେ କ୍ଷମା କରନ୍ତୁ ହଜୁର । ମୁଁ ଏତେ ଟଙ୍କା ଦେଇ ପାରିବିନି । ମୋ କଥା ଆପଣ ଜାଣନ୍ତି । ଏଇମାତ୍ର କେଇ ଦିନ ତଳେ ମୋର ପନ୍ଦର ଲକ୍ଷ ଟଙ୍କାର ସମ୍ପତ୍ତି ଶେଷ ହୋଇ ଯାଇଛି । ମୋର ଝିଅ ବାହାଘର ପାଇଁ ରଖିଥିଲି ।"

ନବାବ ହସିଲେ, "ଗୋଟିଏ ଝିଅ ପାଇଁ ଯଦି ପନ୍ଦର ଲକ୍ଷ ଖର୍ଚ୍ଚ କରି ପାରୁଛ ତେବେ ତମର ତିନୋଟି ଝିଅ ଅଛନ୍ତି, ତମର କ୍ଷମତା ମୋତେ ଅଜଣା କି ?"

କ୍ଷେମଚନ୍ଦ୍ର ପ୍ରମାଦ ଗଣିଲେ, କିନ୍ତୁ ଉପାୟ ନାହିଁ । ଅନେକ କଷ୍ଟରେ ପଚିଶ ହଜାର ଦେଇ ସେ ସେଠୁ ମୁକ୍ତି ପାଇଲେ ।

"ଓଃ ତୁମେ ସେଇ ରଶିଦ ଖାଁ କଥା କହୁଚ ?" ପ୍ରୀତିଚନ୍ଦ୍ର ହସି ହସି କହିଲେ ।

"ହଁ ବାପା । କିନ୍ତୁ ଆମର ସେ ସବୁ କଦର୍ଯ୍ୟ ପ୍ରକୃତିର ଲୋକମାନଙ୍କ କଥା ଜାଣିବାର ଆବଶ୍ୟକତା କଅଣ ମୁଁ ଜାଣି ପାରୁନି । ଏମାନଙ୍କ କଥା ନ ଜାଣିଲେ ଆମର କଅଣ ହୁଅନ୍ତା ?"

ଏକଦା ଇତିହାସର ଅଧ୍ୟାପକ ପୁଅର ଏ ପ୍ରଶ୍ନରେ ମର୍ମାହତ ହେଲେ । ଜୀବନରେ ଜଣେ ଆଉ କିଛୁ ଜାଣୁ ବା ନ ଜାଣୁ ଇତିହାସ ଜାଣିବା ଯେ ଏକାନ୍ତ ଆବଶ୍ୟକ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ପୁଅକୁ ଇତିହାସର ଗୁରୁତ୍ୱ ବିଷୟ ବୁଝାଇବାକୁ ଯାଇ ସେ କହିଲେ ଇତିହାସ ଜାଣିବା ଜଣେ ଲୋକ ପକ୍ଷେ ଏକାନ୍ତ ଆବଶ୍ୟକ । ଅତୀତକୁ ନ ଜାଣିଲେ ବର୍ତ୍ତମାନକୁ ନ ଚିହ୍ନିଲେ ଭବିଷ୍ୟର ଚିତ୍ର ଆମେ ଆଙ୍କି ପାରିବା ସମ୍ଭବ ହେବନାହିଁ ।

ଇତିହାସର ଆବଶ୍ୟକତା ଉପରେ ବକ୍ତୃତା ଦେଉଥିଲେ ବେଳେ ଚନ୍ଦ୍ରିକା ଦେଖୁଥିଲେ ପ୍ରୀତିଚନ୍ଦ୍ରଙ୍କ ମୁଖ ମଣ୍ଡଳରେ ଏକ ନୂତନ ଆଭା । ନୂତନ ଦୀପ୍ତି ଉକୁଟି ଉଠୁଚି, ଠିକ୍ ଯେମିତି କ୍ଲାସରେ ପାଠ ପଢଉ ଥିଲାବେଳେ ଜଣେ ସଫଳ ଅଧ୍ୟାପକର ମୁହଁ ଉଦ୍ଭାସି ଉଠେ । ସିଦ୍ଧାର୍ଥ ପରି ସେ ନିଜେ ମଧ୍ୟ ପ୍ରୀତିଚନ୍ଦ୍ରଙ୍କ ମୁହଁକୁ ଅନେଇ ଥିଲେ ଗୋଟିଏ କ୍ଲାସରେ ଲେକ୍‌ଚର ଶୁଣୁଥିବା ଛାତ୍ରୀପରି ।

"ମାଆ !"

"ଆରେ ବୈରାଗୀ ଯେ," ଚନ୍ଦ୍ରନା ମୁହଁ ବୁଲେଇଲେ। ଗେଟ୍ ଖୋଲି ପଶି ଆସୁଛ ବୈରାଗୀ। ଶ୍ରୀଢଚନ୍ଦ୍ରଙ୍କ ଅଫିସ ପିଅନ୍। ସାହେବଙ୍କ ବଙ୍ଗଳାରେ ସବୁକାମ କରେ।

"କରେ ରୁ କେବେ ଆସିଲୁ? ଏତେ ଶୀଘ୍ର ତୋର ଛୁଟି କଅଣ ସରି-ଗଲା। ତୋର ସବୁ ଆଉ ଖବର କଅଣ?"

ସାଷ୍ଟାଙ୍ଗ ପ୍ରଣିପାତ କଲା ବୈରାଗୀ। ଉଭୟ ଶ୍ରୀଢଚନ୍ଦ୍ରଙ୍କୁ ଏବଂ ଚନ୍ଦ୍ରନାଙ୍କୁ। ଏବଂ ତାପରେ ବେଗରେ ଥିବା ଗୋଟିଏ ପ୍ଲେଟ ବଣ୍ଡଲ ବାହାର କରି ଚନ୍ଦ୍ରନାଙ୍କ ହାତକୁ ବଢ଼େଇ ଦେଲା।

"ଏଇଟା କଅଣ?"

"ଝସର ଗୁଦର ମା। ଆମର ସେ ଆଡ଼େ ଘରେ ଘରେ ବୁଣାଯାଏ। ଛୁଟିରେ ଗଲାବେଳେ ସାହେବ କହିଥିଲେ, ତେଣୁ ନେଇ ଆସିଥିଲି। ଏଥିରେ ଦୁ ଖଣ୍ଡ ଅଛି। ଖଣ୍ଡେ ଆପଣଙ୍କର ଆଉ ଖଣ୍ଡେ ସାହେବଙ୍କର।"

ଚମକି ପଡ଼ିଲେ ଶ୍ରୀଢଚନ୍ଦ୍ର। ସିଦ୍ଧାର୍ଥ ଆଖିରେ ତାଙ୍କ ଆଖି ମିଶିଗଲା। ସେ ଆଉ ସ୍ଥିର ପାରିଲେନି। ସେ ଡଳକୁ ମୁହଁ କଲେ।

ଏବଂ ତାପରେ କଥା ବୁଲେଇ କହିଲେ, "ତମେ କଅଣ ଏବେ ଖେଳିବାକୁ ଯାଉଚନା କଅଣ?"

ସିଦ୍ଧାର୍ଥ ଚାଲିଗଲା। ସେ ଚାଲିଗଲା ତାର ଟେନିସ ବଲଟି ବାପାଙ୍କ ହାତରୁ ଏକ ପ୍ରକାର ଛଡ଼େଇ ନେଇ।

ଅନ୍ୟ ପାଖରେ ପାହାଡ଼ ତଳକୁ ଆକାଶର ଅଂଧକାର ଧୀରେ ଧୀରେ ନଇଁ ଆସୁଥିଲା। ଚନ୍ଦ୍ରନା ଓ ଶ୍ରୀଢଚନ୍ଦ୍ର ଦୁହେଁ ଦୁହିଁକୁ ଚାହିଁ ରହିଥିଲେ ମଧ୍ୟ କେହି କାହାକୁ ଦେଖିପାରୁ ନଥିଲେ।

□ କ୍ୱାର୍ଟର ଓ୍ବି.ସି. - ୮,
ପୋଷ୍ଟ - ନାଲକୋନଗର
ଜିଲ୍ଲା - ଢେଙ୍କାନାଳ - ୭୫୯୧୪୫

## ।। ହିନ୍ଦୀ କାହାଣୀ : କାମାତଲ୍ସି ।।

**ଯେଉଁଠାରେ ସକଳ ନିଦ୍ରାଭିଭୂତ ସେଠାରେ ସଂଯମୀ ଜାଗ୍ରତ ରହିଥାଏ । ପୃଥିବୀ ଯାହାକୁ ଖୋଜେନା, ଯେଉଁମାନଙ୍କର କେହି କେବେ ଖବର ରଖନ୍ତି ନାହିଁ; ତାଂକର ପାଖରେ ବେଳେବେଳେ ପହଂଚ ଯାଆନ୍ତି ସଫଳ କଥାକାର । ଯେଉଁ ଚରିତ୍ରମାନଙ୍କ ସହିତ ସମାଜ ଭିତରେ ଗୋଟାଏ ପ୍ରକାର ଅନତିକ୍ରମଣୀୟ ଦୂରତା ସୃଷ୍ଟି ହୋଇ ଗଲାଣି ତାଂକର ପାଖରେ ପ୍ରଖ୍ୟାତ କଥାକାର ଶ୍ରୀ କମଲେଶ୍ୱର······**

---

ଆମ ଜାଗର ଲୋକ ଆଉ ଯେ ନଥିବେ ଏକଥା କେହି ଯେପରି ନ ଭାବନ୍ତୁ । କଣ୍ଟ୍ରିସାର୍ ଏବେ ବି ସେମାନେ ଭରିରହିଛନ୍ତି । ବାପୁ କୋକେନ୍ ନିଶାରେ ଖେଳ ହେଲବେଳେ କହୁଥିଲ······ କନ୍ତୁ ଗ୍ରାଉଣ୍ଡ, ପଢ଼ିଲେ ମୋ ବାପୁର ପରିଚୟ ସାରିଦିଏ । ବାପୁ ଖବରକାଗଜ ଅଫିସରେ ଫୋଲଡର କାମରେ ବହାଲ ଥିଲ । ପ୍ରଥମେ ଜଏନ୍ କରିଥିଲ ଜମାଦାର ପୋଷ୍ଟରେ । ପରେ ପ୍ରମୋଶନ ପାଇ ଫୋଲଡ଼ର ବନିଯାଇଥିଲ । ପ୍ରମୋଶନ ପାଇବା ଦିନ ଆମ ଝୁପୁଡ଼ିରେ ଖେଳ ଖତ କରିହୋଇଥିଲ । ନିଶାପାଣି ପରେ ସେଦିନ ବାପୁ କହୁଥିଲ– "ମୋ ବେଟାକୁ ଅଧ ଦ୍ରାବିଡ ବନେଇବ । ମାଡ୍ରାସ ଯିବ, ପଢ଼ା ଲେଖା ଶିଖି ନେଇ ଫେରିବ । ତାପରେ ଏ ଶଳା ବ୍ରାହ୍ମଣଙ୍କୁ ଦେଖିନେବ······।"

ବାପୁ ଏପରି ଆଂଗ୍ରି ହେବାର କାରଣ ରହିଛି । ସେନଟାସ୍ କାମଗାର ମୋର୍ଚ୍ଚାର ସେ ସଂଯୋଜକ ଥିଲ । ସମସ୍ତେ ତାକୁ ନେତା ବୋଲି ଡ଼ାକୁଥିଲେ ।

ପ୍ରମୋଶନ ପାର୍ଟିରେ ମୋରୁ ବି ଆସି ଯୋଗ ଦେଇଥିଲ । ମୋରୁ··· ସେ ଆମ ଜାଗର ଜଣେ ମେମ୍ବର । ମୋର ଫୋର ଇସ୍କୁର ବେଳେ ମଦର ବାପୁକୁ ଗ୍ରାଉଣ୍ଡ ଦେଇଥିଲ । ସି ଲିଭଡ଼ ମାଁଙ୍କ ବାପୁ ଏଣ୍ଡ ମୋରୁ ସାଙ୍ଗରେ ପଲାଇଗଲ । ମଦର ବହୁତ ଖ୍ୟାଲଖ ଥିଲ ବି । ମୋରୁକୁ ମୌଶିସ୍ ବନାଇ

କାଶ୍ମୀର ଗେଟ୍ ପାଖ ଗୋଟିଏ ହୋଟେଲର ବେହେରା କାମରେ ତାକୁ ଏନ୍‌ଗେଜ୍ କରିଦେଲି । ସେହି ଦିନଠାରୁ ମୋଟୁ ତେଲ ଜୁତୁ ବୁତୁ ଟେଷ୍ଟ ରଖିଆସିଛୁ । ମଦରକୁ ସେଥିପାଇଁ ବହୁତ ରେସପେକ୍ଟ କରେ ।

ପାର୍ଟି ଓ ସ୍ତ୍ରୀ ମାନଙ୍କ ବିଷୟରେ କିଛି କହିହୁଏ ନାହିଁ । କିନ୍ତୁ ବାପୁ ପାଇଁ ମଦର 'ସାଲନ' ପଠାଇ ଦେଇଥିଲା । ବାପୁର ଲାଇକିଙ୍ଗ ଓ ଟେଷ୍ଟ ବିଷୟରେ ତାକୁ ସବୁ ଜଣାଥିଲା ବୋଲି ନିଜ ହାତରେ ତିଆରି କରି ପଠାଇ-ଥିଲା । ସେତକ ଖାଇବାପରେ ବାପୁ ବି ବିୟୋଗ ଦୁଃଖ ଭୁଲିଯାଇ ଚାରୁପଠ ବନିଯାଇଥିଲା ।

ବାପୁର ଟ୍ରପ ଟାଇମ୍ ବିଷୟରେ ଟିକେ କହିଦିଏ । ଖବରକାଗଜ ଅଫିସକୁ ଅଟୋମେଟିକ୍ ମେସିନ୍ ଆସିଲା । ମେସିନ୍‌ରେ କାମ ଚାଲୁହେବା ସଙ୍ଗେ ସଙ୍ଗେ ବାପୁ ବେକାର ହୋଇଗଲା । ତା ସାଥିରେ ଆହୁରି କୋଡ଼ିଏ ବାଇଶି ଲୋକ ବି ବେକାର ହେଲେ । ଏଇ ଦୁଃଖ ବେଳେ ମଦର ମୋଟୁକୁ ସାଥିରେ ନେଇ ବାପୁକୁ ବୁଝାଇବାକୁ ଆସିଥିଲା । ଲେଡ଼ି ଟିଚରମାନଙ୍କ ଭଳି ସେ ବାପୁକୁ ବୁଝେଇଲା—ଚିନ୍ତାକର ନାହିଁ । ମେସିନ୍ ସକାଶେ କିଛି ଦିନ ଦୁଃଖ ପାଇବ, ହେଲେ ଦେଖିବ ଆମ ଜାତିଭାଇ ଉଦ୍ଧାର ପାଇଯିବେ । ଉଚ୍ଚଜାତି ବାଲା ଏଯାଏ ଆମକୁ ଉଦ୍ଧାର କରି ପାରିଲେ ନାହିଁ, କିନ୍ତୁ ମେସିନ୍ କରିଦେବ । ଦଶ ବରଷ ଆଗେ ଫ୍ଲସ ଲଟ୍ରିନ୍ କଥା ଶୁଣିଥିଲ ? ଦେଖୁନା ଜଂଜର ବାଲା ମେସିନ୍ ଆସିଲାରୁ ଆମ ଜାତିଭାଇ ଉଦ୍ଧାର ପାଇଲେକି ନାହିଁ ? ଏବେ କିଛିଦିନ ଅନ୍ୟ କାମ ଧନ୍ଦା କରୁଥାଅ । ମେସିନ୍‌ର କାମ ବଳେଇ ଗଲେ ଅନ୍ୟ କିଛି କାମ ମିଳିଯିବ ।

କହୁଛି ଯେ ମୋ ମଦର ଲେଡ଼ିଟିଚର ମାନଙ୍କ ଭଳି । ଏଭଳି ଟିଚର ସାମାନ୍ୟ ଫୋଲଡ଼ରର ସ୍ତ୍ରୀ ହୋଇ କେମିତି ରହିଥାନ୍ତା ? ସେ ତେଣୁ ମୋଟୁର ଓ୍ୱାଇଫ ବନିଗଲା ।

ବାପୁ ବେକାର ହେଲା । ମୋର ବି ଆଦି-ଦ୍ରାବିଡ଼ ବନିବା ପ୍ରସଙ୍ଗ ଖତମ ହୋଇଗଲା । ନହେଲେ ସେଭେନ୍‌ଥ ତକ ପଢ଼ି ଯାଇଥିଲେ ମାଡ୍ରାସ ଯାଇ ସ୍ୱକସ ବାକସ କରି ଆଦି ଦ୍ରାବିଡ଼ ବନିଯାଇଥାନ୍ତି ଏବଂ ସୁବିଧା ଦେଖି ପଢ଼ାଲେଖା ଝିଅ ଧରି ଫେରିଥାନ୍ତି ।

ଗୁଡ୍····· ସେ କଥା ତ ହେବାର ନଥିଲା ।

ବାପୁ ଓ ଅନ୍ୟ ବାଇଶି ଜଣ ଯାକ ମିଶି ଲେବର ଛଟେଇ କାହିଁକି ହେବ ବୋଲି ଅଫିସବାଲାଙ୍କ ବିରୁଦ୍ଧରେ ଲଢୁଥାନ୍ତି । ଅଫିସରୁ ଦରମା ମିଳି ଯାଉଥାଏ, ହେଲେ କାମ ଦିଆ ହେଉନଥାଏ । ଏଇ ମଝିକାରେ ସବୁତକ

ଲେବର ଯାଇ ପଲ୍ଟ ପାଖ ସଡ଼କ ଉପରେ ଗୋଲ ହୋଇ ବସିଯାନ୍ତି । ଖବର-କାଗଜ ବିଛେଇ ଦେଇ ତାସ ପଣା ଗାଂବଲିଙ୍ଗ ଖେଳନ୍ତିଲେ । ଖେଳୁ ଖେଳୁ ଅକଗଲେ ସେପଟ ଓ୍ୱାର୍କସପ ପାଖ ଜାମୁଗଛ ତଳେ ନହେଲେ ଏପଟ ଶଙ୍କର ଭଗବାନଙ୍କ ଚଉତରା ଉପରେ ବସି କୋକେନ୍ ଖାଆନ୍ତି । ଶଂକର ଆମ ଆଦି-ଦ୍ରାବିଡ଼ ଗୋଷ୍ଠୀ ପାର୍ବତୀଙ୍କର ହଜବ୍ୟାଣ୍ଡ ।

ବାପୁ ବି ଆସି ସାମିଲ ହୁଏ । କୋକେନ ଖାଇ ଖାଇ 'ଆରେହେ ଥା' ବୋଲି ଡାକ ପକାଏ । କୋକେନ ନିଶା ଛସିଲା ବେଳକୁ ବାପୁ ସମସ୍ତଙ୍କ ପାଖରୁ ପଇସା ଏକାଠି କରି ପୁଲିସ ଅଫିସ ପାଖ ଦୋକାନକୁ ପାନ କିଣିବା ପାଇଁ ପଠାଏ । ସେପଟର ଦୋକାନ ଶୁଢ଼ସାଏ ଖୋଲା ରହୁଥାଏ ।

ଏଠି କହିଦେଇ ଥାଏ ଯେ ପାନବାଲୀ ଗାର୍ଲ ଯମୁନା ସହିତ ମୋର ପ୍ରଥମ ଭେଟାଭେଟି ସେଇଠି, ମାନେ ପାନ ଦୋକାନରେ ହିଁ ହୋଇଥିଲା । ତାର ବାପା କେକେନ ଆଣିବା ପାଇଁ ଦୋକନରୁ ବାହାରି ଯିବାପରେ ଯମୁନା ସାଂଗରେ ମୋର ମିଟିଂ ଖୁବ୍ ଜମିଗଲା । ସେ ମତେ ଅନାଉଥାଏ । ମୁଁ ବି ତାକୁ ଅନାଉଥାଏ । ମୁଁ ଯେତେବେଳେ ବିଡ଼ି ମାଗିଲି ସେ ଗାଳିଦେଇ କହିଲା—"ବିଡ଼ି ପିନା ।"

"କାହିଁକି ?"

"ତୋ ମୁହଁରୁ ଗନ୍ଧ ବାହାରୁଚି ।"

"ତତେ ଜାମୁକୋଳି ଭଲ ଲାଗେ ?"

"କାହିଁକି ? ଭଲଲାଗେ ଯେ ତୋର ସେଥିରେ କଣ ଅଛି ?"

"ମୋର କିଛି ନାହିଁତ ବିଡ଼ି ପିଇବାକୁ ମନାକଲୁ କାହିଁକି ?"

ଯମୁନାର ଆଖି ବିଜୁଳି ଭଳି ଚମକି ଉଠିଲା । ତାର ଓଠ ବି କାହିଁକି ଲାଲ ହୋଇଗଲା । ସେ ଜଲଦି ଜଲଦି ପାନ ଡାଲାରେ ପାଣି ଛିଞ୍ଚିବାରେ ଲାଗିଗଲା । ତାର ବାପୁ ଆସିଗଲାରୁ ଆମର ମିଟିଂ ବି ଖତମ ହୋଇଗଲା ।

ଏହାପରେ ଯମୁନା ସହିତ ବହୁଥର ମାନେ ମେନି ଟାଇମସ୍ ଆଟ୍ ରାଜଘାଟ......ବିଜୟ ଘାଟ.....ଶାନ୍ତିବନ ଇତ୍ୟାଦି ଯାଗାରେ ସାକ୍ଷାତ ହେବାକୁ ଲାଗିଲା । ପ୍ରତି ଘାଟରେ ମୁଁ ତାକୁ ଶପଥ କରାଇନେଲି । ଗାନ୍ଧୀଜୀ, ନେହରୁଜୀ, ଶାସ୍ତ୍ରୀଜୀ ଇତ୍ୟାଦିଙ୍କ ନାମରେ ସେ ରାଣ ପକାଇଲା, କିନ୍ତୁ ମୁଁ ପ୍ରମିଶ୍ କଲିନାହିଁ । ଯମୁନା ଯେ ଲାଇଫ ଲଙ୍ଗ ମୋ ସାଥିରେ ରହିପାରେ ସେଥିରେ ମୋର ଡାଉଟ୍ ଥିଲା । ତେବେ ମୁଁ ତାକୁ କହିଲି—"ଦେଖ୍ ଯମୁନା, ଦିଲ୍ଲୀ ସହରର ଲାବାରିଶ ଲାଶ ଉଠେଇବା କାମ ହେଲା ମୋର । ଯାହାଙ୍କର କେହିନାହିଁ, ମୁଁ ସେମାନଙ୍କୁ ମଶାଣିଘାଟ ପର୍ଯ୍ୟନ୍ତ ପହଞ୍ଚାଇ ଦିଏ...... ।"

ଆଉ କିଛି କହିବା ଆଗରୁ ଯମୁନା ପଚାରିଲା—"ମୁଁ ନିବାରଣ ହୋଇ ଗଲେ ତୁ ମୋର ଲଣ ଉଠାଇବୁ ?"

ମୁଁ ବୁଝିଗଲି ଯମୁନା ପ୍ରମିଶ୍ ରଖିବ ନାହିଁ ।

ନିବାରଣ ଲଣ ଉଠେଇବା କାମରେ ମତେ ଦିନକୁ ଘଣ୍ଟାଏ ମିଳି ଯାଉଥାଏ । ଦିନକୁ ଦୁଇ ଘଣ୍ଟାଲଣ ବି ଜୁଟିଯାଏ । ଇନକମ୍ କିଛି କମ ନଥିଲା । ବାପୁତ ହଜାର ଟଙ୍କା ପାଉଥାଏ । ମୁଁ ବି ଦୁଇ ଅଢେଇ ହଜାର ଟଙ୍କା ଆଣୁଥାଏ । ତାସ ନ ପଶା ଗେଂବଲିଙ୍ଗରେ ବାପୁ ହଜାରେ ଦେଢ଼-ହଜାର ଟଙ୍କା ଉଡ଼େଇ ଦେଲେ ବ ପ୍ରାୟ ଅଧାଅଧି ଟଙ୍କା କୋକେନରୁ ଅାଦାୟ କରି ନିଏ । ରୋଜଗାର ମନ୍ଦ ନୁହେଁ, ହେଲେ ରେସପେକ୍ଟ ନଥିଲା ।

ଆମକୁ ଆଦ-ଦ୍ରାବିଡ଼, ବାଲ୍ମୀକି କ ମହାର ନାମରେ କେହି ଡାକୁ ନଥିଲେ । ମେହେନ୍ତର ବହେଲେ ଡମ ବୋଲି କହୁଥିଲେ । ବାପୁ ସେଥିକୁ କେଆର୍ କରୁନଥିଲା । ସେଇ ସଡ଼କ ଉପରେ କାଗଜ ବଛେଇ ତାସ ପଶା ଖେଳୁଥିଲା । କେକେନ୍ ଖାଉଥିଲା ଆଉ ଉପରୁ ଝଡ଼ୁଥିବା ଜାମୁକୋଳି ଗୁଡ଼ିକୁ ଖାଲିଦେଇ ଆଡ଼େଇ ଫିଙ୍ଗିବାରେ ବ୍ୟସ୍ତ ରହୁଥିଲା ।

କୋଳି ଖାଇବାକୁ ଯମୁନା ଭଲପାଏ । ସେଥିପାଇଁ ବାପୁ ହେଉଁକାଙ୍କ ଖେଳ ଆଡ଼୍ଡାକୁ ମୁଁ ବେଳେବେଳେ ଗ୍ଲଲିଯାଏ । ଫେଲେ ନାହିଁ । ଯମୁନା ପାଇଁ ଜାମୁକୋଳି ଗୋଟାଏ । କୋଳିତକ ସେ ମୋ ପାଖରୁ ନିଏ ସିନା ହେଲେ ସେ ଯେ ପ୍ରମିଶ୍ ରକ୍ଷା କରିବ ସେ ବିଶ୍ୱାସ ଆସୁନଥାଏ ।

ସବୁଦିନେ ମୋର କାମ ଥିଲେ ବି ଫୁରୁସତ ମିଳୁଥିଲା । ଯମୁନାର ବାପୁ ଦୋକାନ ବନ୍ଦ କରି ଘରକୁ ଫେରିବା ବେଳେ ଯମୁନା ମଟର ସାଇକେଲ ପଛରେ ବସେ । ଆଇ. ବି. ଓ ପୋଲ ପାଖରେ ନଦୀ ପାର ହୋଇ ନିଜ ବସ୍ତିକୁ ଗଲାବେଳେ ଯମୁନା ପଛରେ ବସି ଟର୍ଚ୍ଚ ପକାଉଥାଏ । ଏତେ ରାତିରେ ପୋଲ କ୍ରସ କଲା ବେଳେ ମୁଁ ଦୂରରୁ ଠିକ୍ ଜାଣିପାରୁଥିଲି । ଟର୍ଚ୍ଚର ଆଲୁଅ ମଝିରେ ମଝିରେ ଜଳଉଠେ ବନ୍ଦ ହୋଇଯାଏ । ଅଧରାତିରେ ମୁଁ ଦିନେ ଦିନେ ରାସ୍ତାରେ ଜଗି ବସିଥାଏ । ଯମୁନା ଏସବୁ ଜାଣିଥିଲା । ତା ବାପୁ ପୁଲିସବାଲାଙ୍କ ଟାଣିରେ ମଟର ସାଇକେଲ ଛୁଟାଇ ଗ୍ଲଲିଯାଉଥିଲା ବେଳେ ପଛରୁ ଆଲୁଅ ପକାଇ ଯମୁନା ମତେ ଦୁଇ ଗ୍ଲରିଥର ଅନ୍ଧାରିଆ ଯାଗାରେ ଦେଖି ନେଉଥିଲା ।

"କାଲି ମତେ ଦେଖିଥିଲୁ ?"

"ନାଇଁତ" ବୋଲି ସେ ମୁଣ୍ଡ ହଲାଇ ଦେଲେ ତା' ପ୍ରମିଶ୍ ଉପରୁ ମୋର ବିଶ୍ୱାସ ଆହୁରି ତୁଟିଯାଏ ।

(୭)

"ଟର୍ଚ୍ଚ ଆଲୁଅ କାହିଁକି ପକାଉଥିଲୁ ?"

"କାଲେ ବାପୁର ଗାଡ଼ି ରାସ୍ତାରେ ଖରାପ ହୋଇଯିବ ସେଇଥି-
ପାଇଁ ।"

"ମୁଁ ଗାଡ଼ି କିଣିବ ?"

"କାହିଁକି ?"

"ଗାଡ଼ି ପଛରେ ବସି ରୁ ଟର୍ଚ୍ଚ ଆଲୁଅ ପକାଇଲେ ଖୁବ ଭଲ ଲାଗେ ।"

"ହେଲେ ଦିନବେଳେ ଜଣ କିଏ ଟର୍ଚ୍ଚ ଜଳାଏ ?"

"କାହିଁକି ? ରାତିରେ ବସିବୁ ନାହିଁ ?"

ଯମୁନା 'ନୋ' ରିପ୍ଲାଇ କରି ଦେଲା ।

ଏହାପରଠାରୁ ମୂର୍ଦ୍ଧାର ଘର ପାଖରେ ମୋର ଜ୍ୟାଦା ଟାଇମ୍ ପାସ୍ ହେଲା । ମୁର୍ଦ୍ଧାର ଗଂଧ, ମୂର୍ଦ୍ଧାର ରୁଣପଟ ବଟଫ, ଆଉ ମୁର୍ଦ୍ଧାର ଘରୁ ବୋହି ଆସୁଥିବା ନଳାପାଣି ଓ ଲୁଣ ଘେରରେ ମୁଁ ପଡ଼ିଥାଏ ।

ମଦର ସହିତ କନ୍‌ସଲ୍‌ଟ କରିବା ପାଇଁ ଖୁବଲ । ସେମାନଙ୍କ ଝୁମ୍ପୁଡ଼ି ପାଖରେ ପହଞ୍ଚି ଶୁଣିଲି ଯେ ସେ ମି. ମୌରିସ ସାଥିରେ ବୁରକ ଗ୍ଲାଲଗଲିଣି । ସେଠି କୌଣସି ଭଲ ହୋଟେଲରେ ମୋଲ୍ଡ ଗ୍ଲନ୍‌ସ ପାଇଯାଇଛି ।

ବାସ୍ ଏହାପର ଠାରୁ ଆରମ୍ଭ ହେଲା ବ୍ରୋକନ୍ ଅବସ୍ଥା । ବାପୁ ହାଫ୍ ମେଡ୍ ଅବସ୍ଥାରେ ଖାଲି ଇଂଲିଶ ବକୁଥାଏ । ଝୁମ୍ପୁଡ଼ିରେ ବସି ବସି କେବେ କେବେ କାନ୍ଦ ପକାଏ ବ ।

ଗୋଟାଏ କଥା କ୍ଲିଅର କରି କହୁଛି ଯେ ଝୁମ୍ପୁଡ଼ିଟା ବାପୁର ନିଜର ନୁହେଁ । ଦିଲ୍ଲୀ ଆଇ. ଟି. ଓ. ଅପୋଜିଟରେ ପୁଲିସ ଅଫିସ ପାଖରେ ଯମୁନାଙ୍କ ଦୋକାନ । ଦୋକାନ ପଛରେ ଦେଶ ସଡ଼କକୁ ଲାଗିକରି ଆବର୍ଜନା ପୂର୍ଣ୍ଣ ମଇଦାନଟାଏ ଅଛି । ଜଣେ କିଏ ଆଗ୍ରଣୀ ନରେନ୍ଦ୍ର ଦେବ, ତାଙ୍କର ନାମରେ ଗୋଟାଏ ଭବନ ତିଆରି ପାଇଁ ମଇଦାନ ଭିତରେ ଠାଏ ଭିତ୍ତି ପ୍ରସ୍ତର ଲଗା ହୋଇଚି । ଅରୁଣା ଆସଫ୍‌ଅଲ୍ଲୀ ଇନାଗୁରେଟ୍ କରିଥିବା କଥା ସେଥିରେ ଲେଖା ଯାଇଛି । ବସ୍ତିର ଚିଲ୍‌ଡ୍ରେନ୍‌ମାନେ ମଇଦାନ ଭିତରୁ ଚିରାକାଗଜ, ପ୍ଲାଷ୍ଟିକ, ଲୁହାଲକଡ଼ ପିକିଙ୍ଗ୍ କରନ୍ତି । ସେଇ କଚରା ମଇଦାନ ପାଖରୁ ଯେଉଁ ସଡ଼କଟା ବାହାରି ଯାଇଛି ତାର ମୋଡ ଉପରେ ଟାଇଗରବାଲା ପାଣି ପମ୍ପ ଲାଗିଛି । ମୋଡ଼ ପଛରେ ବସ୍ତି ଭିତରେ ଝୁମ୍ପୁଡ଼ି । ଝୁମ୍ପୁଡ଼ିଟା ବାପୁର ନୁହେଁ । ନିସ୍ୱମ କରି କହୁଚି ସେଇଟା ମୋର ଆଣ୍ଟି, ମୋ ପିଉସୀର । ଆଣ୍ଟିର ଘରମଣିଷ ତାମିଲନାଡୁ ପଳାଇଯାଇ 'ଚୋଟି'

ହୋଇଗଲା । 'ଚୋଟି'କୁ ସେ ଆଉ-ଧୁାବଡ ବନ୍ଦଯିବା କଥା । କିନ୍ତୁ ବନ୍ଦଲ କ ନାହିଁ ସେ ଇନଫରମେସନ୍ ଆମ ପାଖରେ ନାହିଁ । ସେ ଯିବାବେଳକୁ ମୋ ଆଁ ଟି ପାଖରେ ଅଧଘଣ୍ଟା ଲୁଗା ଥିଲା । ତାର ଫେରିବା ସମସ୍ତ ହେଲା ବେଳକୁ ( ଅବଶ୍ୟ ସେ ଅଉ ଫେରିନାହିଁ ) ମାତ୍ର ଖଣ୍ଡିଏ ରହିଥିଲା । ଟାଇଗରବାଲୁ ନଳ ପାଟରେ ଗାଧୋଇବା ମୃହିଲ..... ପାଟରେ ସଡ଼କ । ଅବଶ୍ୟ ବସ୍ତିବାଲାମାନେ ସେ ରାସ୍ତାରେ ଯାଆସ କରନ୍ତି । ଆମ ବସ୍ତିରେ କେହି କାହାକୁ ଲଂଗଳା ହେବାର ଦେଖିନାହିଁ । ଖଣ୍ଡିଏ ଲୁଗାରେ ଟାଇ-ଗରବାଲୁ ନଳ ପାଖରେ ଗାଧୁଆ ପାଧୁଆ କରିବା ଅସୁବିଧା ଜାଣି ଆଁ ଟି ଖବରକାଗଜ ଅଫିସ ବାହାରେ ଥିବା ଚୁଂଗିର ଇଭେଉରନାଲ୍‌ରେ ଗାଧୋଇ ଥାଏ ଆଉ ଲୁଗା ନିଶ୍ଚିବା ଯାଏ ଇଭେଉରନାଲ୍ ଭିତରେ ଲୁଚ ରହୁଥିଲେ । କିନ୍ତୁ ତାର ଫଗଚ୍ୟୁନ୍ ଖୋଲିଗଲା । ଜଣେ ଲେଟେଷ୍ଟ ଟିକେଟ ବିକ୍ରି କରୁବାଲା ତାକୁ ସେଇ ଅବସ୍ଥାରେ ଦେଖିବା ପରେ ଦୁଇଖଣ୍ଡ ଧୋତି କିଣିଦେଲା । ଆଉ ତାକୁ ଘରକୁ ନେଇଗଲା । ତା ପରଠାରୁ ବାପୁ ଆଁ ଟିର ଦୃଷ୍ଟିକୁ ଏନ୍‌କ୍ରୋଚମେଣ୍ଟ କରିନେଲା ।

ଅଧାପାଗଲା ବାପୁ ଚଲ୍ଲାଏ—ଇଂଲିଶ ବକେ । କୁହେ—"ଅମର ବଡ଼ ବଡ଼ ନେତା ଦାଦା ସାମନ୍ତ, କୋଲହଟକର ସମସ୍ତେ କହୁଛନ୍ତି, ଖବର-କାଗଜ ଅଫିସରେ ଅଟୋମେସିନ୍ ହେଲେ ବେକାରୀ ବଢ଼ିବ । ତୁମେ କମ୍ପ୍ୟୁଟର ବସେଇ ଲେବରମାନଙ୍କ ପେଟରେ ଲାତ ମାରୁଛ । ଅଟୋମେସିନ୍-କମ୍ପ୍ୟୁଟର୍ କରିବା କଥାତ ନୂଆ ନୂଆ କାଗଜ ମିଲ୍‌ରେ କର । ପୁରୁଣା ମିଲରେ କରିବା ଉଚିତ ନାହିଁ । ଯଦି କରିବ ତେବେ ଲେବର୍‌ମାନଙ୍କୁ ଟ୍ରେନିଂଦେଇ ସେମାନଙ୍କ ଦ୍ୱାରା ଚଲାଅ । କିନ୍ତୁ ଶଳାଏ କାନରେ ତେଲ ଦେଇ ବସିଛନ୍ତି । ସୁଗ୍ କର୍ଣ୍ଣି ବ୍ରାହ୍ମଣ ପାଲଟି ଗଲଣି । ତୋ ମା ମତେ ଟିଚଙ୍ଗ ଦେଉଛୁ କି ନା—ମେସିନ୍ ଆମକୁ ଛଟାଇ କରିବ ! ଏବେମେତେ ଛଟାଇ କରିଦେଇ ମୋରୁ ସାଙ୍ଗରେ ପଳାଇଲା । ହେଲେ, ତୋ ମା ପଢ଼ୁଲେ ପଢ଼ୁଲେ ଖାଲି ଭଲ ଥିଲରେ ଖାଲି ଭଲଥିଲା......।" ଏହାପରେ ମଦରକୁ ମନେପକାଇ ବାପୁ ରଡ଼ସାର କାନ୍ଦେ । ବ୍ରାହ୍ମଣ ପାଲଟିଯାଇଥିବା କର୍ଣ୍ଣିକୁ ଗାଳିଦିଏ ।

ମୋର ବ ଦଲ୍ ତୁଟି ଯାଉଥାଏ । ଯମୁନାର ବାହାଘର ଖତମ ହୋଇଯାଇଥିଲା । ସେ ଦୁଃଖ ସହିନେଇ ଭାବିଲି ଏଣିକି ଅନ୍ୟ କିଛି କରିବ । ଲିବାରଣ ଲିଣ ଉଠାଇବା କାମ ଛାଡ଼ିଦେଇ ଓ୍ୱାର୍କସପ୍ କାମରେ ଢୁକିଲି । "ଆଠ ନମ୍ବର ପାନା ଦେ." "ନ୍ୟୁଟ୍ରାଲରେ ପକା"—ଏସବୁ ଯେତେବେଳେ ଶିଖିଗଲି ଆଉ ମାସିକିଆ ସେଲେରି ଠିକ୍ ହେବା ସମୟ ଆସିଗଲା, ଅସୁନକ

ଗୋଟାଏ ମଙ୍ଗଳବାର କ୍ୟାଣ୍ଟିନର ବଳରାମ ମୋ ନିକଟ ଆସି କହିଲା ଯେ ଯମୁନା ନିଜ ଦେହରେ କିରୋସିନ୍ ଢାଳିହୋଇ ନିଆଁରେ ପୋଡ଼ି ଯାଇଛି । ହସ୍ପିଟାଲକୁ ଦୌଡ଼ିଲି । ଯମୁନା ଦୁଇ ନମ୍ବର ବର୍ନିଙ୍ଗ ୱାର୍ଡ଼ରେ ଥିଲା । ତାର ହଜ୍‌ବେଣ୍ଡ, ବାପୁ ଓ ରିଲେଟିଭମାନେ ଉପସ୍ଥିତ ଥାନ୍ତି । ପୁଲିସ ଆସି ବୟାନ ନେଇ ପଳାଇଗଲା । ଯମୁନାର ପୋଡ଼ି ଯାଇଥିବା ନଙ୍ଗଳା ବଡ଼ି ଉପରେ ଜାଲିକମୂଳର ଟେଣ୍ଟ ଦିଆଯାଇଥାଏ । ଖାଲି ଗ୍ଲୁକୋଜ୍ ବୋତଲ ଆଠଟା ହେବ ତଳେ ଗଡ଼ୁଥାଏ । ସେ ପାଣି, ପାଣି ବୋଲି ଚିତ୍କାର କରି କନ୍ଦାଉଥାଏ ।

ତାର ହାଲ ଦେଖି ମୁଁ ବି ବେହୋଶ ହୋଇଯିବା ଭଳି ଲାଗୁଥାଏ । ଯମୁନାର ସେଉଜର ଲାଲ୍ ଲାଲ୍ ଓଠ ଦୁଇଟି ଏବେ ଜଳିଯାଇ ବାହାରକୁ ଲମ୍ବି ଯାଇ ଥାଏ । ପେଟ, ପିଠି ଆଉ ଶରୀରର ଅନ୍ୟାନ୍ୟ ପାର୍ଟ ପୋଡ଼ିଯାଇ କେହି ଚମଡ଼ା ଛଡ଼ାଇ ଦେଲାଭଳି ଦିଶୁଥିଲା । ତାର ଆଙ୍ଗୁଠିସବୁ ବଙ୍କା ହୋଇଯାଇଥିଲା ।

ତାର ବାପଙ୍କୁ ବାଦ୍ ଦେଲେ ମତେ ଆଉ କେହି ଚିହ୍ନନ୍ତି ନାହିଁ । କାଚ ଝରକାକୁ ଲାଗିକରି ଠିଆହୋଇ ମୁଁ ଅନାଇଥାଏ । ତାର ହଜ୍‌ବେଣ୍ଡ ବାହାରେ ଛିଡ଼ା ହୋଇଥାଏ । ସେଇ ଯମୁନାର ଓଠକୁ ଦେଖିଲେ ଜାମୁକୋଳି ଖାଇଥିଲାପରି ମନେହୁଏ ସେ ଏବେ ଜଳପୋଡ଼ି ପାଣି ଟୋପାଏ ପାଇଁ ଅପେକ୍ଷା କରୁଛି ।

ସେତିକବେଳେ ଦୁଇଜଣ ଲୋକ ତାର ଚୁଡ଼ି ଓ ଅନ୍ୟାନ୍ୟ ଗହଣା କାଟି ବାହାର କରିବା ପାଇଁ ଆସିଗଲେ । ଯମୁନାର ବଡ଼ି ଫୁଲି ଉଠୁଥାଏ । ରୁପାର ଚୁଡ଼ି ଗୁଡ଼ିକ ଟାଇଟ୍ ହୋଇ ଆସୁଛି । କାଚ ଚୁଡ଼ିକୁସବୁ ନର୍ସମାନେ ଆଗରୁ ଭାଙ୍ଗି ଦେଇଥିଲେ । ଚୁଡ଼ି କାଟିବାବାଲା ଭିତରକୁ ଗଲେ । ତାଙ୍କ ହାତର ବଙ୍କା କଇଁଚକୁ ଦେଖି ଟାଇଗରବାଲା ନଳକଥା ମନେ ପଡ଼ିଯାଉଥାଏ । ସେମାନେ ଯମୁନାର ବସ୍ତ୍ରୁ ପର୍ଯ୍ୟନ୍ତ ଯାଇ ଫେରି ଆସୁ ଆସୁ କହିଲେ—"ଟୋକି ତ ଖଲାସ ପାଇଗଲାଣି ।"

ଡ଼ାକ୍ତର ଆସିଗଲେ । ଅକ୍‌ସିଜେନ ଦିଆଗଲା । କିଛି ସମୟ ଅପେକ୍ଷା କରି ପଲ୍‌ସ ଦେଖିଲେ । ଆଖିଡ଼ୋଳା ଦେଖିଲେ । ହାତ ହଲାଇ ଦେଇ ଫେରିଗଲେ । ଏବେ ଦାରୋଗାବାବୁ ବି ଆସିଯାଇଥିଲେ । କିଛି ଟାଇମ୍ ଚୁପ୍ ରହିଲାପରେ ୩୦୮...୪୯୮ ଏମିତି କ କ ଦଫା ବିଷୟରେ ଗୁଣୁଗୁଣୁ ହେଲେ । ଯମୁନାର ହଜ୍‌ବେଣ୍ଡ, ଘରର ଅନ୍ୟମାନଙ୍କୁ ଖୋଜିଲେ ବେଳକୁ ତାର ବାପୁଙ୍କୁ ଛାଡ଼ ଆଉ କେହି ମିଳିଲେ ନାହିଁ । ତାର ହଜ୍‌ବେଣ୍ଡଙ୍କୁ ପୁଲିସ ଏକ୍ୟୁଜଡ ବୋଲି ସ୍ଥିର କରିଥିଲା, କିନ୍ତୁ ସେ ସେମାନଙ୍କ ଆଖିରେ ଧୂଳିଫିଙ୍ଗି

ପଳାଇଗଲା । ଥାନା ବାବୁ ରାଗିଯାଇ କହିଲେ— "ରହଶଳା, କୁଆଡ଼େ ପଳେଇବୁ ?"

ଯମୁନାର ନଂଗଳା ଦେହକୁ ହସ୍‌ପିଟାଲର କର୍ମଚାରୀମାନେ ଯେମିତି ସେମିତି ଭାବେ ଚାଦରରେ ଗୁଡ଼ାଇ ଦେଇଥାନ୍ତି । ଦୁଇଟା ଚାଦର ଗୁଡ଼ାଯାଇଥିବା ସତ୍ତ୍ୱେ ସ୍ଥାନେ ସ୍ଥାନେ ତାର ବଡ଼ି ପଦାକୁ ବାହାରିଥାଏ ।

ସେତେବେଳକୁ ରାତି ହୋଇ ଗଲାଣି ।

ଚକଲଗା ଷ୍ଟ୍ରେଚର ଉପରେ ତାର ବଡ଼ିକୁ ରଖି ସେମାନେ ତାକୁ ମୁର୍ଦ୍ଦାର ଘରକୁ ନେଇଗଲେ । ମୁଁ ଆଉ ରହିପାରିଲି ନାହିଁ । ଅନ୍ଧାରରେ ସେମାନଙ୍କ ପଛେ ପଛେ ଚାଲିଲି । ହସ୍‌ପିଟାଲର ସବୁଆଡ଼ ଶୂନ୍‌ଶାନ୍ । ଖାଲି ଷ୍ଟ୍ରେଚରର ଚକର ଶବ୍ଦ ଆଉ ପାଣି ଥଳି ଭଳି ଏପଟ ସେପଟ ହେଉଥିବା ଯମୁନାର ବଡ଼ି ।

ମୁର୍ଦ୍ଦାର ଘରେ ବୋଧହୁଏ ବରଫ ନଥିଲା କିମ୍ବା ଖାଲି ଯାଗା ନଥିଲା । ଷ୍ଟ୍ରେଚରବାଲା ତାକୁ ବାଥରୁମ ଭିତରକୁ ଠେଲିଦେଲେ । ବାହାରେ କିଛି ସମୟ ବସି ସେମାନେ ବିଡ଼ି ପିଇଲେ । ତାପରେ ବୋଧହୁଏ ଶୋଇବା ପାଇଁ ଚାଲିଗଲେ ।

ମୁଁ ଅନ୍ଧାରରେ ଛିଡ଼ା ହୋଇଥାଏ ।

ଦୂରରେ ଆଇ. ଟି. ଓ. ପୋଲ ଉପରେ ଯମୁନା ବାବୁର ମୋଟର ସାଇକେଲ ପାରିକଲା । ଯମୁନା ହର୍ଣ୍ଣ ବଜାଇଲା । ଗାଡ଼ି ବନ୍ଦହେଲା । ଯମୁନା ମୋ ନିକଟକୁ ଚାଲିଆସି କହିଲା— "ଶୁଣୁଛୁ, ମୁଁ ଲିବାରେଶନ ହୋଇଗଲେ ମୋ ଲାଶ ଉଠାଇବୁତ ?"

ମୁଁ ବାଥରୁମର କବାଟ ଖୋଲିଲି । ବହୁତ ଅନ୍ଧାର । ଗୋଟାଏ ପାଇପ୍‌ରୁ ଟୋପିଏ ଟୋପିଏ ପାଣି ପଡ଼ୁଛି । ଖାଲି ପାଣିର ଶବ୍ଦ । କେଉଁ ଏକ ମଇଳା କାଚ ଝରକା ପାଖରେ ଝାପ୍‌ସା ଝାପ୍‌ସା ଆଲୁଅ । ବାଥ୍‌ରୁମ୍ ଭିତରେ ଖାଲି ଯମୁନାର ବାସନା । ମୁଁ ଭିତରୁ କବାଟ ଅଉଜାଇ ନେଲି । ଯମୁନା ପାଖରେ ଠିଆ ହେଲି । ଆପଣାକୁ କ୍ଷମିଣ୍ କରି ପାରୁନଥିଲି । କିନ୍ତୁ ଯମୁନାକୁ କିପରି ବଂଚାଇ ଦିଅନ୍ତିକି, ସେକଥା ଭାବୁଥିଲି । ତାକୁ ଛୁଇଁଲେ ସେ ହଲିଯାଉଥିଲା, କିନ୍ତୁ ନିଶ୍ୱାସ ଫେରୁ ନଥିଲା । ମୁଁ ଆସ୍ତେକରି ତାକୁ ଛୁଇଁବା ମାତ୍ରକେ କେଉଁଠୁ ଗୋଟାଏ ଝିଟିପିଟି ତାର ବଡ଼ି ଉପର ଦେଇ ଦୌଡ଼ି ପଳାଇଲା । ଚାଦର କାନିଟା ହଲିଗଲା । ମୁଁ ଶେକ୍ ହୋଇଗଲି ।

ଅନ୍ଧାର ଆହୁରି ବଢ଼ି ଯାଇଥାଏ । ନିସ୍ତବ୍ଧତା ବି । ଘର ଭିତରେ ଖାଲି ଗରମ ନିଶ୍ୱାସ ରୁନ୍ଧ ହୋଇ ଯାଇଥାଏ । ଝିଟିପିଟିଟା କାନ୍ଥ ଉପରକୁ ଚଢ଼ିଯାଇ ଟିକ୍ ଟିକ୍ କରୁଥାଏ ।

ବାଥ୍ ରୁମ୍ ଭିତରେ କେତେବେଳଯାଏ ଯେ ଶୋଇ ପଡ଼ିଥିଲି ଜାଣେନା କିନ୍ତୁ ରାତି ଡ୍ୟୁଟିବାଲା ହାବଲଦାର ଯେତେବେଳେ ମତେ —"ଶଳା-ହାରାମଜାଦା" କହି ଉଠେଇଦେଲା, ସେତେବେଳେ ଯାଇ ଏକଥା ଜାଣି-ପାରିଲି । ଷ୍ଟ୍ରେଚରବାଲା ବି ସାମନାରେ ଛିଡ଼ାହୋଇଥିଲା ।

ମତେ ଭୁରନ୍ତ ଥାନାକୁ ବାନ୍ଧି ନେଲେ । ସେଠି ଗୋଟାଏ ବ୍ରହ୍ମଗ୍ରାପ୍ପଡ଼ା ମୋ କାନମୂଳରେ ପଡ଼ିଲା । "ଚାଲାଣ କର ଶଳାକୁ । ଚୁଡ଼ି ଚୋରେଇ ଯାଇଥିଲା । ଶଳା, ଜାଣିଛୁ ଏଟା ଚାଳକ ରୋଡ୍ ଥାନା !"

ଦ୍ୱିତୀୟ ଥରକ ବାଧା ବସିଲା —ଯମୁନାର ହାଜ୍‌ବେଣ୍ଡବାଲା ବନ୍ଧୁ ଥାନାରେ । —"ଜାଣିଛୁ ଶଳା, ଏଇଟା ମଙ୍ଗୋଲପୁରୀ ଥାନା !"

ତୃତୀୟଥର ମାଡ଼ ବେଳକୁ ମୁଁ ବେହୋଶ ହୋଇ ଯାଇଥିଲି ।

ସାତଦିନ ପରେ ଫେରିଲି । ପୁଅ ଗ୍ରୋଜନ୍ ମାନେ ଭାଙ୍ଗି ପଡ଼ିଥିଲେ । ମୁହଁପୁଡ଼ାଟା ଖାଲି ପଡ଼ିଥାଏ । ବାପୁର ଦେଖା ଦର୍ଶନ ନାହିଁ । ପାଖରେ ଥିବା ପାଞ୍ଚ ସାତ ଟଙ୍କା ଚାଲିଶୀ ବେଳେ ହିଁ ବଟି ଚଢ଼ିଯାଇଥିଲା । ଦେହସାରା ବଥାରେ ଅସହ୍ୟ କଷ୍ଟ ହେଉଥାଏ । ବେହୋଶୀ ଅବସ୍ଥା ଭଳି ଆଖିରେ ନିଦ ଭରିଯାଇ ଥାଏ । ଲମ୍ବ ହୋଇ ଗଡ଼ି ପଡ଼ି କଡ଼ ଲେଉଟାଇଲି ବେଳକୁ ବାହାରୁ କେହି ଜଣେ କହିଲା—

"ଆରେ, ଏଇତ ଏଇଠି ଯଡ଼ିଛୁ । ଆଉ ବାପୁ ସେଣେ ତୁମକୁ ଖୋଜି ଖୋଜି ମରି ସାରିଲାଣି !

"ବାପୁ ? କାହିଁ କେଉଁଠି ଅଛି ?"

"ହେଇ, ସିଆଡ଼େ ପଡ଼ିଛି ।"

ମୁଁ ଭାବିଥିଲି ବାପୁ କେଉଁଠି ଖାଇ କେଉଁଠି ପଡ଼ିଥିବ । କିନ୍ତୁ ସେ ତ ମରିଯାଇ ରାସ୍ତାରେ ପଡ଼ିଥିଲା । ରାଜଧାନୀବାଲା ଶଙ୍ଗରୋଡ଼ରେ ତାକୁ ଟ୍ରକ ଧକ୍କା ଦେଇଥିଲା । ଟ୍ରକବାଲା ତ ପଳାଇଲା । ବାପୁ ସେଇଭଳି ପଡ଼ି ଧୁକୁଧୁକୁ ହୋଇ କିଛି ସମୟପରେ ମରି ଯାଇଥିଲା ! କେହି ପଡ଼ାଲେଖା ଲୋକ ଦେଖିଥିଲେ ହେଲେ ନମ୍ବର ନୋଟ୍ କରିଥାନ୍ତା । ବାପୁର ଲାଶ୍ ଟଣ୍ଡିଏ ମଇଳା ଧୋତିରେ ଗୁଡ଼ାହୋଇ ପଡ଼ିଥାଏ ।

ଏବେତ ଆଉ କିଛି ଭୁଲ ନଥିଲା !

ବାପୁର ଲାଶ ବୋହି ନେଇ ଦିଲ୍ଲୀଗେଟ୍ ଛକ ପାଖରେ ପହଞ୍ଚିଲି । ସେଠି ରାସ୍ତା କଡରେ ଶୁଆଇ କଣ୍ଟ୍ରୋଲେନ୍‌ସ କରିସାରି ଲାଶ୍ ପାଖରେ ବସି ରହିଲି । ତାର ମୁହଁକୁ ଜାଣି ଜାଣି ଖୋଲା ରଖିଥାଏ ଯେପରିକି ସତକୁ ସତ

ସେ ମରିଯାଇଛୁ ବୋଲି ଲୋକେ ବିଲଭ କରିବେ । ତାର କ୍ରିୟା କର୍ମ ଲାଗି ଟଙ୍କାଏ ଦୁଇଟଙ୍କା ମାଗି ମାଗି ସନ୍ଧ୍ୟା ପୂଜା ହାଲିଆ ହୋଇ ପଡ଼ୁଥାଏ ।

ପାସ୍ ଉଞ୍ଜଗଲ ଜନ୍ମ ତାର ଖାଇବାଦାନା ଏଠି ଜମା ହୋଇ ଯାଇ-ଥାଏ । ବାପୁର ଲିଗ ପାଖରେ ବହୁତ ପଇସା ପଡ଼ୁଥାଏ । ପଇସା ସବୁକୁ ଗୋଟେଇ କାଉଣ୍ଟ କଲାରୁ ସବମୋଟ ଦୁଇଶହ ଊଣେଇଶ ଟଙ୍କା ହେଲା । ହଁ ଦୁଇଶହ ଊଣେଇଶ ଟଙ୍କା !

ଏଇ ମୁହୂର୍ତ୍ତରେ ହିଁ ମନ ଦବି ଯାଇଥିଲା । ଦୁଇଶହ ଊଣେଇଶ ଟଙ୍କା ! ନିଜକୁ ସମ୍ଭାଳି ପାରୁନଥାଏ । ଏଣେ କ୍ୟାରେକ୍ଟର ଏବଂ ପ୍ରିମିଶ୍‌ର ପ୍ରଶ୍ନ ବି ଉଠୁଥାଏ ।

ଅନ୍ଧାର ଘନେଇ ଆସୁଥାଏ ।

ଆଉ-ଦ୍ୱାବିଡ଼ ଶଙ୍କର ଭଗବାନଙ୍କ ପୂଜାଷ୍ଟବତ ଲୋକେ ଚଢାଇଥିବା ପଇସା ପକେଟରେ ପକାଇଥିଲି । ଲିଗ ଆଉ ପଥର ଭିତର ଡ଼ିଫରେନ୍‌ସ କଣ ? ବାପୁର ଲିଗ ବି ତ ପଥର ପାଲଟି ଯାଇଛୁ ।

ଲୋକମାନଙ୍କ ଯିବା ଆସିବା କମି ଆସିଥିଲା । ସିନେମା ଦେଖିଯିବା ଲୋକେ ତଲଇଟ୍ ହଲ୍‌ରେ ପଶି ସାରିଥିଲେ । ସଟ୍‌ଟା ବଜାର ଶୂନ୍‌ଶାନ ହୋଇ ଯାଇଥାଏ । ଅଂଧାର ଭିତରେ ଜଣେ ଅଧେ ରିକ୍‌ସାବାଲାର ଘଣ୍ଟିଟେ ଶୁଣା ଯାଉଥିଲା । ରାଜପାଟ ପର୍ଯ୍ୟନ୍ତ ସବୁଆଡେ ନୀରବତା ବ୍ୟାପିଯାଇଥାଏ ।

ବାପୁର ଲିଗକୁ ସେଇଠି ଗ୍ରହ୍ମଦେଇ ମୁଁ ପଳେଇଥିଲି । ନିଜାମୁଦ୍ଦିନରୁ ଗାଡ଼ିଧରି ସିଧା ଆଗ୍ରାରେ ଆସି ପହଞ୍ଚିଲି । ସେ ଦିନଠାରୁ ଆଠ ବର୍ଷ ହୋଇଗଲା । ଦୁଇଶହ ଇଣେଇଶ ଟଙ୍କାରେ ମୋର ଧନ୍ଦା ଜମିଗଲା । ବାହା-ଶ୍ୱେଶ ହୋଇ ସଂସାର ବସେଇ ନେଲି ।

ଦ୍ୱିତୀୟ ଥର ଲାଗି ଝକ୍କୀ ଫେରିବାବେଳକୁ ସଂଗରେ ଏଇ ଲଟକି ଯାହା ସଂଗେ ଆଗ୍ରାରେ ଭେଟ ହେଲା ଦିନଠାରୁ ମୋର ଓ୍ୟାଇଫ୍ ବନିଗଲା, ସେ ମଧ ଥିଲା । ପୁଲିସ ମତେ ଚାଲ୍ଲିପାର ଧରିନେଲା । ଲଟକିକୁ ବି । ମୋ ଗାଲରେ ଆପଡ଼ ବସେଇ ଥାନାଦାର କହୁଥିଲା—"ଶଳା ଜାଣିଛୁ ନା, ଏଇଟା ଆଜମୀର ଗେଟ ଥାନା ବୋଲି ?"

"ଜାଣିଛୁ ସରକାର !"

"ତେବେ !" ଥାନାଦାର ଗର୍ଜିଥିଲା —"ନିଜ ବୋପାକୁ ମାରି ଭାଗିଥିଲୁ ନା ! ସତ କି ନାହିଁ ? ତୋରତ ଶଳା ଜନ୍ମପତ୍ରୀ ଏଇଠି ଅଛି । ଝିଅକୁ କେଉଁଠୁ ଭଗେଇ ଆଣିଲୁ ବେ ?"

ଲଖମା ବଗୁସା ଉପରେ ଅଡଭୁଠିଲା ।

"ଏଠି ଶଳା ସାଧୁ ପାଲଟୁଛୁ । ଏଣେ ଲୋକଙ୍କର ଧର୍ମ ନଷ୍ଟ କରୁଛୁ ।"

"ନାହିଁ, ସରକାର !"

"ତେବେ ? ନିଜ ସ୍ତ୍ରୀକୁ ସମ୍ଭାଳିକରି ରଖ । ନହେଲେ କିଏ ଭଗେଇ ନେଇଯିବ ।" ଏଥରକ ମୁଁ ବି ଟେଣିକ୍ ହୋଇଗଲି । ଲଖମା ମୋର ହାତକୁ ଧରି ପକାଇଲା ।

"ଗୋଟିଏ କେସ୍‌ରେ ସାକ୍ଷୀ ଦବୁ ? ନିଜ ସ୍ତ୍ରୀକୁ ପଗ୍ଭରି ନେ······।"

"କି କେସ୍ ସରକାର··· ···?"

"ଏଇ ଯେ ତୋ ସ୍ତ୍ରୀ ଶୋଇଥିଲା । ଦଗ୍‌ଗା ମଟରବାଲା ଆସି ତା ସହିତ ଅଭଦ୍ର ଆଚରଣ କରି ଜୋର ଜବରଦସ୍ତୀ କଲା······ ।"

"କଲା, ସରକାର·········।"

"ଆରେ, ତୋ ସ୍ତ୍ରୀକୁ ପଗ୍ଭରି ନେ······। ଡ଼ାକ୍ତରୀ ପରୀକ୍ଷା ଲାଗି କିଛି ଅସୁବିଧା ନାହିଁ······କେହି ଜଣେ ସାଥିରେ ଗ୍ଭଲିଯିବ ।"

ଲଖମାକୁ କିଛି ନ ପଗ୍ଭରି ମୁଁ କହିଥିଲି"—କଲା ସରକାର··· ···।"

"କଣ ହେଲା ? ଶଳା ଘୁଡରେ ଶୋଇଲୁ ? ବାହାରକୁ ତାକୁ ନେଇଯା । ପଗ୍ଭରି କରି ଆସି ବତା······ ।"

ଖାଟ ବାରଣ୍ଡାରେ ଲଖମା ପାଗଳ ହେଲା ଭଳି ମତେ କୁଣ୍ଢେଇ ଧରିଲା । ମୁଁ ଠିଆ ହୋଇଥାଏ । ଲଖମା ବସିପଡ଼ି ମୋର ଦୁଇ ଆଣ୍ଠୁ ଭିତରେ ମୁହଁ ଲୁଗ୍ଭଇ କାନ୍ଦୁଥାଏ । ମୁଁ ବସିଯାଇ ତାକୁ ବହୁତ ପେସେନ୍ସ ଦେଲି । ହଡ-ମାଛ, ହାଇ ଏଣ୍ଡ ଫଲ୍ ବିଷୟରେ ମୁହଁ ଲୁଗ୍ଭଇ, ମୋର ହାତ ଧରି ପକାଇ ଆଉ ବେଳେବେଳେ ମୋ ଖୋଲା ସାର୍ଟ ଭିତରେ ମୁହଁ ଲୁଗ୍ଭଇ କାନ୍ଦୁଥାଏ ।

ମୁଁ ତାକୁ ବହୁତ ପେସେନ୍ସ ଦେଲି ।

ସେ ବଡ଼ ବିବଶ ଦୃଷ୍ଟିରେ ମୋର ଆଖିକୁ ଗ୍ଭହିଁଥାଏ । ପୁଣି ସେଠାରୁ ଆଖି ଫେଗ୍ଭଇନେଇ ମୋର ମୁହଁ, କାନ୍ଧ, ବାହୁ, ହାତ, ଆଣ୍ଠୁ, ଶେଷରେ ନଖ ଗୁଡ଼ିକୁ ଦେଖିବାରେ ଲାଗିଲା । ଜାଣେନା ସେ ଏଭଳି ଭାବରେ ମୋଠି କଣ ଖୋଜି ହେଉଥିଲା । ଲଖମା ଗମ୍ଭୀର ଭାବେ ଗୋଟିଏ ଦୀର୍ଘ ନିଶ୍ୱାସ ନେଲା । ମୁଁ ଜାଣିଲି ସେ ମାଙ୍କଗଲା ।

କିନ୍ତୁ ଶେଷରେ ତାର ଆଖି ଦୁଇଟି ଜଣାଇ ଦେଲାଯେ ସେ ମାନିନାହିଁ । ସେତିକି ଯଥେଷ୍ଟ, ମୋର ହାତ ଉଠିଗଲା । ଗୋଟାଏ ଶକ୍ତ ଚାପୁଡ଼ା ବସାଇ ଦେଇ ଚିତ୍କାର କରି ଉଠିଲି—"ଶାଳୀ, ଜାଣିଛୁ ମୁଁ କିଏ ?"

ଲଖମୀର ବକ୍ଷ ଯେପରି ଝାଉଁଳି ପଡ଼ିଗଲା । ତାର ଓଠ ଦୁଇଟି ଜଳନ୍ତା ଅଂଗାର ଭଳି ଜଳୁଥାଏ ଆଉ ଲିଭି ଯାଉଥାଏ । ସେ ଚିତ୍କାର କରି କହିଲା—"ତୁ କିଏ ମୁଁ ଜାଣିନି । ମୁଁ ବୟାନ ଦେବି ନାହିଁ । ଡାକ୍ତରୀ କରାଇବି ନାହିଁ । କିରୋସିନ ଢାଳି ହୋଇ ମରିଯିବି ପଛକେ……ତତେ ଭଲକରି ଜାଣିଲି । ମୋର ଇଜ୍ଜତ ନାହିଁ ନା କଣ ?" ଲଖିମୀ ଥାନା ପାହାଚରୁ ଓହ୍ଲାଇ ଯାଇଥିଲା ।

ମୁଁ ଭିତରକୁ ଗଲି । ଥାନାଦାର ପଚାରିଲା—"ବୁଝିଲୁ ?"

"ସେ ମାନୁନାହିଁ, ସରକାର ।"

"ତେବେ ?"

ଥାନାଦାର କାବିନରେ ଲେଖା ଯାଇଥିବା କିଛି କାଗଜପତ୍ର ଦେଖୁଥାଏ । ସେଥିରେ କାହାର ଜଣକର ଫଟୋ ବି ମରାଯାଇଥିଲା । ସେ ମୁଣ୍ଡ ନଇଠାଇ ଖୁବ୍ ଜୋରରେ ଗୋଟାଏ "ହୁଁ" ମାରିଲା ଆଉ ଫଟୋଟିକୁ ଆଙ୍ଗୁଳି ଦ୍ଵାରା ଟେଢ଼ାଭାବେ ଧରି ଫଟୋତଳେ ଲେଖା ଯାଇଥିବା ହୁଲିଆ ପଢ଼ିବାକୁ ଲାଗିଲା "ପାଞ୍ଚ ଫୁଟ ଆଠ ଇଞ୍ଚ ଲମ୍ବ, ରଂଗ ସାବଳା…… ।"

ପଢ଼ୁ ପଢ଼ୁ ଥାନାଦାର କହିଲା—"ବସି ପଡ଼, ବସି ପଡ଼ । ଚାହା ପି……। ଆରେ, ସ୍ଵାକୁ ଚାହା ଦିଅରେ……"ଚାହାନେଇ ଆସୁଥିବା ଅର୍ଦ୍ଦଳୀକୁ ଆଦେଶ ହେଲା ।

ମୁଁ ମୁକ୍ତିର ନିଃଶ୍ଵାସ ପକାଇ ଚାହା ପିଆଲାରେ ମୁହଁ ଲଗାଇଲି । କିନ୍ତୁ ଚାହା ଭିତରୁ ଯେପରିକି କିରୋସିନ ତେଲର ଗନ୍ଧ ଭାସି ଆସୁଥିଲା ।

(ଅନୁ : ରାଧାକାନ୍ତ ଦାସ)

## କାହାଣୀ :

ଦପ୍ତର ଭିତରେ ବଡବାବୁ ଗୋଟିଏ ଦୁଇ ମୁଣ୍ଡିଆ
ଜନ୍ତୁ । ଗୋଟିଏ ମୁଣ୍ଡରେ ଲଦା ହୋଇଛି ଅଫିସ
ଭିତରର ଦୁର୍ନୀତି, ଦୁଷ୍କୃତି, କାପଟ୍ୟ, ଅମନଯୋଗୀତା
ଏବଂ ହୃଦୟହୀନତାର ମଇଳା ବୋଝ ।
ଆଉ ଗୋଟିଏ ମୁଣ୍ଡ ଉପରେ ବସିଛି ହାତ ଲମ୍ବେଇ
ସୁଧଖୋର ମହାଜନ । ସହର ଭିତରେ ସବୁ ଅମଲା
କର୍ମଚାରୀଙ୍କୁ ଚକ୍ରବୃଦ୍ଧି ହାରରେ କରଜ ଲଗାଇ ବଡ-
ବାବୁ ମାର୍ଫତରେ ଅସୁଲ ତହସିଲ କରି ନେଉଛି । ଏହା
ଏକ ଦପ୍ତରର କାହାଣୀ, ଶୋଷଣ ନୁହେଁ ......

## କଙ୍କାଳ ପୁରୁଷ ॥ ବିନୋଦ ରାଉତରାୟ

ନିରନ୍ନ ମଣିଷର ପ୍ରାଣଧାରଣ ନିମନ୍ତେ ଅପ୍ରାଣ ଉଦ୍ୟମର ଚିରସ୍ଥାୟୀ ବନ୍ଦିଶିବିରମୟ ଛବି ଯଦି କେଉଁଠି ଦେଖିବାକୁ ମିଳେ, ତେବେ ତାହା ହେଉଛି ବର୍ତ୍ତମାନର ସରକାରୀ ଓ ବେସରକାରୀ ଦପ୍ତର ଗୃହଟି । ପ୍ରତି ନଗରୀ ଓ ମହାନଗରୀର ରାଜପଥରେ ବନ୍ଧୁରଗତ ଶହଶହ ବୃକ୍ଷଲେଙ୍କ ବେକାର ମଣିଷର ଯେଉଁ ଚୂଡ଼ାନ୍ତ ବ୍ୟାକୁଳତା, ତାହା ଯେ କୌଣସି ଜଳଖିଆ ଦୋକାନର ଭାଙ୍ଗଭଙ୍ଗା ଆଲମାରୀ ଥାକରେ ସଜ୍ଜିତ ରସଗୋଲା କଡ଼େଇ ଭିତରେ ଲେଞ୍ଜଭୂର ମାଛିଦଳର ଉତ୍କଟ ପଟୁଆର ଠାରୁ ନ୍ୟୂନ ନୁହେଁ । ମାସ ଶେଷରେ କେତୋଟି ଟଙ୍କା ପାଇବା ପାଇଁ ଯେଉଁ ଉଦଣ୍ଡ ବାସନା, ତାହା ବ୍ୟାକୁଳ ମଣିଷକୁ ଯେଉଁପରି ସ୍ୱରରେ ଗ୍ଲାନି, ଅପମାନ, ଅବସାଦ ମଧ୍ୟରେ ଘାଣ୍ଟି ଚକଟି ଦେଉଛି ଓ ସେଥିପାଇଁ ଯେଉଁ ଶୋଚନୀୟ ପରିବେଶ ଓ ପରିସ୍ଥିତି ସୃଷ୍ଟି କରୁଛି, ତାହା ଗୋଟିଏ ଶବ୍ଦରେ ପ୍ରକାଶ କଲେ ହେବ ନାରକୀୟ । କମ୍ପା କଣ କଳ୍ପନା ଓ ପୁରାଣ ବର୍ଣ୍ଣିତ ନରକ ବୋଧହୁଏ ଏତେଦୂର ନାରକୀୟ ହୋଇ ନଥିବ ।

ଏହି ଯୁବକମାନଙ୍କର ଧୈର୍ଯ୍ୟ ଓ ପ୍ରାଣଶକ୍ତିର ପ୍ରଶଂସା କରିବାକୁ ବେଳେବେଳେ ମନ ହୁଏ । ଦୁର୍ନୀତି, ସାମାଜିକ ଅନ୍ୟାୟ ଓ ରାଜନୀତିକ ସୁବିଧାବାଦର ବାରମ୍ବାର ଶିକାର ହୋଇ ମଧ୍ୟ ସେମାନେ ଚୂଡ଼ାନ୍ତରୂପେ ସ୍ୱେଚ୍ଛାଗ୍ରସ୍ତ ହୋଇ ପାରୁ ନାହାନ୍ତି କିମ୍ବା କୁଅଭ୍ୟାସ, ଠକେଇ, ହତାଶା ଓ ବିଶୃଙ୍ଖଳତାରେ ଭାଙ୍ଗି ପଡ଼ୁ ନାହାନ୍ତି । ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତି ସେମାନଙ୍କୁ କେବେହେଲେ ଉଦ୍ୟମରହିତ କରାଇ ପାରିନାହିଁ । ଭାଗ୍ୟାନ୍ୱେଷଣରୁ ବିରତ କରାଇ ପାରିନାହିଁ । ସେମାନେ ପ୍ରଚଣ୍ଡ ଉତ୍ସାହୀ ସାଙ୍ଘାତିକ ଭାବରେ ଆଶାବାଦୀ — ଏତିକି କହି ବନ୍ଧୁ ବନବିହାରୀ ନୀରବ ହେଲେ । ଏତେବଡ଼ ଦୀର୍ଘ ଗୌରଚନ୍ଦ୍ରିକାର ପୃଷ୍ଠପଟରେ କଣ ଅଛି, ଯାହାକି ବନ୍ଧୁ ବନବିହାରୀଙ୍କର ଅନ୍ତରକୁ ଜ୍ୱଳା ଯନ୍ତ୍ରଣାରେ ଅସ୍ଥିର କରି ପକାଉଛି, ସେ ସମ୍ବନ୍ଧରେ ଅଣୁମାତ୍ର କଳନା କରି ପାରିଲି ନାହିଁ । ବରଂ ନିତାନ୍ତ ବେକୁବ ଭଳି ଅନାଇ ରହିଲି ତାଙ୍କ ମୁହଁକୁ । କେବଳ କହିଲି— ଯେଉଁଠି ଉତ୍ସାହ ନାହିଁ, ଆଶା ନାହିଁ, ସେଠାରେ ଭବିଷ୍ୟତ ନାହିଁ— ଜୀବନ ନାହିଁ !

ସଙ୍ଗେ ସଙ୍ଗେ ସେ ବିସ୍ଫୋରଣ କରି ଉଠିଲେ — ଏହାକୁ କଣ କହନ୍ତି ଜୀବନ ? ଏହାହିଁ କଣ ଆମର ଭବିଷ୍ୟତ ? ତେବେ ଶୁଣନ୍ତୁ :

ଏଥର ସେ ଶାନ୍ତ ଭାବରେ ସୂକ୍ଷ୍ମ ବ୍ୟାଖ୍ୟା ଆରମ୍ଭ କରିଦେଲେ —

... ପ୍ରତିଷ୍ଠିତ ଡାକ୍ତର ବିପୁଳକେଶରୀଙ୍କ ଖ୍ୟାତି ବହୁ ମୁଖରେ ପ୍ରକୀର୍ତ୍ତିତ ଓ ପ୍ରଚାରିତ । ତାଙ୍କ ନିକଟକୁ ଯାଇଥିଲେ ନାତି ଧମନ୍ତେ ଗୋଟିଏ ଉପଯୁକ୍ତ ବ୍ୟବସ୍ଥାପତ୍ର ଆଣିବା ପାଇଁ । ନାତିର ପେଟରେ ପ୍ରଚୁର କୃମି । ଛୁଆଟିର ହାଡ଼ ଗଣି ହୋଇ ଯାଉଛି । ପେଟଟି ଏଣ୍ଡ୍ରୁକିଆ ହୋଇ ବାହାରି ପଡ଼ୁଛି । ଆଖି ଦୁଇଟି ଶେତାଳିଆ । ଗୋଡ଼ହାତ ସରୁ ସରୁ । ବ୍ୟବସ୍ଥାପତ୍ର ସୁରୁଖୁରୁରେ ମିଳିଗଲା । କିନ୍ତୁ ସେଠାରେ ସେ ଦେଖିଲେ ତାଙ୍କ ପରିଚିତ ସ୍ୱନାମଧନ୍ୟ ସାହୁକାର ନାରାୟଣଙ୍କୁ ଓ ତାଙ୍କ ସହିତରେ ସ୍ଥାନୀୟ ତହସିଲ ଅଫିସର, ପିଅନ ଗୋଲଖାକୁ । ଗୋଲଖା ଓ ନାରାୟଣ ବାବୁ ଡାକ୍ତରଙ୍କ ରୋଗୀମାନେ ବସୁଥିବା ବେଞ୍ଚର ଝଣ୍ଡେ ଦୂରରେ ବସିଥାନ୍ତି । ବନବିହାରୀଙ୍କୁ ଦେଖି ଦେଖି କଲା ମୁଚୁମୁଚୁ ନାରାୟଣ ମହାଜନେ ବେଞ୍ଚ ଉପରୁ ଉଠି ଆସିଲେ ପାଖକୁ । ହାତର ବିଡ଼ିଟା ସଙ୍ଗେ ସଙ୍ଗେ ରାସ୍ତା ଉପରକୁ ଫିଙ୍ଗି ଦେଇ ଅମାୟିକ ହସରୁ ଚେନାଏ ବୁଣିଦେଲେ ଈଷତ ଅନ୍ଧକାର ମଧ୍ୟରେ । ଅନ୍ଧକାରର ଅଦ୍ଭୁତ କ୍ଷମତା ଅଛି ବୈଷମ୍ୟ ଦୂର କରିଲା ଭଳି । ଗୋଲଖାର ମୁହଁରେ ଉତ୍କଣ୍ଠାର କଳା ଛାୟା !

ଖବର ନେବାରେ ଜଣାଗଲା ଯେ ଗୋଲଖା ଗୋଟିଏ ଡ଼ାକ୍ତର ସାର୍ଟିଫିକେଟ ଯୋଗାଡ଼ରେ ଅଛି । ତାହାର ବଳରେ ଚାକିରୀରୁ ଅବସର ଗ୍ରହଣ କରି ପାରିବ । ଗୋଲଖାର ଆଉ ଚାକିରୀକାଳ ଅଛି ମାତ୍ର ଆଠ-ମାସ । ଏହି ଆଠମାସ ପୂର୍ବରୁ ଯେ ଯଦି ସ୍ୱାସ୍ଥ୍ୟଗତ କାରଣ ଦର୍ଶାଇ ଅବସର ଗ୍ରହଣ କରେ, ତେବେ ତାର ନିକଟତମ ଆତ୍ମୀୟଙ୍କୁ ସୁବିଧାରେ ତାରି ଚାକିରି ମିଳି ଯାଇବ । ଗୋଲଖା ସହିତ ନାରାୟଣ ମହାଜନେ ଆସିଛନ୍ତି ମୂଳଧାରେ ସୁପାରିଶ କରି ଡାକ୍ତର ବାବୁଙ୍କ ଠାରୁ ସାର୍ଟିଫିକେଟ ଖଣ୍ଡେ ଯୋଗାଡ଼ କରାଇ ଦେବାପାଇଁ ।

ଖୁବ ଭଲ ଖାତିରରେ ସେ ଜାଣନ୍ତି ନାରାୟଣ ମହାଜନଙ୍କୁ । ମହା ଧୁରନ୍ଧର ବ୍ୟକ୍ତି । ଶୁଣିଲରେ ବାଳଆ ପିଟି ପାରିବ । ଏହି ଷ୍ଟେଟ ସହରର ଉଳଆ କର୍ମଚାରୀମାନେ ଅଶିକ୍ଷିତ, ଧୂର୍ତ୍ତ, ଚତୁର, ବିବେକବର୍ଜିତ ଓ ନୀତିଜ୍ଞାନହୀନ ନାରାୟଣବାବୁଙ୍କ ସିରନ୍ଧାରେ ବନ୍ଧା । ସକାଳେ ଓ ସନ୍ଧ୍ୟାରେ ପିଂପୁଡ଼ି ଧାର ଭଳି ଚାକିରିଆମାନେ ଧାଡ଼ି ଲଗାଇ ଥାନ୍ତି ମହାଜନଙ୍କ ଡାଣ୍ଡକୁ । ବଡ ବଡ଼ ବାବୁମାନଙ୍କ ପାଦ ଦେଳେଦେଳେ ଯେ ନପଡ଼େ ସେ କଥା କୁହାଯାଇ ପାରିବ ନାହିଁ । ସମସ୍ତଙ୍କର ସବୁବେଳେ ଅଭାବ ଲାଗି ରହିଛି । ଏହା ଯେମିତି ନିତ୍ୟନୈମିତ୍ତିକ । ମହାଜନେ ସମସ୍ତଙ୍କ ଅଭିଳାଷପୂର୍ଣ୍ଣ କରନ୍ତି । ଫଳେପୁଷ୍ପେ ସମସ୍ତଙ୍କୁ ସନ୍ତୁଷ୍ଟ କରନ୍ତି । ହାତ ଚିଠା ଦେଇ, ଟିପଚିହ୍ନ ଦେଇ ସମସ୍ତେ କରଜ କରନ୍ତି, ଗୃହସ୍ତି ମେଣ୍ଟାଇବା ପାଇଁ । ମହାଜନଙ୍କ କାରବାରରେ ମଧ୍ୟ ମଜାଧୂଳି ନଥାଏ । ଯିଏ ଶହେଟଙ୍କା କରଜ କରେ ତାହାକୁ ଧରାଇ ଦିଅନ୍ତି ନବେଟଙ୍କା । କାଟି ରଖନ୍ତି ଦଶ । ସେହି ମାସର ସୁଧ ବାବଦକୁ । ଏହି ଅନୁପାତରେ ଯିଏ ହଜାର ଟଙ୍କା କରଜ କରେ, ତା ହାତକୁ ଆସେ ମାତ୍ର ନଅଶହ ।

ମାସ ଶେଷକୁ ମହାଜନଙ୍କ ଚିଠା ଯାଇ ପହଞ୍ଚିଯାଏ ଅଫିସର ବଡ ବାବୁଙ୍କ ଟେବୁଲ ଉପରେ । ମହାଜନଙ୍କ ଭଳି ସେ ମଧ୍ୟ ସମାନ ଧୂର୍ତ୍ତ ଓ ସମାନ ବିଚକ୍ଷଣ । ପୁରା ଟଙ୍କାର ସନ୍ତକଟା କରାଇ ନେଇ ତାହାପରେ ଆବଶ୍ୟକ ମୁତାବକ ମହାଜନଙ୍କ ସୁଧ ବାବଦ ଟଙ୍କା କାଟିରଖି ଅବଶିଷ୍ଟାଂଶ ଧରାଇ ଦିଅନ୍ତି କର୍ମଚାରୀମାନଙ୍କୁ । ପାଟିଫିଟେଇ ପ୍ରତିବାଦ କରିବାର ସୁ' ନଥାଏ । କାରଣ ସମସ୍ତଙ୍କ ନାମ ହେଉଛି ଦୋଷପୂର୍ଣ୍ଣ ଓ ଛିଦ୍ରମୟ । ସେ ସବୁକୁ ବଡ଼ବାବୁ ଆପଣାର ପାରିଲାପଣିଆ ଦ୍ୱାରା ଘୋଡାଇ ରଖିଥାନ୍ତି । କେଣ କେଣ ଜଣ ଏହି ସୁଧର ମାତ୍ରା ଏତେ ଅଧିକ ହୋଇଯାଏ ଯେ ସେମାନେ ମୂଳ ପ୍ରାପ୍ୟର ଅର୍ଦ୍ଧେକ ସୁଦ୍ଧା ପାଆନ୍ତି ନାହିଁ । ଖସଟପିଆ

ନୂଆ ନୋଟର ଗଣାଗଣି ସ୍ବୁଲେ ନୋଟ ଏ ଶକ୍ତିଶାଳୀ ସୃଷ୍ଟି ସମ୍ପତ୍ତି । ଏଭେଟିକେ ହେଲେ କେଉଁଠି ଭୁଲ ହୁଏନାହିଁ କି ମିଳିବିଏ ବି ବଡବାବୁଙ୍କ ହାତ ଅଟକ ଯାଏନାହିଁ । ମୁହୂର୍ତ୍ତେ ପୂର୍ବା ସେ ଇତସ୍ତତଃ ହୁଅନ୍ତି ନାହିଁ । ସୁଷ୍ପସ୍ବର ଅର୍ଥର ଏକ ଜଟିଳ ରାଜ୍ୟ, ବାହାର ପ୍ରକୃତର ସ୍ଥାନ ସେଠାରେ ଅନର୍ଥର ହେତୁ !

ଦରମାପତ୍ର ଦିଆନିଆ ଶେଷ ହେଲେ ଖୋଦ ବଡବାବୁ ଫାଇଲର ପାଗ୍ବାର ମଧ୍ୟରୁ ମୁଣ୍ଡ ଉଠାନ୍ତି । ନାରାୟଣ ମହାଜନଙ୍କ ସିରସ୍ତାକୁ ଯାଇ ଗୋଟିଗୋଟି କଡାକଡା କରି ବୁଝି ଦେଇ ଆସନ୍ତି । ସେଦିନ ସେଠାରେ ତାହାଙ୍କୁ କପେ ଗୁହା ଓ ଜଳଖିଆ ଉପୁରି ମିଳିଥାଏ । ସେଥି ସହିତ ଟିକେ ନୂଆ ଧରଣର ଆଦର ଅଭ୍ୟର୍ଥନାବି ମିଳେ । ଆଉ ମିଳେ ଅଧା-ହସ ମିଶା ମିଠା କଅଁଳ କଥା ଉପଦ । କୃତକୃତ୍ୟ ହୋଇ ଯାଆନ୍ତି । ମହାଜନଙ୍କ ସୁଖ୍ୟାତି ବଢ଼େ । ଚରାଖ ବଢନ୍ତି । ଆବଶ୍ୟକ ସମୟରେ ବଡ ବାବୁ ଯାହା ଧାର କରଜ କରି ଆଆନ୍ତି, ସେଥିପାଇଁ କୌଣସି ପ୍ରକାର ସୁଧ ଦେବାକୁ ପଡେ଼ନାହିଁ । ଏହା ହେଲା ସାଧାରଣତଃ ମାମୁଲି କଥା !

ବଡ଼ବାବୁ ହେଉଛନ୍ତି ନାରାୟଣ ମହାଜନଙ୍କର ଦୁର୍ନୀତି ଓ ଅବୈଧ ଶୋଷଣର ଏକେଣ୍ଟ ଭଳି । ଏହି ଦଲାଲ କର୍ମରେ ସେମାନଙ୍କର ଅସପନ୍ନ ପ୍ରତିଷ୍ଠା । ଯେ କୌଣସି ନୂତନ କର୍ମଚାରୀଙ୍କୁ ସୁବିଧା ସୁଯୋଗ ଭିଣ୍ଡି ଅନୁ-ଶାସନ ନିୟନ୍ତ୍ରିତ ପରିବେଶର ସୀମାବଦ୍ଧତା ମଝରେ ଏହି ବଡ଼ବାବୁ ହିଁ ନିଜର ଅନ୍ତସ୍ଥଳକୁ ଆଣନ୍ତି ଓ ତାହା ପରେ କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ନେଇ ମହାଜନଙ୍କ ସିରସ୍ତାରେ ପହଞ୍ଚାଇ ଦିଅନ୍ତି । ଶେଷକୁ ଏପରି ପରିସ୍ଥିତି ହୋଇଯାଏ ଯେ, କର୍ମଚାରୀ ଜଣକ ବାଧ୍ୟହୋଇ ନିଜର ଗ୍ରୁକିରୀଟି ବନ୍ଧୀ କରିଦେଇ ରାସ୍ତା ଉପରକୁ ଓହ୍ଲାଇ ପଡେ଼ ମୂର୍ତ୍ତିମନ୍ତ ଅଭିଶାପ ଭଳି । ଶୋଷଣ ଇତିହାସର ବର୍ଣ୍ଣପରିଚୟ ଯେଉଁମାନଙ୍କର ହୋଇଛି, ସେମାନଙ୍କର ନିଶ୍ଚୟ ମହାଜନଙ୍କ ଭଳି ବ୍ୟକ୍ତିଙ୍କ ସହିତ ପରିଚୟ ଘଟିଥିବ ଏକାଧିକବାର । ଢାଲ ଓ ଲହୁ ବହିବା ଠାରୁ ଦାରିଦ୍ର୍ୟର କଷା-ଘାତ ମଧ୍ୟରେ ନିଦାରୁଣ ବଞ୍ଚନା ହେଉଛି ଅଧିକ ଭୟଙ୍କର । ଆଧୁନିକ ପୃଥିବୀରେ ବ୍ୟବସାୟୀ ଓ ଅଫିସିକ କୂଟ କୌଶଳ ଅନେକ ସୃଷ୍ଟି !

ସ୍ଥାନୀୟ ତହସିଲ ଅଫିସର ପାହାଚରେ ଗୋଲଖା ହେଉଛି ଖଣ୍ଡେ ଜଣାଶୁଣା ପଥର । ସେ ଗ୍ରୁକିରୀ ବନ୍ଧୀ ଯୋଜନାରେ ଏବେ ସମ୍ପୃକ୍ତ ହୋଇ ପଡ଼ିଛି । କ୍ଷୀଣ ସ୍ୱାସ୍ଥ୍ୟ ଗ୍ରୁପ ଚକ୍‌କଣିଆ ଗୋଲଖା ଯେତେବେଳେ ସରକାରୀ ଗ୍ରୁକିରୀରେ ଯୋଗ ଦେଇଥିଲା, ସେତେବେଳେ କେତେ କେତେ କଳ୍ପନାର

କୁସୁମ ଫୋଟୁଥିଲା । ତାହା ଥିଲା ସ୍ୱାଧୀନତାର ପ୍ରାକ୍‌କାଳ । ପ୍ରଥମ ପଞ୍ଚବାର୍ଷିକ ଯୋଜନା ଶେଷ ହୋଇ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଆରମ୍ଭ ହେଉଥାଏ ମାତ୍ର । ଭୁବନେଶ୍ୱର ଠାରେ ନୂଆ ରାଜଧାନୀର କାମ ଯୋରସୋରରେ ଆଗେଇ ଚାଲିଥାଏ । କିନ୍ତୁ କଟକ ଭୂଇଁରୁ ପୁରା-ମାତ୍ରାରେ ଉଠିଯାଇ ନଥାଏ ସେକ୍ରେଟାରିଏଟ । ଅମାନବୀକଭାବେ କର୍ମଚାରୀ-ମାନଙ୍କୁ ଅମର୍ଯ୍ୟାଦାପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିବାକୁ କେହି ସାହସ କରି ପାରୁ ନଥାନ୍ତି । ଦୁର୍ବଳ ପ୍ରତି ସବଳ ଅତ୍ୟାଚାର ଇଂରେଜ ଅମଳରେ ଯାହା ଥିଲା, ତାହା ଯଥେଷ୍ଟ ପରିମାଣରେ ଊଣା ପଡ଼ି ଯାଇଥାଏ । ମନେ ହେଉଥାଏ ନୂଆକରି ଏ ଦେଶ ଗଠିତ ହେବ । ଆଲୁଅ ଆସିଲେ ଅନ୍ଧାର ଲୁଚି ଗଲାପରି ସମସ୍ତ ପ୍ରକାର ଅନ୍ୟାୟ, ଅତ୍ୟାଚାର, ଶୋଷଣ, ତୋଷଣ, ଲାଞ୍ଛନା, ବଞ୍ଚନା, ବ୍ୟର୍ଥତା, ବିଫଳତା, ଠକେଇ ନୂଆଦେଶରୁ ଲୁଚିଯିବ ।

ସୁବିଧାଭୋଗୀ ଉଚ୍ଚ ଶ୍ରେଣୀର କର୍ମଚାରୀଗଣ ନାନାଭାବରେ, ନାନା ଉପାୟରେ ଅଧସ୍ତନମାନଙ୍କୁ ନିଗୃହୀତ କରିବା ପାଇଁ ସେଥିଏ ନୂଆ ନୂଆ କୌଶଳ ଉଦ୍‌ଭାବନ କରି ନଥାନ୍ତି କହିଲେ ଚଳେ । ମାତ୍ର ଦଶବର୍ଷ ମଧ୍ୟରେ ସମୁଦାୟ ଦେଶର ଜନସାଧାରଣ ଭୁଲିଗଲେ ସେମା-ନଙ୍କର ସାମାଜିକ ଭୂମିକା, ସାହସଭ ଇଚ୍ଛା ଓ ଉଦ୍ୟୋଗ ସମ୍ବନ୍ଧରେ । ଗାନ୍ଧୀ ଓ ଗାନ୍ଧୀବାଦ ପ୍ରତି ଯେଉଁମାନେ ବିଶ୍ୱସ୍ତ ଥିଲେ, ସେହି ନେତା-ମାନେ ଧୀରେ ଧୀରେ ସେମାନଙ୍କର ସମସ୍ତପ୍ରକାର ଆନୁଗତ୍ୟ ପାଶୋରି ପକାଇଲେ । ସଂସଦୀୟ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାକୁ ଏପରି ବିପର୍ଯ୍ୟସ୍ତ ଭାବେ ଅବକ୍ଷୟ ଦିଗକୁ ମୁହାଁଇ ନେବାକୁ ଚାହିଁଲେ, ଯାହା ଜନସାଧାରଣଙ୍କ ସାର୍ବଭୌମ କ୍ଷମତାର ଅଭିବ୍ୟକ୍ତିଠାରୁ ଦୂରରେ । କାଗଜ ଓ କଲମ ହାତରେ ଥିବାରୁ ବାକ୍‌ଚାତୁର୍ଯ୍ୟ ଓ ବୁଦ୍ଧିଦୀପ୍ତ ସଫେଇରେ ଦକ୍ଷତା ଫୁଟିଲା । ବିଶ୍ୱର ନୀତି ଓ ଧର୍ମର ମର୍ମ ବାଣୀକୁ କୁହାଗଲା ପାଦ୍ରୀ, ମୁଲ୍ଲା, ସନ୍ଥ-ସନ୍ୟାସୀମାନଙ୍କର କାମ ଜାମୁା ପ୍ରତକ୍ରିୟାଶୀଳତା । ସେମାନଙ୍କର ଅବର୍ତ୍ତିମାନରେ ଯେଉଁମାନେ ବର୍ତ୍ତମାନ କାଳର ନେତା, ମନ୍ତ୍ରୀ, ବିଧାୟକ ହୋଇଗଲେ, ଦେଶର ସ୍ୱାଧୀନତା ଆନ୍ଦୋଳନ ସହିତ ସେମାନଙ୍କର ପ୍ରତ୍ୟକ୍ଷ ପରିଚୟ ସୁଦ୍ଧା ନଥିଲା । ସେହି ରାଜନୀତିକ ଠିକାଦାରମାନେ ଯେତେ-ବେଳେ ଆତ୍ମସର୍ବସ୍ୱ ହୋଇପଡ଼ିଲେ, ସେତେବେଳେ ଷ୍ଟେଟ ଠାରୁ ବଡ ସରକାରୀ ଓ ବେସରକାରୀ ସଂସ୍ଥାର କର୍ମଚାରୀମାନେ ନୀତିହୀନ ହୋଇଯିବା ସ୍ୱାଭାବିକ ।

ଗୋଲଖା ଏସବୁ ନିଜ ଆଖିରେ ଦେଖିଛି । ମର୍ମେ ମର୍ମେ ଅନୁଭବ କରିଛି । ଖାଇବାଲୋକ ଖାଉଛନ୍ତି । ଦେବା ଲୋକେ ଦେଇ ଚାଲି-

ଛନ୍ତି । ଗିଳି ହେଇ ପାରୁନ କି ଉଗାଳି ପାରୁନ, ଖାଇ ପାରୁନ କି ଖୁଆଇ ପାରୁନ, ସେ ପଡ଼ି ରହୁଛି ପଛରେ । ସମସ୍ୟାସଂକୁଳ ଦାରିଦ୍ର୍ୟର ସ୍ୱୈରତନ୍ତ୍ରର ଦ୍ୱାରା ନିଗୃହୀତ ଗୋଲଖା ଭଳି ବହୁ ବ୍ୟକ୍ତି । ବହୁ ନିମ୍ନ କର୍ମଚାରୀ ଅନୁଭବ କରି ପାରୁଛନ୍ତି ଇଂରେଜ ଅମଳର ଅମଲାତନ୍ତ୍ର ଓ ଅଫିସତନ୍ତ୍ରର ନିର୍ଦ୍ଦୟ ସେଣ୍ଟିମେଣ୍ଟ ଧାରାବାହିକ ଭାବେ ପୋଷଣ, ଶୋଷଣ ପୀଡ଼ନର ସମସ୍ତ ବାହୁ ବିସ୍ତାର କରିବାକୁ ଲାଗିଛି, ଯାହା ବଳରେ ଶୁଭ ପ୍ରଚେଷ୍ଟା ଗୁଡ଼ିକ ମଧ୍ୟ ବ୍ୟର୍ଥ ହୋଇ ଯାଉଛି । ସ୍ଥୂଳ ଭାବରେ ସୁଦ୍ଧା ଆଜି ଏହାର ମୂଳୋତ୍ପାଟନ କରିବା ଅସମ୍ଭବ । ବିଦେଶୀ ଶୃଙ୍ଖଳ ଭାଙ୍ଗି ପଡ଼ିଲା ପରେ ଏହି ଦୁଇକୋଡ଼ି ବର୍ଷ ମଧ୍ୟରେ ପୁନର୍ବାର ହାତ ଦୁଇଟି ଶୃଙ୍ଖଳାବଦ୍ଧ । କୋର୍ଟ କଚେରୀ, ଅଫିସ ଅଦାଲତ, କଳକାରଖାନାର କର୍ମଚାରୀ ଓ ଶ୍ରମଜୀବୀମାନେ ସଙ୍ଗଠିତ ହୋଇ ପାରିଛନ୍ତି । ସେମାନଙ୍କର ତଳଠାରୁ ଉପର ପାହ୍ୟା ପର୍ଯ୍ୟନ୍ତ ସଂଘ ଗଢ଼ା ହୋଇ ଦଫାଦାରୀରେ ଦାବୀମାନ ଉପସ୍ଥାପିତ କରାଯାଇଛି । ସହାନୁଭୂତିର ସହିତ ତାହା ବିଚାରକୁ ନିଆଯାଇଛି । ଦରମା, ଭତ୍ତା, ଘରଭଡ଼ା, ସ୍ୱାସ୍ଥ୍ୟସେବା ଓ ଶିକ୍ଷା ନିମନ୍ତେ ବହୁବିଧ ଉନ୍ନତିକର ଯୋଜନା କାର୍ଯ୍ୟକାରୀ ହୋଇଛି । ତଥାପି ଦାରିଦ୍ର୍ୟ, ସ୍ୱାସ୍ଥ୍ୟହୀନତା, ଶିକ୍ଷାହୀନତା ଓ ଗୃହହୀନତା ବଢ଼ି ବଢ଼ି ଚାଲିଛି । ଖେଳ କସରତ ସାହିତ୍ୟ ଚର୍ଚ୍ଚା, ନାଟ୍ୟତାମସା ପାଇଁ କ୍ଲବ ଘର ଠାରୁ ଆରମ୍ଭ କରି ବିବିଧ ଆୟୋଜନ ପାଇଁ ସରକାରୀ ସାହାଯ୍ୟର ବ୍ୟବସ୍ଥା ରହିଛି । କିନ୍ତୁ ସବୁରି ଭିତରେ ସାଂସ୍କୃତିକ ଦଲାଲ ଓ ରାଜନୀତିକ ହିଡ଼ାବେପାରୀମାନେ ମାଲକଚ୍ଛା ମାରି ଗଦାଯୁଦ୍ଧ କରିବାରେ ଧୁରନ୍ଧର । ଦରଦାମ ଆକାଶ ଛୁଆଁ । ଏହା ଯେପରି ଭାବରେ ଘଟୁଛି, ତାହାଠାରୁ ଅଧିକ ବେପରୁଆ ଭାବରେ ଦେଖା ଦେଇଛି ଜନପଦର ଭେଜାଲ କାରବାର । ଏପରିକି ଆଧୁନିକ ବସ୍ତୁତାନ୍ତ୍ରିକ ପରିବେଶମଧ୍ୟରେ ସ୍ନେହ, ପ୍ରେମ ସମ୍ମାନ, ବୀରତା, ସଖ୍ୟତା ଆଦି ମାନବିକ ଗୁଣ ଗୁଡ଼ିକ ସୁଦ୍ଧା ଭେଜାଲ ଧରିଲାଣି । ଦୁଇଶହ ବର୍ଷର ପରାଧୀନତାର ଗ୍ଲାନି ହୁଏତ ପାଞ୍ଚ ଶହ ବର୍ଷ ପରେ ଘୁଞ୍ଚିବ କି ନାହିଁ ସନ୍ଦେହ ।

ବ୍ୟକ୍ତିରେ ଗୋଲଖାର ଯେ ଉନ୍ନତି ହୋଇନାହିଁ, ତାହା ଠିକ ନୁହେଁ । ଇଚ୍ଛା, ପ୍ରୟୋଜନ ଓ ସାମର୍ଥ୍ୟ ଅନୁଯାୟୀ ସେ ପିଅନରୁ ହୋଇଛି ଅଫିସ ପିଅନ । ଅଫିସ ପିଅନରୁ ହୋଇଛି ଦପ୍ତରୀ । ସେହି ଅନୁସାରେ ଅନୁରାଗୀ, ଅନୁସାରୀ, ବନ୍ଧୁ ସହକର୍ମୀମାନଙ୍କ ପ୍ରାଦୁର୍ଭାବର ଶୀକାର ମଧ୍ୟ ହୋଇଛି । ଟୋପା ଟୋପା କଣା ପାଣି ଅଭ୍ୟାସ କରୁ କରୁ ବର୍ତ୍ତମାନ

ସଂପୂର୍ଣ୍ଣ ନିଶାଖୋର ପାଲଟି ଯାଇଛି । ଛାଡ଼ିବାକୁ ଚାହିଁଲେ ମଧ୍ୟ ଛାଡ଼ି ପାରୁ ନାହିଁ । ନିଶାପାଣି ନକଲେ ଛାତି ଭିତରେ ହୁଲସ୍ଥୁଲ ପଡ଼ିଯାଉଛି । ମୁଣ୍ଡ ଭିତରେ ଘଣ୍ଟାର ଧ୍ୱନି ଶୁଣାଯାଉଛି । କାନ ଭା ଭାଁ କରୁଛି । ଘରଦ୍ୱାର ଝାଇଁ ପଡ଼ିଲା ଭଳି ମନେ ହେଉଛି । ପାଗଳ ବସ୍ତୁପ ହେବା ହେବା ସଙ୍ଗେ ସଙ୍ଗେ ନିଶାଟା ବି ପାଗଳ ଧରି ଗଲାଣି ।

ରୋଗ, ଶୋକ, ଯନ୍ତ୍ରଣା, ଆତଙ୍କ ଅନାଟନ ଓ ନିସ୍ୱପତ୍ତିର ଅସ୍ୱବ-ବୋଧରେ ସନ୍ତୁଳି ହୋଇ ଅକାଳରେ, ଅବେଳରେ ବାଧ୍ୟହୋଇ ଗୋଲଖାର ସ୍ତ୍ରୀ ବିଦାୟ ନେଇଛି । କେବଳ ବିଦାୟ ନେଇ ନାହିଁ ତ ମହାନିଗ୍ରହରୁ ଉଦ୍ଧାର ପାଇ ଯାଇଛି । ନଚେତ୍ ନିଜର ଇଚ୍ଛା ବିରୁଦ୍ଧରେ ମାତାଲ ସ୍ୱାମୀର ବନ୍ଧୁମାନଙ୍କ ମନ ନେବା ପାଇଁ ସୁଲଭ ଓ ସହଜ ଲଭ୍ୟଭାବେ ଜନପଦ ବଧୂ ହେବାକୁ ବାଧ୍ୟ ହୋଇଥାନ୍ତା । ଅଥବା ସ୍ୱାମୀଙ୍କୁ ପିଅନରୁ ଦପ୍ତରୀ କରାଇବା ପାଇଁ ହୃଦୟହୀନ ନିଷ୍ଠୁର ଅଫିସର ଉପ-ପତ୍ନୀ ଦାୟିତ୍ୱ ବହନ କରିବା ପାଇଁ ରାତି ଚଢ଼ି ନନ୍ଦନକାନନ କିମ୍ବା କୌଣସି ଏକ ଦୂରବର୍ତ୍ତୀ ପାନ୍ଥଶାଳା ହୋଟେଲକୁ ନିଆଯାଇ ଥାନ୍ତା । ପରିବେଶ ଓ ପରିସ୍ଥିତି ହିଁ ତାହାକୁ କରାଇ ଥାନ୍ତା ନୃଶଂସତାର ଶିକାର । ଉପରକୁ ପାହାଚ ପରେ ପାହାଚ ହୋଇ ଉଠିବାକୁ ହେଲେ ପଣ୍ୟ କରି-ଯାଏ ପତ୍ନୀ କିମ୍ବା କନ୍ୟାକୁ — ଜଘନ୍ୟ, ଅତି ଜଘନ୍ୟ … ।

ଝିଅଟିଏ ହୋଇଥିଲା । ମାମୁଁ ତାକୁ ନେଇ ଯାଇଥିଲେ ଯେ ଆଉ ଛାଡ଼ିଲେ ନାହିଁ । କାହିଁକି ଛାଡ଼ିଥାନ୍ତେ ? ବାପଟା କେଉଁ ମଣିଷ ହୋଇ ରହିଛି ଯେ ଝିଅର କଥା ବୁଝିବ । ବରଂ ବାରଦ୍ୱାର ଶୁଣ୍ଡିପିଣ୍ଡା ହୋଇ ଏ ଘରେ ତା'ଘରେ ଛୁଆ କାଖେଇ, ବାସନ ମାଜି ଶେଷକୁ ଛତରରେ ପଡ଼ିଥାନ୍ତା । ବରଂ ମାମୁଁ ମାଇଁଙ୍କ ହେପାଜତରେ ରହି ବଞ୍ଚି ଯାଇଛି । ଗୋଲଖାର ଯେ ସେଥିପ୍ରତି ନଜର ନାହିଁ, ତାହା ନୁହେଁ । କିନ୍ତୁ ସେ ସେଠାରେ ଦାନ୍ତ ଗଳାଇ ପାରିନାହିଁ କି ପାରିବ ନାହିଁ । ସବୁକଥା ସିମିତି ସିନେମା ପର୍ଦ୍ଦାର ଛବି ଭଳି ଗୋଟିକ ପରେ ଗୋଟିଏ ମନେ ପଡ଼ିଯାଏ । ଏବଂ ମନେପଡ଼ିବା ମଧ୍ୟରେ ଯେତିକି ସୁଖ, ସେତିକି ଜ୍ୱାଳା ।

ବର୍ତ୍ତମାନ ଗୋଲଖା ପକ୍ଷରେ ମଦ ହେଉଛି ଗଙ୍ଗା ଜଳ । ସେ କେବଳ ସେଥିରୁ ମୁନ୍ଦାଏ ପିଏନାହିଁ, ସଂପୂର୍ଣ୍ଣ ସେଥିରେ ସ୍ନାନ କରେ କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରଥମେ ମଣିଷ ଖୁସିରେ, ଟିକେ ଫୂର୍ତ୍ତି ପାଇଁ, ଟିକେ ଆମୋଦ ପାଇଁ, ଟିକେ ପ୍ରମୋଦ ପାଇଁ ସକାରଣରେ ହେଉ ବା ଅକାରଣରେ ହେଉ ଟୋପାଏ ଟୋପାଏ ନିଶାପାଣି କରିଥାଏ । ତାହା-

ପରେ ହଠେ ଦେଖାଯାଏ ମଦ ଓ ମଣିଷ ଆସି ପହଞ୍ଚନ୍ତି ଗୋଟାଏ ସ୍ତରରେ । ଶେଷକୁ ମଦ ଗ୍ରାସ କରିଯାଏ ଓ ମଣିଷ ପାଲଟିଯାଏ ତାର କ୍ରୀଡ଼ନକ । ଗୋଲଖା ସେହି କ୍ରୀଡ଼ନକମାନଙ୍କ ମଧ୍ୟରୁ ଗୋଟିଏ । ମୁହଁର ହନୁହାଡ଼ ଦୁଇଟା ସୁସ୍ପଷ୍ଟ । ମୁଣ୍ଡର ବାଳ ଅନେକ ପରିମାଣରେ ଧଳା । ବଡ଼ ବଡ଼ ଆଖି ଦୁଇଟା ମଲା ମାଛର ଆଖିଭଳି ଶେତାଳିଆ, ଅଭିବ୍ୟକ୍ତି-ଗଜଲୁକ୍ତ କଉଁଠଭଳି ସମଗ୍ର ଭିତରଟା ଫମ୍ପା ହୋଇ ଯାଇଛି କୁ-ଅଭ୍ୟାସର କବଳରେ । ମଦପାଣି ତାର ହୃତ୍‌ପିଣ୍ଡ, ଅନ୍ତ୍ରନଳୀ, ପାକସ୍ଥଳୀ, କଲିଜା ସବୁକୁ ଚିପୁଡ଼ି ଦେଇ କରିଛି ପେଡ଼ା ହୋଇ ଫୋପାଡ଼ି ଦିଆ ଯାଇଥିବା ଆଖୁର ଛେଦାଭଳି ।

ଆଜି ତାର ବିଦ୍ୟା ନାହିଁ; ବୁଦ୍ଧି ନାହିଁ, ବିବେକ ନାହିଁ, ସ୍ୱାସ୍ଥ୍ୟ ନାହିଁ, ଚରିତ୍ର ନାହିଁ, ସଂସାର ନାହିଁ, — କିଛି ନାହିଁ । ସବୁ ପ୍ରକାର ନାସ୍ତିର ଅନ୍ଧକାର ମଧ୍ୟରେ ମଦ ହିଁ ହେଉଛି ଏକମାତ୍ର ଆଲୋକ ରନ୍ଧ୍ର । ସେହି ଆଲୋକ ରନ୍ଧ୍ର ଭିତରେ ସ୍ପଷ୍ଟ ଫୁଟିଉଠେ ନାରାୟଣ ମହାଜନଙ୍କ ମୁହଁ । ମହାଜନେ ହେଉଛନ୍ତି ହର୍ତ୍ତା-କର୍ତ୍ତା, ଭାଗ୍ୟ-ବିଧାତା । ସେହି ମହାଜନେ ତାକୁ ଧରି ଆଣିଛନ୍ତି ଡାକ୍ତର ବାବୁଙ୍କ ନିକଟକୁ କି ସେ ମହାଜନଙ୍କ ଗୋଡ଼ ହାତ ଧରି ଆଣିଛି ତାହା ଜାଣିବା ଦୁଷ୍କର ।

ପାଞ୍ଚ ହଜାର ଟଙ୍କା ପାଇଁ ଡାକ୍ତର ବିପୁଳକେଶରୀ ପ୍ରଥମେ କଟାଳ କରିଥିଲେ । ଏହା ଏକ ଦୁର୍ଲଭ ସୁଯୋଗ । ହାତଛଡ଼ା କରିବା ଉଚିତ ନୁହେଁ । ବେହିଆଙ୍କ ଭଳି ଡାକ୍ତରଙ୍କର ସବୁ ପ୍ରକାର କଟାଳକୁ ହଜମ କରିଥିଲା ଗୋଲଖା । ସତେ ଯିମିତି ଶୀତକାଳର ସାପଟିଏ । ନାରାୟଣ ମହାଜନଙ୍କ ମଧ୍ୟସ୍ଥିରେ ତାହା ତୁଟିଛି ତିନି ହଜାର ଟଙ୍କାରେ । ତିନି ହଜାର ଟଙ୍କା ଗଣିଦେଇ ମହାଜନେ ଗୋଲଖାକୁ ସାର୍ଟିଫିକେଟଟା କରାଇ ଦେବେ । ଗୋଲଖା ଠାରୁ ପୋଲା କାଗଜରେ ସନ୍ତକଟାଏ କରାଇ ରଖା-ଯାଇଛି ବଡ଼ ବାବୁଙ୍କ ଉପସ୍ଥିତିରେ । ଡାକ୍ତରଙ୍କ ସାର୍ଟିଫିକେଟ ପଇଠ କରି ସେ ପାଇବ ଚାକିରିରୁ ଅବ୍ୟାହତି । ନିଜ ଗାଁକୁ ଫେରିଯିବ । ସେଠାରେ ଯାହା ଜମିବାଡ଼ି ଅଛି, ତାହାକୁ କାମୁଡ଼ି ଧରି କଟାଇ ଦେବ ଅବଶିଷ୍ଟ ଜୀବନ । ସ୍ଥାୟୀ ଚାକିରି । ପେନସନ ଗଣ୍ଡାଏ ଯାହା ମିଳିବ, ତାହା ଉପୁଷ୍ଣ ଖର୍ଚ୍ଚ ପାଇଁ ଇନଷ୍ଟଲମେଣ୍ଟେ ଗୃହଋଣ ମେଣ୍ଟାଇ ନେବ । ରିକ୍ତତାର ନୈରାଶ୍ୟ ମଧ୍ୟରେ ମାତ୍ର କ୍ଷୀଣ ଆଶାର ସଞ୍ଚାର ଘଟି ପାରୁଛି । ମେଘ ଅନ୍ଧାର ରାତିରେ ବାଟବଣା ପଥିକ ପାଇଁ ଯେପରି କ୍ଷୀଣ ବିଦ୍ୟୁତର ସ୍ଫୁରଣ କୂଳ କିନାରର ସୂଚନା ଦେଇଥାଏ, ସେହିପରି ଚଣ୍ଡିଚପା,

ଗଣ୍ଡିକଟା ସନ୍ଧାନରେ ଏହି ସମାଧାନର ସୂତ୍ର ଗୋଲଖା ପାଇଁ ଅନେକ କାହୁ । ମନ ଭିତରର ଆଶା ଉଦବେଗ ଓ ଉତ୍ସାହ ତାହାକୁ କାର୍ଯ୍ୟବ୍ୟସ୍ତ ରଖିଛି ।

ଗୋଲଖାର ଯେଉଁ ଅର୍ଜିତ ତ୍ରୁଟି ରହିଛି, ଭବିଷ୍ୟନିଧି ରହିଛି, ଗ୍ରାଚ୍ୟୁଟି ବାବଦରେ ଯାହା ମିଳିବ, ସେ ସବୁକୁ କଣ୍ଟାକଣ୍ଟା କରି ହିସାବ କରି-ଛନ୍ତି ଖୋଦ ବଡ଼ବାବୁ । ତାଙ୍କ ପାଉଣା, ଅଫିସରଙ୍କ ମାମୁଲି ଓ ହେଡ୍‌କ୍ଲର୍କ ବାବୁଙ୍କ ପାନଖିଆ ଅଧ ଦେଇଦେଲେ ପରେ ଯାହା ରହିବ, ସେ ଶିବ ନାରାୟଣ ମହାଜନଙ୍କ ପିରସ୍ତାକୁ ସିଧା ସଳଖ । ଡାକ୍ତରଙ୍କ ପାଉଣା ତିନି ହଜାର ସେଥିରେ ସୁଧ ସହିତ ହିସାବ ହୋଇ ଯାଇଛି । ଅବଶିଷ୍ଟ ଯାହା ଫଲେପ୍ରଷ୍ଟେ ହାତକୁ ଆସିବ, ଗ୍ରାମମୁଖୀ ଗୋଲଖା ପାଇଁ ତାହା ହେଉଛି ଯଥେଷ୍ଟ ।

ଗୋଲଖା ଭଳି ନିମ୍ନ କର୍ମଚାରୀମାନଙ୍କ ଅବଶିଷ୍ଟ ଜୀବନକୁ ଏହି ବ୍ୟବସ୍ଥା କୋରି କୋରି ଖାଉଛି । ସେମାନଙ୍କ ରକ୍ତରେ ପରିପୁଷ୍ଟ ହେଉଛି ପ୍ରଚଳିତ ଅଲେଖା ସମ୍ବିଧାନ । ସେମାନଙ୍କୁ ଶୋଷଣ କରୁଛି କୁଟନୀତିର ଚକ୍ର । ଏହା ବାହାରେ ଯେଉଁ ସୁସ୍ଥ ସୁନ୍ଦର ଜୀବନ ଅଛି, ତାହା ଭୋଗିବାକୁ ସମୟ ମିଳୁନାହିଁ । ଗୁଠି ପ୍ରଥା ବିଲୋପ ସହିତ ଏହି ଶୋଷଣ ଦାସତ୍ୱରୁ ମୁକ୍ତି ମାର୍ଗ ନିର୍ଣ୍ଣିତ ହୋଇ ପାରୁ ନାହିଁ । ପୁରୁଣା ରୋଗ ନୂଆ ରୂପରେ ଦେଖା ଦେଉଛି । ଘଟଣା ସ୍ରୋତରେ ପୁରୁଣା ପ୍ରଥା ନୂଆ ରୂପ ନେଉଛି । ନୂଆ ଲେବର ଜୀବନକୁ ଗ୍ରାସ କରୁଛି ।

ହରି ସିଂ ଗୋଡ଼ାଉଛି ଏବେ ମହାଜନଙ୍କ ପଛରେ । ବଡ଼ବାବୁ ତାହାକୁ ଆଣି ଯୁଟାଇଛନ୍ତି ସେଠାରେ । ହରି ସିଂ ମାଟ୍ରିକ ପାସ କରିଥିଲା ତୃତୀୟ ଶ୍ରେଣୀରେ । ତାହା ପୁଣି ତିନିଥର ଫେଲ ହୋଇ ଶେଷକୁ କମ୍ପାର୍ଟମେଣ୍ଟାଲ । ମଫସଲ କଲେଜରେ ଦୁଇ ବର୍ଷକାଳ ଏପାଖ ସେପାଖ ହୋଇ ବିଶ୍ୱବିଦ୍ୟାଳୟ ପରୀକ୍ଷାର ହତା ଡେଇଁ ପାରିଲା ନାହିଁ । ପୋଷାକ ପିନ୍ଧାର ସଉକ ବଢ଼ିଲା, ହାତରେ କଡ଼ା ପଶିଲା, ପାଦରେ ବୁଟ୍ ଗଳିଲା, ଭଳିକି ଭଳି କେଶ ଦାଢ଼ି ଓହଳିଲା । କ୍ରିକେଟ ଖେଳରେ ପାରଦର୍ଶିତା ଦେଖାଦେଲା, ଗୁଲିଲେ ଦାଣ୍ଡ ଦୁଲୁକିଲା, କିନ୍ତୁ ବିଦ୍ୟା ବଢ଼ିଲା ନାହିଁ । ବସି ଖାଇଲେ ନଇବାଲି ସରେ । ରୁଗ୍ଣଟାରେ ଘରେ ବସି ବାପ ମାଆ, ଭାଇ ଭାଉଜ ସବୁରି ଚକ୍ଷୁଶୂଳ । ସମସ୍ତେ କହିବାକୁ ଆରମ୍ଭ କଲେଣି ବଜାରୁ, ଛତରା, ବାଜୁଙ୍ଗା, ବଦମାସ ଓ ସମାଜ ବିରୋଧୀ ଇତ୍ୟାଦି । ଅଦରକାସ୍ତ କିଛିଷ ଭଲ ଠେଲି ପେଲି ହୋଇ ବେକାର ଅକର୍ମା ଜୀବନ ଯେବେ ବାହାର ପଡ଼ିଲା

ପଦାକୁ । ଆଜି କାଲିକା ଦୁନିଆରେ ଆଉ ଫେଲ ବା ମାଟ୍ରିକ ପାଶ ସାର୍ଟିଫିକେଟର ମୂଲ୍ୟ କାହିଁ ? ଏମିତି ବାକ୍ୟ ବ୍ୟୟରେ ସବୁ ଦୁର୍ବଳତାକୁ ଘୋଡ଼ାଇ ହରି ସିଂ ଏମ୍ପ୍ଲୟମେଣ୍ଟରେ ନାମ ଲେଖାଇଛି । ଅଫିସ-ଅଫିସ ବାରମ୍ବାର ଦୌଡ଼ ଇଣ୍ଟରଭ୍ୟୁ ଦେଇଛି । ଶେଷକୁ ହୋଇଛି ଫଳ ନଦାରଦ । ଗ୍ଲାନି, ଅପମାନ, ଅପବାଦରେ ମୁହଁ ଦେଖାଇ ହେଲାପାରେ ନାହିଁ । ଗ୍ରହକଷ୍ଟ କେଉଁ ଛନ୍ଦରେ ଆସେ ଓ କେଉଁ ପରି ତିନପଟିଆ ତାଆସ ଖେଳ ନ୍ୟାୟରେ ପୂରଣ ହୁଏ, ତାହା ସ୍ୱୟଂ ଭଗବାନ ମଧ୍ୟ ଉତ୍ତର କରି ପାରନ୍ତି ନାହିଁ । ହରି ସିଂ ଜାଣିବ କେଉଁଠୁ ବା କିପରି ? ମନ ମରି-ଯାଏ । ଆଖି ନିଷ୍ପ୍ରଭ ହୋଇଆସେ । ତାରୁଣ୍ୟ ଓ ଯୌବନର ଉନ୍ମାଦନା ଉଭେଇ ଯାଏ । ଅଭିମାନର ଅହଂକାର, ଆତ୍ମ-ମର୍ଯ୍ୟାଦା ଲୋପ ପାଏ । ଶେଷକୁ ହରି ସିଂ ଏହିଠାରେ କୌଣସି ପ୍ରକାର ନାକ ଗଳାଇ ପାରିଛି । ବିକଳ ବିରସ ଦିନ ଗୁଡ଼ିକ ନାନା ପ୍ରକାର ମିଛ ଖୋସାମଦିଆରେ ହିଁ କଟୁଛି ।

ବଡ଼ ବାବୁଙ୍କର ଅଭିଜ୍ଞ ଅମଲାତାନ୍ତ୍ରିକ ବୁଦ୍ଧି ଓ ନାରାୟଣ ମହାଜନଙ୍କ ଟେକ୍ନିକ୍ସ ଯଦି ପ୍ରସନ୍ନ ହୁଏ, ତେବେ କପାଳ ଫିଟିବ । ଅନିଶ୍ଚିତ ଭବିଷ୍ୟତ ହେବ ନିଶ୍ଚିତ । ଅଫିସ କାଗଜପତ୍ରରେ ଦୋରସ୍ତି କରିବା ପାଇଁ ବଡ଼ ବାବୁ ନେବେ ଅତି କମ୍‌ରେ ଦୁଇ ହଜାର । ଅଫିସରଙ୍କ ଘରଆଡ଼େ ଯିଆସିବ ତିନି ହଜାର । ସେ ହେଲେ ପୋଷଣାହାସ୍ତି. ଭାଗ୍ୟ ବିଧାତା । ଏହିପରି କଥା ଥିଲା ପାଞ୍ଚ ହଜାରରେ କାମ ଫତେ ହୋଇ ଯାଆନ୍ତା । କିନ୍ତୁ ସବୁ କଥା ଓ ସବୁ କାମ ହେଉଛି ରାଜଶକ୍ତିର ଅନୁଗାମୀ । ଭୁବନେଶ୍ୱର ଠାରେ ଯେଉଁ ବଡ଼ ଅଫିସର ସାହେବ ଅଛନ୍ତି, ସେହି ଉଆଣିଆ ଦେବତାଙ୍କ ଦୃଷ୍ଟି ପିଅନ ଭଳି ଗ୍ରେଟ ଗ୍ରହକଷ୍ଟ ପ୍ରତି ସୁଦ୍ଧା ରହିଛି । ସେଠାରେ ଦଶରୁ ଊଣା ହେଲେ ପିଣ୍ଡା ମାଡ଼ିବା ଆବଶ୍ୟକ ନାହିଁ । ଧନୀ, ନିର୍ଦ୍ଧନ, କୋବିଦ, ମୂର୍ଖ, ସୁଶ୍ରୀ ବିଶ୍ରୀ, ପରିଶ୍ରମୀ, ଅଳସୁଆ, ପରିଚିତ, ଅପରିଚିତ, ବନ୍ଧୁ, ବୈରୀ ସମସ୍ତଙ୍କ ପାଇଁ ସେହି ଗୋଟିଏ କଥା । ସେହି ଗୋଟିଏ ବାଟ । ସେହି ଗୋଟିଏ ତଣ୍ଡିବା, ଉଣ୍ଡିବାର ନିୟମିତ ହାତ ସଫେଇ । ଏହି ଶୋଷ ଅବାରିତ । ବଡ଼ ବାବୁଙ୍କ ଭାଷାରେ ସେଠାରେ ହଠଯୋଗ କରିବାକୁ ହୁଏ ।

'ହିଁ' ମାନେ ହେଉଛି ହଜାର । '୦' ର ଅର୍ଥ ଶୂନ୍ୟଟିଏ । ଏଣୁ ମୂଳ କଥା ହେଲା ହଜାର ପାଖରେ ଶୂନ୍ୟ ଯୋଗ କରିବା । ଯିଏ ଯେତେ ଶୂନ୍ୟ ଯୋଗ କରି ପାରିଲା, ଯାହାର ହଜାର ଯେତେଦଶ ଗୁଣ ଅଧିକ ହୋଇ ପାରିଲା, ତାହାର ସିଦ୍ଧି ସେହି ପରିମାଣରେ ଅଧିକ ।

ବଡ଼ ହାକିମ ହୁକୁମାମାନେ କେବେହେଲେ ପଞ୍ଚାମୃତରେ ଧୂଆ ଶାଳଗ୍ରାମ ନୁହନ୍ତି । ବେଶ୍ୟା, ଦାଗୀ, ଖୁଣୀ, ପକେଟମାରୁ ଠାରୁ ଆରମ୍ଭ କରି ବାର ବନିତା ପର୍ଯ୍ୟନ୍ତ ସମସ୍ତେ ଏକଥା ବୁଝନ୍ତି । ସମସ୍ତେ ଏକଥା ଜାଣନ୍ତି । ସମସ୍ତଙ୍କ ସହିତ ଏହି ଦେଶୀ ସାହେବମାନଙ୍କ କାରବାର । ରାଜନୈତିକ ନେତାମାନଙ୍କର ଛତ୍ରଚ୍ଛାୟା ତଳେ ଏମାନେ ଲାଳିତ ପାଳିତ ଓ ପରିପୁଷ୍ଟ । ଯେଉଁ ଦଳ କ୍ଷମତାକୁ ଆସିଲେ ସୁଦ୍ଧା ସେମାନଙ୍କୁ ଠିକ ରାସ୍ତାରେ ଚଳାଇ ଦେବାକୁ ଅଧିକ ସମୟ ଲାଗେନାହିଁ । ଉଲଙ୍ଗ ଅବସ୍ଥର ଓ ଦୁର୍ନୀତିର ଗଗନ ଚୁମ୍ବୀ ପାହାଡ଼ ଉପରେ ବସି ଅସୀମ କ୍ଷମତା ପ୍ରୟୋଗରେ ଧୁରନ୍ଧର । ଏମାନେ ହେଲେ ଶାସନକୁଶଳୀ ଗେଜେଟେଡ଼ ଅଫିସର, ଆଇରନ ମ୍ୟାନ । ଏହିକଥା କର୍ଣ୍ଣମନ୍ତ୍ର ଫୁଂକି ଦେଲା ପରେ ହରସିଂ ଭଳି ପ୍ରତ୍ୟେକ ସଂଶୟ ମଳିନ ଯୁବକ ପ୍ରାର୍ଥୀଙ୍କ ମନ ଭିତରେ ମେଜିକ ଭଳି କାମ କରେ । ଯୁବକ ଆଶାୟୀମାନଙ୍କ ମନର ଅଭିସନ୍ଧି ତନଖି ନେବାରେ ବଡ଼ବାବୁ ସିଦ୍ଧ ହସ୍ତ ।

ଯାହା ଯାହା ଟଙ୍କା ଲାଗିବ ସେଥିପାଇଁ ଟ୍ରେଜେରୀ ଖୋଲି ଦେବାକୁ ନାରାୟଣ ମହାଜନ ପ୍ରସ୍ତୁତ ଅଛନ୍ତି । ଶିକ୍ଷିତ ବେକାରଙ୍କ ପାଇଁ ଏହା ହେଉଛି ପ୍ରଧାନ ସୁଯୋଗ । ମ୍ୟାନିପୁଲେଟିଂ କରି ପାରିଲେ ସବୁ ସମ୍ଭବ ହୋଇ ପାରିବ । ଏ ଯୁଗ ହେଲା ମନି ଓ ମ୍ୟାନିପୁଲେସନର ।

ହରସିଂର ଜୀବନରେ ମଧ୍ୟାହ୍ନ ଆସିନାହିଁ । ସେ ଧୈର୍ଯ୍ୟ ଓ ସାହସର ସହିତ ଉପରକୁ ଉଠିବା ପାଇଁ ଆୟୋଜନ କରୁଛି । ଆଉ ଗୋଲଖାର ଜୀବନ ଆସି ପହଞ୍ଚି ଗଲାଣି ଅପରାହ୍ନରେ । ତାର ଆଖି ଆଗରେ ପଶ୍ଚିମ ଦିଗ୍‌ବଳୟ ଦେଖା ଯାଉଛି ଜଳ ଜଳ ହୋଇ । ସେଥିଯୋଗୁଁ ସେ ଅବଶିଷ୍ଟ ପାଥେୟ ସଂଗ୍ରହ ପାଇଁ ବ୍ୟସ୍ତ ଓ ବ୍ୟଗ୍ର ହୋଇ ଉଠିଛି । କେହି କାହାର ବନ୍ଧୁ ନୁହେଁ କିମ୍ବା ଶତ୍ରୁ ନୁହେଁ । ବୟସରେ, ସ୍ୱାସ୍ଥ୍ୟରେ, ରୂପରେ, ରଙ୍ଗରେ, ପୋଷାକରେ, ଜାତିରେ ଭିନ୍ନଭିନ୍ନ । ସଂସାରର ସାଧାରଣ ପାର୍ଥକ୍ୟ ଯାହା ରହିବା କଥା, ତାହା ଭଲ ଭାବରେ ରହିଛି । କେହି ମେଳ ଖାଉନାହିଁ କାହାର ସହିତ । ତଥାପି ମେଳ ରହିଛି ଗୋଟିଏ ସ୍ଥାନରେ, ଯେଉଁଠି ଅନ୍ୟମାନେ ସେମାନଙ୍କ ଯେନ ତେନ ଆପଣା ବୁଦ୍ଧି ବଳର ପରଖ କରୁ କରୁ ଟଙ୍କା ପଇସା ଉପାର୍ଜନର ଫାନ୍ଦ ଫାନ୍ଦୁଛନ୍ତି । ଭୟ ନାହିଁ, ଆଶଙ୍କା ନାହିଁ, ପରାଜୟ ନାହିଁ ।

ଗୋଲଖାକୁ ସାଙ୍ଗରେ ନେଇ କଚେରୀରେ ଏଫିଡେଭିଟ କରିବାକୁ ହେବ । ବଡ଼ବାବୁଙ୍କ ପରାମର୍ଶ ଅନୁସାରେ ଏହି କାମଟି ଏମନ୍ତ ଗୋପନରେ

କରୁଛି ଆଣି ପାରିଲେ ହରସିଂ ହେବ ତାର ନାଟକ କଲମର ଜୁଆଁ ବା ଉତ୍ତରାଧିକାରୀ । ଗୃହସ୍ଥ ଯାଇବାର ବାଟ ହେବ ନିଷ୍କଣ୍ଟକ । ସ୍ୱୈରତନ୍ତ୍ରକୁ କରୁଛି ପାରିବ ଆଉକି ସିଏ । ତାର ବନ୍ଧୁ ପୋଷିତ ଅଭିଳାଷର ପରିପୂରଣ କ୍ଷେତ୍ରରେ ଖୋଦ୍ ମହାଜନମାନେ ଭରସା ହୁଅନ୍ତି । ମନେହୁଏ ମହାଜନେ ସିମିତ ତାର ବନ୍ଧୁ ନିକଟର ମଣିଷ । ବିପଦବେଳେ ସାହାଯ୍ୟ କରି ଅନୁଗୃହୀତ କରୁଛନ୍ତି । ଦୁଃଖରେ ଧୈର୍ଯ୍ୟବାଣୀ ଶୁଣାଉଛନ୍ତି । ମନ ପୂରିଉଠେ କୃତଜ୍ଞତାରେ । ମୁହଁରେ ଉକୁଟେ ତୃପ୍ତି ଓ ଆନନ୍ଦର ଚିହ୍ନ ।

ଗୋଲଖାର ଦିନକାଳ ଶେଷ ହୋଇ ଆସିଲଣି । ସରି ଆସିଲାଣି ତାର ମୋଟାମୋଟି ସାଧାରଣ ଜୀବନ । ପୂର୍ବରୁ ଯଦି ସେହି ଖଣ୍ଡରେ ମଜଭୂତ କରି ଆଉ ଜଣଙ୍କର ବ୍ୟକ୍ତିତ୍ୱକୁ ଓ ପୌରୁଷକୁ ଟେକ ଓ ପଦ-ଦଳିତ କରି, ବିଶ୍ୱସ୍ତ ଓ ବଶମ୍ବଦ ଭଳି ବାନ୍ଧି ହୋଇଯାଇ ପାରନ୍ତା, ସେ ବିନା ଦ୍ୱିଧାରେ ତାର ସୁଧ ବାବଦକୁ ସମଗ୍ର ଗୃହସ୍ଥକାଳର ଉପାର୍ଜନ ଅଜାଡ଼ି ଦେଇ ପାରିବ । ଆଜିକାଲିକାର ସମସ୍ୟାସଂକଟ ସଂସାରରେ ଟିକେ ମୋଟାଧରଣର ଥୋପ ଗୁନ୍ଥି ହୁଇଲ୍ ଲଗା ବନିଶ ନଗିଳିଲେ ଶୀକାରକୁ କାବୁ କରିବା ସହଜ ନୁହେଁ । ଏକଥା ଅଭିଜ୍ଞତା ଓ ଅନୁଭୂତିସମ୍ପନ୍ନ ନାଗସ୍ୱର ମହାଜନଙ୍କୁ ବୁଝାଇବାକୁ ପଡ଼େନାହିଁ । ପ୍ରଚଳିତ ସମାଜର ରସସ୍ରୋତରୁ ନିଜର ପ୍ରାପ୍ୟ ଅଂଶକୁ କପରି ନିଃସଂକୋଚଭାବେ ଝିଙ୍କି ନେବାକୁ ହୁଏ, ତାହା ସେ ଉତ୍ତମଭାବେ ଜାଣନ୍ତି ।

କଥାଟା ଶେଷକରି ମୁଖ ବନ୍ଦ କଲେ ବନ୍ଧୁ ବନବିହାରୀ । ତାଙ୍କର ମୁଖ ଯିନା ବନ୍ଦ ହୋଇଗଲା, ମୋର ମନେ ହେଲା କିଏ ଯେପରି ମୁଣ୍ଡ ଉପରେ ଡ଼କାଏ ଗରମ ପାଣି ଢାଳି ଦେଇଛି । ସେହି ପାଣି ମୁଣ୍ଡଆଡ଼ୁ ଝରି ଝରି ସମଗ୍ର ଦେହମନ ଅସ୍ଥିର କରି ପକାଉଛି । କିନ୍ତୁ ପ୍ରକୃତରେ କୌଣସି ପ୍ରକାର ଟିପ୍ପଣି କାଟି ପାରିଲି ନାହିଁ । ପତ୍ନୀ, ପୁଅ, ଗୃହସ୍ଥ, କ୍ୟାରିୟର ଯେଣି ସମସ୍ତେ ବ୍ୟସ୍ତ । ଏହା ବାହାରେ କିଛି ଅଛି କି ନାହିଁ, ସେଥିପାଇଁ ଜାଣିବାର ବ୍ୟଗ୍ରତା ନାହିଁ । ଅର୍ଥଗୃଧ୍ନୁ ଦଲାଲ ଦଳର ବିଭତ୍ସ ଶୋଷଣର ଶୀକାରରୁ କପରି ମୁକ୍ତି ମିଳିବ, ତାହାର ପ୍ରଚେଷ୍ଟା ନାହିଁ । କେବଳ ଭାବିବାକୁ ଲାଗିଲି ତଳ ଉପର, ଆଗପଛ, ଏପାଖ ସେପାଖ । ଠକାମି, ଭଣ୍ଡାମି ହୋଇପାରେ ଚତୁରତା, କିନ୍ତୁ ତାହାକୁ କଦାପି କୁଶଳତା କୁହାଯାଇ ପାରିବ ନାହିଁ ।

ଏହି ସ୍ୱାଧୀନ ଦେଶରେ ମଣିଷ ଜୀବନର ପ୍ରତିଷ୍ଠିତ ମୂଲ୍ୟବୋଧ କଣ ? ଏହାର ଅର୍ଥ କିଛି ଅଛି କି ନାହିଁ ? ସୃଷ୍ଟିର ମୂଳରେ ସତ୍ୟ ଓ

ନ୍ୟାୟ ବୋଲି କିଛି ରହିଛି କି ନାହିଁ ? ଏହା ଚିନ୍ତାର ବିଷୟ । ଦେଶ ପରାଧୀନବେଳେ ମୋ ଦେଶର କବି ଓ କଳାକାର ବୃନ୍ଦ ବିଦେଶୀମାନଙ୍କ ବିରୁଦ୍ଧରେ ଅନେକ ବିଷୟ ଲେଖିଛନ୍ତି । ଏବେ ନିଜର ଅଧଃପତନ ବିରୁଦ୍ଧରେ କଲମ ଚଳାଇବା ଆବଶ୍ୟକ ।

ସେତେବେଳକୁ ଜଳଦଆ ଧୂସର ତରଳ ଦେହ ଉପରେ ଗଳୁଣି ଗଛ ଲତାର ମଥାନରୁ । ମୁଣ୍ଡ ଉପରେ କେବଳ ପାଉଁଶିଆ ରଙ୍ଗର ଆକାଶକୁ ଦେଖାଏ । ଆଉ ମନ ମଧ୍ୟରେ ବିମର୍ଷ ବିଷର୍ଣ୍ଣ ଅନୁଭୂତିକୁ ଦେଖାଏ… ।

□ ପ୍ରିନ୍ସିପାଲ, ସରକାରୀ କଳା ମହାବିଦ୍ୟାଳୟ
ଖଲ୍ଲିକୋଟ, ଗଞ୍ଜାମ ।



# ଲୋକକଥା

ପ୍ରକୃତ ଏବଂ ଜୀବଜନ୍ତୁଙ୍କଠାରେ ନିହିତ କ୍ରିୟାଶକ୍ତି ଗୁଡ଼ିକ ଲୋକ କାହାଣୀରେ ବର୍ଣ୍ଣିତ ହୋଇଛି । ଆଦିମ ଅନିଷ୍ଟକାରୀ ଏବଂ ଇଷ୍ଟକାରୀ ଉଭୟ ଜୀବ ମଣିଷ ସମାଜକୁ ଅନୁଦାନ ଦେଇଥିଲେ ।

ମୂଷିକମାନଙ୍କ ସହିତ ମଣିଷ ଜାତିର ସଂପର୍କ ଏବେ ପ୍ରାୟ ଯୁଦ୍ଧ ଭିତ୍ତିକ । ଏହି ଯୁଦ୍ଧ ଜୟ କରିବାକୁ ବିଜ୍ଞାନର ସାହାଯ୍ୟ ନିଆ ଯାଇଛି । କିନ୍ତୁ ଆଦିମ କାଳରେ ମଣିଷ ଏବଂ ଜୀବଜନ୍ତୁଙ୍କ ମଧ୍ୟରେ ଜୟ ପରାଜୟରକାହାଣୀ କେବଳମାତ୍ର ଚେତନାଶକ୍ତିର ବିକାଶ ନିମନ୍ତେ ବ୍ୟବହୃତ ହେଉଥିଲା । ନାଗାରାଜ୍ୟର ଆଦିମ ଲୋକକଥାରେ ସେହି ତତ୍ତ୍ୱ ପ୍ରତିଫଳିତ ।

## ॥୧॥ ମୂଷାମାନଙ୍କ ରାଜଜେମା ॥

( ସଂଗ୍ରହ : ଡଃ ସୂର୍ଯ୍ୟକାନ୍ତ ଦାସ )

ଥରେ ଜଣେ ସ୍ତ୍ରୀ ନିଜ ଗୃହବାସ କାମଶେଷ କରି କ୍ଷେତରୁ ଘରକୁ ଲେଉଟୁଥିଲା । ବାଟରେ ମୂଷାଟିଏ ଦୌଡ଼ି ଯାଉଥିବା ଦେଖି ସ୍ତ୍ରୀ ଜଣକ ଜଙ୍ଗଲ ପାଖ ଚାଲିବାଟରୁ କୌଶଳକ୍ରମେ ମୂଷାକୁ ଧରି ପକାଇଲା । ଘରକୁ ଆସି ଗୋଟିଏ ଶକ୍ତ ବଡ଼ କାଠ ବାକ୍ସ ଭିତରେ ବନ୍ଦ କରି ସାଇତି ରଖିଦେଲା । ଗୃହବାସ ବେଳ । ଜୋର କାମଧନ୍ଦା ଲାଗିଥାଏ । ସ୍ତ୍ରୀ ସର୍ବଦା କାର୍ଯ୍ୟବ୍ୟସ୍ତ ରହେ । କିଛି ଦିନ ଉତ୍ତାରୁ ମୂଷାଟି କଥା ତା'ର ସ୍ମରଣ ହେଲା । ବାକ୍ସ ଢାଙ୍କୁଣି ଖୋଲି ଦେଖିଲା ମୂଷା ନାହିଁ, ତା' ବଦଳରେ ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ସେହି ବାକ୍ସ ଭିତରେ ଶୋଇ ରହିଛି ।

ରୂପସୀ କନ୍ୟାକୁ ଦେଖି ସ୍ତ୍ରୀ ଭାବିଲା, ଏଇ ହେଲା ମୋର ଝିଅ । ଏହାକୁ ଦୁନିଆର ସର୍ବଶକ୍ତିମାନ ବ୍ୟକ୍ତିକୁ ମୁଁ ବିବାହ କରାଇଦେବି । ତା' ହେଲେ ମୋର ଅଭାବ ଅସୁବିଧା ଆଉ କିଛି ରହିବ ନାହିଁ ।

ସୁନ୍ଦରୀ ଝିଅ ଲାଗି ବରପାତ୍ର ଖୋଜିବାକୁ ଲାଗିଲା । ଦିନେ ସେ ରାଜାଙ୍କ ପାଖରେ ଯାଇ ପହଞ୍ଚିଲା । ରାଜାଙ୍କୁ ମନକଥା ଜଣାଇଲା । କହିଲା , ମୁଁ ଜାଣିବାରେ ଆପଣ ହେଉଛନ୍ତି ସର୍ବ ଶକ୍ତିମାନ ଓ ସର୍ବଶ୍ରେଷ୍ଠ ପୁରୁଷ । ଯଦି ଆପଣଙ୍କୁ ମୋର କନ୍ୟାଦାନ କରିପାରନ୍ତି, ବିଶେଷ ଗୌରବାନ୍ୱିତ ହୁଅନ୍ତି । ଝିଅଟି ରୂପରେ ଅତୁଳନୀୟା । ଆପଣଙ୍କ ମନ ଲାଖି ପାତ୍ରୀ ।

ରାଜା ଏହା ଶୁଣି କହିଲେ, ଆହେ ମିତ୍ର ! ମୁଁ ତୁମ ଝିଅକୁ ବିବାହ କରନ୍ତି ଯେ, କିନ୍ତୁ ଗୋଟିଏ କଥା ଅଡୁଆ ହେଉଛି । କଥାଟି କ'ଣ କି ! ତୁମେ ଖୋଜୁଁଛ ଯିଏ ସର୍ବଶକ୍ତିମାନ ହୋଇଥିବ , ତାକୁ ହିଁ ତୁମ ଝିଅ ବିଭା ହେବ । ମୁଁ ରାଜା ହୋଇଛି ସତ , କିନ୍ତୁ ସର୍ବଶକ୍ତିମାନ ନୁହେଁ । ମୋ ଅପେକ୍ଷା ଆହୁରି ଶକ୍ତିଶାଳୀ ଏହି ଜଗତରେ ରହିଛନ୍ତି । ଉଦାହରଣ ସ୍ୱରୂପ , ଖାଲି ଦେଖିଲ ନଦୀ ଜଳ ଓ ଝରଣାର ପ୍ରଖର ସ୍ରୋତ କେତେ ଶକ୍ତିଶାଳୀ । ଯେଉଁଠି ପ୍ରବଳ ସ୍ରୋତରେ ନଦୀ ବହି ଯାଉଛି , ମୁଁ ସେଠାକୁ ଗଲେ ସେହି ଜଳସ୍ରୋତରେ ଭାସିଯିବି । ଜଳରାଶି ମୋତେ କେଉଁଠିକି ଯେ ଭସାଇ ନେଇ-ଯିବ , ତାହାର ଇୟତ୍ତା ନାହିଁ । ତେଣୁ ଜଳରାଶି ହେଉଛି ସର୍ବଶକ୍ତିମାନ । ମୁଁ ନୁହେଁ । ତୁମେ କନ୍ୟାକୁ ନେଇ ଜଳ ସହିତ ସ୍ୱୟମ୍ବର କରାଇ ଦିଅ

ଏକଥା ଶୁଣି ରାଜାଙ୍କଠାରୁ ବିଦାୟ ନେଇ ଋଷୀ ଜଣକ ଜଳ ଭଣ୍ଡାର ନିକଟକୁ ଗଲା । ମନଖୋଲି କହିଲା , ରୂପବତୀ ଝିଅଟିଏ ମୋର ଅଛି । ତାକୁ ତୁମ ସହିତ ବିବାହ କରାଇଦେବାକୁ ମୁଁ ଚାହେଁ । ମୋର ଇଚ୍ଛା, ଝିଅକୁ ସର୍ବଶକ୍ତିମାନଙ୍କ ହସ୍ତରେ ସମର୍ପଣ କରିବି । ରାଜାଙ୍କ ପାଖକୁ ଯାଇଥିଲି । ସେ ତୁମ ପାଖକୁ ମୋତେ ପଠାଇଛନ୍ତି । ରାଜା କହିଲେ ଜଳ ହେଉଛି ସର୍ବଶକ୍ତିମାନ ।

ଋଷୀ ବୃତ୍ତାନ୍ତ ଶୁଣି ଜଳଭଣ୍ଡାର କହିଲା — ଆରେ ! ମୁଁ ସର୍ବଶକ୍ତିମାନ ନୁହେଁ , କିମ୍ବା ସର୍ବଶ୍ରେଷ୍ଠ ନୁହେଁ । ଦୁନିଆରେ ମୋ'ଠାରୁ ଅହୁରି ବଡ ଶକ୍ତି ବିଦ୍ୟମାନ । ତାହା ହେଉଛି ପବନ । ପବନର ବେଗ ଜାଣିଛ ତ ? ପବନ ବୋହିଲେ ପାଣି ବି ହଲଚଲ୍ ହୋଇଯାଏ । ପାଣିରେ ତରଙ୍ଗ ସୃଷ୍ଟି ହୁଏ , ଢେଉ ଉଠେ । ଏପରିକି ସାମୁଦ୍ରିକ ଝଡ଼ ବି ହୋଇଥାଏ । ତେଣୁ ପାଣି ଅପେକ୍ଷା ପବନ ହେଉଛି ଅଧିକ ଶକ୍ତିଶାଳୀ । ସେଇ ଅଟେ ସର୍ବଶକ୍ତିମାନ । ତୁମ ସୁନ୍ଦରୀ ଝିଅର ପାଣିଗ୍ରହଣ କରିବା ଲାଗି ପବନ ହିଁ ସତ୍ପାତ୍ର ।

ପାଣିର ପରାମର୍ଶ ଗ୍ରହଣ କରି ଲୋକଟି ପବନ ନିକଟରେ ଯାଇ ପହଞ୍ଚିଲା । କହିଲା , ମୋର ଗୋଟିଏ ଅସାମାନ୍ୟ ସୁନ୍ଦରୀ ଝିଅ ଅଛି । ତାକୁ ବିବାହ ଦେବାକୁ ମୁଁ ଚାହେଁ । ଜଣେ ପାତ୍ର ଖୋଜୁଛି ଯିଏ କି ଏ ଦୁନିଆରେ

ସର୍ବଶକ୍ତିମାନ ଓ ସର୍ବଶ୍ରେଷ୍ଠ ହୋଇଥିବ । ପାଣି ନିକଟରୁ ଜାଣିବାକୁ ପାଇଲି ପବନ ହିଁ ସର୍ବଶକ୍ତିମାନ । ମୋ ଝିଅ ସହିତ ତୁମର ବିବାହ ଲାଗି ପ୍ରସ୍ତାବ ବାଉଛୁ । ତୁମେ ସମ୍ମତ ହେଲେ ମୁଁ ଅତ୍ୟନ୍ତ ପ୍ରୀତ ହେବ ।

ପବନ ଉତ୍ତର ଦେଲା — ମୁଁ କ'ଣ ସର୍ବଶକ୍ତିମାନ ? କିଏ ଏଇ ଧାରଣା ଦେଲା ? ହେଇ ସେ ପାହାଡ଼ ଦେଖୁଛଟି ? ପାହାଡ ମୋ ଅପେକ୍ଷା ଅଧିକ ଶକ୍ତିଶାଳୀ , ଏବଂ ତାକୁ ହିଁ କୁହାଯାଇପାରେ ଶ୍ରେଷ୍ଠ ଶକ୍ତି । ପବନ ହୋଇ ମୁଁ ସମସ୍ତଙ୍କୁ ଉଡାଇ ଦେଇପାରୁଛି ଏବଂ ବେଗରେ ସ୍ଥାନାନ୍ତରିତ କରିପାରୁଛି । କିନ୍ତୁ ପାହାଡକୁ ଟଳାଇ ପାରୁନାହିଁ । ତୁମେ ଯଦି ଝିଅକୁ ପାହାଡ ସହିତ ବିବାହ ଦେଇପାରିବ , ତେବେ ତୁମ ଅଭିପ୍ରାୟ ପୂର୍ଣ୍ଣ ହେବ ; ମନସ୍କାମନା ପୂରଣ ହେବ । ଯାଅ , ପାହାଡକୁ ଯାଇ ପଚାରି ବୁଝ ।

ଲେଉଟି ପାହାଡ ପାଖକୁ ଯାଇ ତା' ନିକଟରେ ମନୋବାଞ୍ଛା ବ୍ୟକ୍ତ କଲା । ପାହାଡ଼ କହିଲା — ଅନ୍ୟ କେତେକ ଶକ୍ତିଙ୍କ ସହିତ ତୁଳନା କଲେ , ମୁଁ ଶକ୍ତିଶାଳୀ ପରି ଜଣାଯାଏ । ପ୍ରକୃତରେ କିନ୍ତୁ ମୁଁ ଶକ୍ତିରେ ଶ୍ରେଷ୍ଠ ନୁହେଁ । ଲୋକେ ଭାବନ୍ତି ପାହାଡ ଖୁବ୍ ଶକ୍ତ । ପଥର ହେଉଛି ସବୁଠାରୁ ଟାଣ ପଦାର୍ଥ । କିନ୍ତୁ ଲୋକଙ୍କର ତାହା ଭୁଲ୍ ଧାରଣା । ତୁମେ ପାହାଡ଼ିଆ ମୂଷା ଦେଖିଛନା ? ପଥର ଫୁଟାଇ ମୂଷା ଗାତ କରିଦିଏ । ମୂଷାର କରାମତି ଦେଖିଲେ , ତୁମେ ବୁଝି ପାରିବ ମୂଷାଟି ହେଉଛି ମୋ'ଠାରୁ ଅଧିକ ଶକ୍ତିଶାଳୀ ।

ପାହାଡ଼ ଠାରୁ ତା'ର ମତାମତ ଶୁଣିସାରିବା ପରେ ଋଷୀ ଜଣକ ଆଉ କେଉଁଠାକୁ ଯିବାକୁ ଇଛା କଲା ନାହିଁ । ଚିନ୍ତା କଲା — କିଏ ସେହି ସବ ଶକ୍ତିମାନ୍ , କିଏ ସେହି ସର୍ବଶ୍ରେଷ୍ଠ , ଯାହାକୁ ସେ ନିଜର କନ୍ୟାଦାନ କରି ପାରିବ ? ଲେଉଟି ଆଦୌ କିଛି ସ୍ଥିର କରିପାରିଲା ନାହିଁ ।

ମନଦୁଃଖରେ ସେ ଘରକୁ ଲେଉଟି ଆସିଲା । ପୁଣି ଯାଇ ଢାଙ୍କୁଣି ଖୋଲି କାଠ ବାକ୍ସ ଭିତରକୁ ନିରେଖି ଚାହିଁଲା । ଯେଉଁ ମୂଷାଟିକୁ ସେ ବାକ୍ସରେ ଭର୍ତ୍ତି କରିଥିଲା , ଦେଖିଲା ସେଇ ମୂଷା ଠିକ୍ ସେମିତି ସେ ଭିତରେ ରହିଛି । (୧)

## ॥ ୨ ॥ ମୂଷାଙ୍କ ଆହାର ॥

ବହୁ ପ୍ରାଚୀନ କାଳରେ ମଣିଷ ବଣ ଜଙ୍ଗଲରୁ ଫଳମୂଳ ସଂଗ୍ରହ କରି ସେଇଆକୁ ଖାଇ ବଞ୍ଚି ରହୁଥିଲା । ଧାନ ଚାଉଳ କ'ଣ ଜାଣି ନଥିଲା । ଧାନଗଛ ଦେଖିନଥିଲା ।

ଦିନେ ଗୋଟିଏ ମୂଷା ଆସି ଜଣେ ମଣିଷକୁ କହିଲା — ମୁଁ ତୁମକୁ ଗୋଟିଏ ପଦାର୍ଥ ଉପହାର ଦେବାକୁ ଇଚ୍ଛା କରେ । ତୁମକୁ ଯାହା ଦେବି ତାହା ତୁମର ବହୁତ ଦରକାରରେ ଲାଗିବ । ମୋ ଉପହାର ବଦଳରେ , ତୁମେ ମୋର ଗୋଟିଏ ଉପକାର କରିବାକୁ ପ୍ରତିଜ୍ଞା କର ; ଏତିକି ମୁଁ ଚାହେଁ । ଉପକାର ଏତିକି ଯେ ମୁଁ ବୁଢ଼ା ହୋଇ ମରିଗଲେ ତୁମେ ମୋତେ ମାଟି ତଳେ ପୋତି ପକାଇ କବରଟିଏ ତିଆରି କରିଦେବ । ମଣିଷ ଜଣେ ମରିଗଲେ ଯେପରି ଆଡ଼ମ୍ବରରେ ଶବକୁ କବର ଦିଆଯାଏ , ମୋ' ମୃତ୍ୟୁ ଉତ୍ତାରୁ ତୁମେ ମୋ' ଲାଗି ସେପରି କବର ବନାଇଦେବ । ଯଦି ଶପଥ କରିବ ଯେ ଏତିକି ଉପକାର କରିଦେଇ ପାରିବ , ତେବେ ମୁଁ ତୁମକୁ ମୂଲ୍ୟବାନ ପଦାର୍ଥ ଉପହାର ଦେବି ।

ମଣିଷଟି ରାଜି ହୋଇଗଲା । ମଣିଷ ପାଖରେ ଧାନ ଚାଉଳ ଗୁଡ଼ିଏ ଆଣି ମୂଷା ହାଜର କରିଦେଲା । ମଣିଷକୁ ବତାଇ ଦେଲା ଚାଉଳ କିପରି ସୁସ୍ୱାଦୁ ପଦାର୍ଥ ଏବଂ ତାକୁ ଖାଦ୍ୟ ରୂପେ କିପରି ବ୍ୟବହାର କରାଯାଇପାରେ ।

ମଣିଷ ଜାତି କ୍ରମଶଃ ଧାନ ବୁଣିଲେ , ଏବଂ ଧାନ ଫସଲ ଫଳାଇ ଆରାମରେ ଖାଦ୍ୟ ସଂଗ୍ରହ କରି ଶିଖିଲେ ।

କିଛି କାଳ ପରେ ମଣିଷ କରିଥିବା ଶପଥର ସତ୍ୟାସତ୍ୟ ପରୀକ୍ଷା କରିବାକୁ ମୂଷା ଇଚ୍ଛୁକ ହେଲା । ଗୋଟିଏ ଝରଣା ପାଖ ବଣ ବୁଦାରେ ମୂଷା ଶୋଇ ପଡ଼ି ମରିଯାଇଥିବାର ଛଳନା କଲା । ସେଇବାଟେ ମଣିଷ ଜଣକ ତା' ନିଜ ପୁଅ ସଙ୍ଗରେ କ୍ଷେତକାମକୁ ଯାଉଥିଲା । ବାଟରେ ମଲା ଭଳି ପଡ଼ି ରହିଥିବା ମୂଷାଟିକୁ ପୁଅ ପ୍ରଥମେ ଦେଖିପାରି ବାପାକୁ ଦେଖାଇଦେଲା । ବାପ ପୁଅକୁ ଗାଳି ଦେଇ କହିଲା , ମଲା ମୂଷାଟା କି ଦରକାରରେ ଆସିବ ? ଖଣ୍ଡିଏ କାଠି ତା' ଦେହରେ ଗେଞ୍ଜି ତାକୁ ଝରଣା ପାଣିଭିତରକୁ ଫିଙ୍ଗି ଦେ !

ଏହା ଶୁଣି ମୂଷାଟି ତେର୍ଛି ପଡ଼ି ଉଠି ବସିଲା । ରାଗରେ ଜର୍ଜରିତ

ହୋଇ କହିଲେ , ତୁ ଯାହା ଶପଥ କରିଥିଲୁ, ତାହା ଏତେ ଚଞ୍ଚଳ ଭୁଲି ଯାଇଛୁ ? ସତ୍ୟ ରକ୍ଷା କରି ପାରିଲୁ ନାହିଁ । ପ୍ରତିଜ୍ଞା ଲଂଘନ କଲୁ । ସେଥିପାଇଁ ତୋତେ ଶାସ୍ତି ଦେବି ।

ଆଜିଠାରୁ ତୋ’ ଧାନକ୍ଷେତରେ ପଶି ମୂଷା ମାନେ ଧାନ ଖାଇବେ । ଘରେ ଯେଉଁ ଧାନ ଚାଉଳ ଭଣ୍ଡାର କରି ରଖିବୁ , ତାହା ବି ମୂଷା ଆହାର କରିବେ । ସବୁବେଳେ ତା’ ଭିତରୁ କିଛୁ କିଛୁ ମୂଷା ଲଣ୍ଡି ପାଉଥିବୁ ।

ଏତକ କହି ଦେଇ ସାରି ମୂଷାଟି ଅନ୍ତର୍ଦ୍ଧାନ ହୋଇଗଲା । ମଣିଷ ତାଜୁବ୍ ହୋଇ ରହିଲା ! (୨)

---

[୧]- ଜେ. ଏଚ୍. ହଟନ୍ ପ୍ରଣୀତ “ଆଙ୍ଗାମି ନାଗା” ପୁସ୍ତକର “ମୂଷିକ ରାଜକୁମାରୀ ଓ ଲୋଭୀ ଲୋକ” । ଗଳ୍ପର ମର୍ମାନୁବାଦ ।

[୨]- ‘ ଆଓ ନାଗା ’ଲୋକକଥା ।



## କାହାଣୀ

ଗ୍ରାମ ଅସୁସ୍ଥ । ଅସୁସ୍ଥ ସହର ମଧ୍ୟ । ଏହା ଏକ ବ୍ୟାଧି । କିନ୍ତୁ ଏହି ବ୍ୟାଧିର ଅନୁକୂଳ ଅବସ୍ଥା ଅଚେତନ ଜଗତରେ ସୃଷ୍ଟି ହୋଇ ନାହିଁ । ମୃତ୍ତିକା, ପାଷାଣ, ମଧ୍ୟରେ ଏହି ବ୍ୟାଧିର ବୀଜ ନଥିଲା ।

ସୁଦାମ ଗାଁକୁ ଫେରୁଥିଲେ । ରମାନାଥ ଫେର ଯାଉଥିଲେ ସହରକୁ । କାହାରି ସିଦ୍ଧାନ୍ତରେ ମେଳ ନ ଥିଲା । ଏହା ବୋଧ ହୁଏ ବ୍ୟାଧିର ଅନ୍ୟତମ କାରଣ ମଧ୍ୟ ।

## ॥ ସୁଦାମ ବାବୁଙ୍କ ଅବସର ॥

### ଜ୍ଞାନପ୍ରକାଶ

---

ବସରୁ ଓହ୍ଲାଇ ସୁଦାମ ବାବୁ ନଜର ବୁଲାଇ ଆଣିଲେ ଚଉଆଡ଼େ । ଦଶବର୍ଷ ତଳେ ସେ ଗାଁକୁ ଆସିଥିଲେ । ସେତେବେଳେ ଏ ରଘୁନାଥପୁର ଛକରେ ମାତ୍ର ଦୁଇ ତିନୋଟି ଦୋକାନ ଥିଲା । ହେଲେ ଏବେତ ପୂରା ସହର ହୋଇ ଗଲଣି । ଦୋକାନର ସଂଖ୍ୟା ଅନେକ ବଢ଼ି ଯାଇଛି । ସାମନାରେ ବଡ଼ ବଡ଼ ସାଇନବୋର୍ଡ଼ । ଦଶବର୍ଷ ତଳେ ସେ ଯେତେବେଳେ ଗାଁ କୁ ଆସିଥିଲେ, ସେତେବେଳେ ସଂଧ୍ୟା ପରେ ଏଠାକାର ବାତାବରଣ ଏକ ରକମ ନିସ୍ତବ୍ଧ ଓ ଅଂଧକାରମୟ ହୋଇଯାଉଥିଲା । ହେଲେ ଏବେତ କ୍ରମାର ପୂର୍ଣ୍ଣିମୀର ଜହ୍ନ ପଣ ଚଉଆଡ଼ ଖାଲି ବିଜୁଳି ଆଲୁଅରେ ଜକଜକ । ଲୋକ ବାକ ଭର୍ତ୍ତି । ସୁଦାମ ଚାହିଁ ଦେଖିଲେ ଛକଠାରୁ କିଛି ଦୂରରେ ଗୋଟାଏ ବଡ଼ ପକ୍କା ଘର । ଲେଖା ହୋଇଛି 'ପ୍ରାଥମିକ ଚିକିତ୍ସା କେନ୍ଦ୍ର' । ତା' ପାଖକୁ 'ସମବାୟ ଦୁଗ୍ଧ ଉତ୍ପାଦନ ପ୍ରତିଷ୍ଠାନ' ।

ସୁଦାମ ସୁମନ୍ତ ଙ୍କ ହାତରୁ ସୁଟ୍‌କେଶଟା ନେଇ ରାସ୍ତା କଡ଼ରେ ରଖି ରଖି କହିଲେ —"ଦେଖୁଛ ସୁମନ୍ତ, ଗାଁ କେମିତି ବଦଳି ଗଲାଣି । ସତରେ ବଡ଼ ଖୁସି ଲାଗୁଛି ଏସବୁ ଦେଖି !"

"ତୁମଠାରୁ ବେଶି ଖୁସି ହେଉଥାନ୍ତେ ବାପା"— ସୁମନ୍ତ ଟିକିଏ ହସି ଦେଇ କହିଲେ — "ହେଲେ ଏଦିନ ଦେଖିବାକୁ ସେ ବଂଚିଲେ ନାହିଁ ।"

ସୁଦାମଙ୍କର ଆଖି ଛଳ ଛଳ ହୋଇ ଆସିଲା । ସତରେ ବାପା ଥିଲେ ଏବେ କେତେ ଖୁସି ହେଉ ନ ଥାନ୍ତେ । ଗାଁକୁ ସହର ଠାରୁ ସୁନ୍ଦର କରି ଗଢିବାର ସ୍ୱପ୍ନ ଦେଖି ଦେଖି ସେ ଏ ସଂସାର ଛାଡ଼ି ଚାଲିଗଲେ । ସେ ଥିଲେ ସେ କାଳର ଇଂରେଜୀ ପାଠୁଆ । ଇଂରେଜ ସରକାରଙ୍କ ଅଧୀନସ୍ଥ କର୍ମଚାରୀ । ହେଲେ ଦେଶ ପାଇଁ, ଗାଁ ପାଇଁ ସେ ସରକାରୀ ଚାକିରୀ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ଗାଁ ଗହଳରେ ସ୍ୱାଧୀନତା ସଂଗ୍ରାମ ପାଇଁ ଜନତାଙ୍କୁ ସଂଗଠିତ କରିବାର କାର୍ଯ୍ୟଭାର ଗ୍ରହଣ କଲେ । ସେଥିପାଇଁ କେତେଥର କାରାବରଣ କଲେ । ଦେଶ ସ୍ୱାଧୀନ ହେଲା, ହେଲେ ସେ ଗାଁ ଛାଡ଼ି ଆଉ ଚାକିରୀ କରିବାକୁ ଗଲେ ନାହିଁ । ସବୁବେଳେ ସେ କହୁଥାନ୍ତି—'ଗାଁ ଦେଶର ମେରୁଦଣ୍ଡ । ଗାଁକୁ ଉନ୍ନତ କଲେ ଦେଶର ସ୍ଥିତି ଦୃଢ଼ ହେବ ।'

ସୁଦାମଙ୍କର ମନେ ପଡ଼ିଗଲା ସେଦିନ କଥା, ଯେଉଁଦିନ ସେ ସହରରେ ନିଯୁକ୍ତି ପାଇ ଚାକିରୀରେ ଯୋଗ ଦେବାକୁ ଗଲେ । ବାପା ନରୋତ୍ତମ ବଡ଼ ଉଦାସୀନ ଭାବରେ କହିଲେ "ଏ ସବୁ କ'ଣ ହୋଇଯାଉଛି ରେ ସୁଦାମ ? ଆମେ କ'ଣ ଭାବିଥିଲୁ ଆଉ ହେଉଛି କ'ଣ ? ଯିଏ ଶିକ୍ଷିତ ହେଲା ସିଏ ଚାଲିଗଲା ସହରକୁ ଆଉ ଏ ଗାଁକୁ ଗଢିବ କିଏ ? ଅଶିକ୍ଷା, ଦାରିଦ୍ର୍ୟ, ରୋଗବ୍ୟାଧି ଏ ସବୁ ହେବ ଗାଁ ଗହଳର ସମ୍ପତ୍ତି ?"

ଅନେକ ଦିନ ପରେ ଦିନେ ପୁଣି ନରୋତ୍ତମ ସୁଦାମଙ୍କୁ କହିଥିଲେ — " ସହରରେ ଚାକିରୀ କଲ୍ କିଛି କଥା ନାହିଁ, ହେଲେ ଚାକିରୀ ଶେଷରେ ଗାଁକୁ ଫେରି ଆସିବୁ । ସହରରେ ଘରଦ୍ୱାର କରି ରହି ଯିବୁନି । ଏଇ ଗାଁର ମାଟି, ତା'ର ପାଣି ପବନ ତୋତେ ଏତୁଟିଏରୁ ଏତେଟିଏ କରିଛି । ତାକୁ ଭୁଲି ଯିବୁନି ।" ବାପାଙ୍କ କଥା ମନେପଡ଼ି ସୁଦାମଙ୍କର ଆଖିରେ ଲୁହ ଜକେଇ ଆସିଲା ।

ନରୋତ୍ତମଙ୍କର କାଳ ହେବା ଆଜକୁ ଦଶବର୍ଷ ହୋଇ ଗଲାଣି । ସୁଦାମ ସ୍କୁଲ ପଢାଠୁଁ ମା'ଙ୍କୁ ହରାଇଥିଲେ । ଚାକିରୀ କଲାପରେ ସେ ଅନେକ ଚେଷ୍ଟା କରିଥିଲେ ନରୋତ୍ତମଙ୍କୁ ନିଜପାଖକୁ ନେଇ ଯିବାକୁ । ହେଲେ ସେ ଗାଁ ଛାଡ଼ି ଯିବାକୁ ରାଜି ହେଲେନି । ନରୋତ୍ତମଙ୍କର ଶେଷ ବେଳରେ ବି ସୁଦାମ ତାଙ୍କୁ ଦେଖି ପାରି ନ ଥିଲେ । ବିଶ୍ୱସ୍ତ ଚାକର ମଙ୍ଗୁଠାରୁ ବାପାଙ୍କ ମୃତ୍ୟୁ ଖବର ପାଇ ସେ ଗାଁକୁ ଆସିଥିଲେ । ଶବ ସତ୍କାର ଓ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ

କରି ସେ ପୁଣି ଫେରି ଯାଇଥିଲେ ସ୍କୁଲଘର ସ୍ଥଳକୁ । ତା' ପରେ ଆଉ କେବେ ଆସି ନ ଥିଲେ ଗାଁ କୁ ।

"ସାନବାବୁ !" ମକୁର ଡାକରେ ଧ୍ୟାନଭଗ୍ନ ହେଲା ସୁଦାମଙ୍କର ।

"ଆରେ ମକୁଦାଦା, ଚଠି ଠିକ୍ ସମୟରେ ମିଳି ଯାଇ ଥିଲା ନା ?"

"ହଁ ସାନବାବୁ ଠିକ୍ ସମୟରେ ପାଇଥିଲି ।"

ମକୁ ହଠାତ ରାଗିଯିବାର ଅଭିନୟ କରିକହିଲା—"ଏଇ ଫକୁଆ ରିକସା ବାଲା ପାଇଁ ଏତେ ଡେରି ହେଲା । ଶଳାର ତ କାଲିଠୁ ଜ୍ୱର । କହିଲା ପନ୍ଦର ଟଙ୍କା ନବ । କ'ଣ କରିବ ଧନଆ ରିକ୍ସା ନେଇ ଶୁକଦେବପୁର ପଳେଇ ଥିଲା । ସେ ଫେରିବାରୁ ତାକୁ ଡାକି ନେଇ ଆସୁଛି ।" ଜିନିଷ ପତ୍ର ସବୁ ରିକ୍ସାରେ ଲଦିଦେଇ ମକୁ କହିଲା—''ଯାଅ ସାନବାବୁ, ତମେ ପଳେଇ ଯାଅ । ମୁଁ ପଛେ ପଛେ ଯାଉଛି ।"

ସୁଦାମ ସୁମତିଙ୍କୁ ରିକ୍ସାରେ ବସିବାକୁ ଇଶାରା କରି ମକୁ ଦାଦାକୁ କହିଲେ—''ନାଇଁ ମକୁଦାଦା । ଜିନିଷ ପତ୍ର ନେଇ ତମ ବୋହୂ ରିକ୍ସାରେ ଚାଲି ଯାଆନ୍ତୁ । ଆମେ ଚାଲି ଚାଲି ଯିବା । ମୋର ଆଜି ଗାଁ ଦାଣ୍ଡରେ ଚାଲି ଚାଲି ଯିବାକୁ ଇଚ୍ଛା ହେଉଛି ।" ପୁଣି କିଛି ସମୟ ରହି ସେ କହିଲେ—''ଗାଁ ତ ପୂରା ବଦଳି ଯାଇଛି ମକୁଦାଦା ।"

"ଗାଁ କଥା ବୁଝହନା ବାବୁ ।" —ଚପା ଗଳାରେ କହିଲା ମକୁ । "ଆଗ ଗାଁ କଣ ଏବେ ଆଉ ଅଛି ? ଏବେତ......

"ରୁହ ବାବୁ । ତମେ ତ ଆସି ଗଲଣି । ଏବେ ସବୁ ଜାଣିବନି କ ।"

ଏତକ କହି ମକୁ ଧନଆ ଆଡ଼କୁ ଚାହିଁ କହିଲା ।—''ଯା' ଧନଆ, ରିକ୍ସା ନେଇ ଠିକ୍ ଜାଗାରେ ପହଂଚାଇ ଦେବୁ ।" ପୁଣି ସୁମତିଙ୍କୁ କହିଲା— ''ଯାଅ ବୋହୂ ! ତମ ଖୁଡ଼ୀକୁ ପିଣ୍ଡାରେ ବସାଇ ଦେଇ ଆସିଛି ।"

ରିକ୍ସା ସୁମତୀଙ୍କୁ ନେଇ ଆଗକୁ ଚାଲିଗଲା । ମକୁ ଚାହିଁଲା ସୁଦାମଙ୍କ ଆଡ଼େ । "ଚାଲ ସାନବାବୁ ! ଠିଆ ହୋଇ ରହିଲ ଯେ !" ସୁଦାମ ଚାଲିବାକୁ ଲାଗିଲେ । ଯାଉ ଯାଉ ହଠାତ ମକୁ ପାଖକୁ ଲାଗି ଆସି କହିଲେ—"ମକୁ ଦାଦା ! ଗାଁ କଥା କ'ଣ କହୁଥିଲ ? କ'ଣ ହୋଇଛି !"

ମକୁ ଚାରିଆଡ଼କୁ ଚାହିଁଲା । ପୁଣି ଚୁପ୍‌ଚାପ୍ କହିଲା—" ବୁଝିଲ ବାବୁ, ଗାଁ ଆଉ ଭଲ ମଣିଷଙ୍କ ରହିବା ଯାଗା ହୋଇ ନାହିଁ । ଏତେ ଦିନ ସହରରେ ରହିଲ । ଯାଗା ବାଡ଼ି ଖଣ୍ଡେ କିଣିଲନି । ଶେଷରେ ଏଇ ଗାଁ ଭିତରେ ଘାଣ୍ଟି ହେବାକୁ ଚାଲି ଆସିଲ ? ରମାନାଥ ବାବୁଙ୍କୁ ନାକେଦମ୍ କରି

ଦେଲେଣି ଏ ଗାଁ ଲୋକେ ।"

"ରମାନାଥ ବାବୁ କ'ଣ ଗାଁ ରେ ରହୁଛନ୍ତି ?" ସୁଦାମ ପଚାରିଲେ ।
"ହଁ ସାନବାବୁ । ସେ ଏବେ ଗାଁ ରେ ।" -- ଉତ୍ତର ଦେଲା ମକୁ । "ହଁ କାଲି ତାଙ୍କ ସହ ଦେଖା ହୋଇଥିଲା । ସେ ଆସିବେ ବୋଲି କହୁଥିଲେ ତମ ପାଖକୁ । ତମେ ଆସିବ ବୋଲି ମୁଁ ତାଙ୍କୁ କହୁଥିଲି ।"

ସୁଦାମ ଚୁପ ରହିଲେ । ପୁଣି ପାଦ ବଢ଼ାଇଲେ ଗାଁ ଭିତରକୁ । ମନ ଭିତରଟା ତାଙ୍କର କେମିତି ଏକ ଅସ୍ୱସ୍ତିର ଧୂଆଁ ରେ ଧୂମାୟିତ ହେବାକୁ ଲାଗିଲା । ତା ହେଲେ କ'ଣ ବାପାଙ୍କ ଅନୁମାନ ସତ ହୋଇଛି ? ଗାଁ ନଷ୍ଟ ହୋଇ ଯାଇଛି । ରମାନାଥ ବାବୁଙ୍କୁ ସେ ଭଲ ରୂପେ ଜାଣନ୍ତି । ବାପାଙ୍କ ମରିବା ପରେ ସୁଦାମ ଗାଁ ସହ ଏକ ରକମ ସମ୍ପର୍କ ତୁଟେଇ ଦେଇଥିଲେ । ହେଲେ ରମାନାଥ ବାବୁ ମଝିରେ ମଝିରେ ଗାଁ କୁ ଆସୁଥିଲେ । ସୁଦାମ ଏ ଖବର ବି ପାଇଛନ୍ତି ଯେ ଗାଁରେ ହାଇସ୍କୁଲ ଗଢ଼ିବା ପାଇଁ ସେ କଲିକତାରୁ ଛୁଟି ନେଇ ଗାଁ ଗାଁ ଘର ଘର ଚାନ୍ଦା ପାଇଁ ବୁଲିଛନ୍ତି । ତାଙ୍କର ଉଦ୍ୟୋଗ ଓ ଚେଷ୍ଟାରେ ଗାଁରେ ହାଇ ସ୍କୁଲ ଗଢ଼ି ଉଠିଛି । କେମିତି ସ୍ୱୀକୃତି ପାଇବ, ଅନୁଦାନ ପାଇବ, ସେ ସବୁ ପାଇଁ ନିଜର ସମସ୍ତ ଓ ଅର୍ଥ ବ୍ୟୟରେ ଆପଣା ଚେଷ୍ଟା କରିବାଟାକୁ ଯେମିତି ରମାନାଥ ନିଜର କର୍ତ୍ତବ୍ୟ ବୋଲି ଭାବି ନେଇଥିଲେ ।

ସେହି ରମାନାଥ ବାବୁଙ୍କୁ ଗାଁ ର ଲୋକେ ନାକେଦମ୍ କରିଦେଲେଣି । ମକୁଦାଦା କ'ଣ ସତ କହୁଛି ? ଅବିଶ୍ୱାସର ଏକ ଶିକଏ ଚରିଗଲା ସୁଦାମଙ୍କର ସମସ୍ତ ଶରୀର ଓ ମନରେ । ମକୁଦାଦା କିଛି ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରୁ ଏମିତି କହୁଥାଇ ପାରେ ! ତରଇନ ମୋ ଜମି ବାଡ଼ିର ମାଲିକ ହୋଇ ରହିବାର ଅଭିଳାଷ ହୁଏତ ତା'ର ଚରିତାର୍ଥ ହୋଇ ପାରିଲାନି ।

ଅନେକ ଅଜଣା ସନ୍ଦେହ ସୁଦାମଙ୍କ ମନକୁ ବିଷାକ୍ତ କରି ପକାଇଲା । ସେ କିଛି ନ କହି ଚୁପ୍ ଚାପ୍ ଆଗେଇ ଚାଲିଲେ । "ସାନବାବୁ ଏମିତି ଚୁପ୍ ହୋଇ ଗଲ ଯେ ?" ମକୁ ନୀରବତା ଭଙ୍ଗ କରି କହିଲା,—"ଗାଁ କଥା ପଚାରୁ ଥିଲ ପରା ବାବୁ ? କାନ ଡେରିଲ । କିଛି ଶୁଭୁଛି ?"

ସୁଦାମ କାନଡେରି ଶୁଣିଲେ, ଦୂରରେ କୋଉଠି ଝାଞ୍ଜ କରତାଳ ଆଦିର ବାଜଣା ଶୁଭୁଛି । "ହଁ କୋଉଠି କୀର୍ତ୍ତନ ହେଉଛି । କ'ଣ ହେଲା ?" -ଉଦାସୀନ ସ୍ୱରରେ ପଚାରିଲେ ସୁଦାମ । "କୀର୍ତ୍ତନ ନୁହେଁ ବାବୁ, ସେ ହେଉଛି ମଙ୍ଗଳ ମେଳା"—ଟିକିଏ ହସି କହିଲା ମକୁ । ମଙ୍ଗଳ ବାର ଦିନ ଏଠି ମଙ୍ଗଳ

ମୈଳା ହୁଏ ଥାନ୍ତି ସ୍କୁଲେ ଗଞ୍ଜେଇ ଟଣା, ଭାଙ୍ଗ ଖିଆ, କେତେବେଳେ ପୁଣି ମଦମାଂସ । ଏମାନେ କୁଆଡ଼େ ଗୋଟେ ଗୋଟେ ଭକ୍ତ । ପଇସା ସବୁ କୋଉଠୁ ଆସେ ଜାଣିଛ ? ସରପଞ୍ଚ ବାବୁଙ୍କ ତହବିଲରୁ । ସରପଞ୍ଚ ବାବୁ ପଇସା ଆଦାୟ କରନ୍ତି କଣ୍ଟ୍ରାକ୍ଟର ମାନଙ୍କଠୁ । ଧନୀ ସାହୁ, ବଇଦା ପଣ୍ଡିଦାସ, ଶୁକ ମହାନ୍ତି ସବୁ କଣ୍ଟ୍ରାକ୍ଟର ଜାତ ସରପଞ୍ଚ ବାବୁଙ୍କ ପାଖ ଲୋକ ।

"ସରପଞ୍ଚ ଏବେ କିଏ ? ଈଶ୍ୱର ବାବୁ ନୁହନ୍ତି କି ?" ଆଗ୍ରହୀ ହୋଇ ପଚାରିଲେ ସୁଦାମ ।

"ଈଶ୍ୱର ବାବୁଙ୍କୁ ଆଉ ଭୋଟ ଦେବ କିଏ ସାନାବାବୁ ? ସିଏତ ଏବେ ମାତ ପାଂଜରୁ ଗଲେଣି । ଦଳେଇ ପ୍ରଧାନ ଏବେ ସରପଞ୍ଚ । କଲିକତାରେ ଚଟକଲରେ କାମ କରୁଥିଲା । ସେଠି ନେତାଗିରି କଲା । ବଙ୍ଗାଳୀଙ୍କଠୁ ମାଡ଼ ଖାଇ ଗାଁ କୁ ପଳାଇ ଆସିଲା । ସେ ଆସିବା ଦିନଠୁ ଗାଁଟା ନଷ୍ଟ ହୋଇ ଗଲାବୋଲି ଜାଣ । "ତାହିଁକି ସେ କ'ଣ କଲା କି ? ସେତ ସେମିତିକା ସ୍ୱଭାବ ନଥିଲା ?" ମନୁ କଥାରେ କିଛି ବିଶେଷ ରୁଚି ନଥିଲା ଭଳି ପଚାରିଲେ ସୁଦାମ ।

"ସେ ବେଳର ଦଳେଇ ପ୍ରଧାନ ହୋଇ ସେ ଆଉ ନାହିଁ । ସେତେ ବେଳେ ସିନା ମାଛକୁ ମଛ ବୋଲି କହୁ ନଥିଲା । ହେଲେ କଲିକତାରୁ ଫେରି ସରପଞ୍ଚ ହୋଇଗଲା ପରେ ଏବେ ସେ ମାଙ୍କଡ଼ ପାଲଟିଛି ସାନବାବୁ—ମାଙ୍କଡ଼ ପାଲଟିଛି । ଚାଷୀ ମାନଙ୍କ ବାଡ଼ିରେ ନାଉ, କଖାରୁ କି ବାଇଗଣ ଉପୁଜିଟିଏ ହେଲେ ସେ ମାଙ୍କଡର ।"

ସୁଦାମ ଓ ମନୁ ଗାଁ ମଝି ଶିବ ମନ୍ଦିର ପାଖରେ ପହଞ୍ଚି ଯାଇଥିଲେ । ଶିବ ମନ୍ଦିରର ବାମ ପଟେ ଥିଲା ଗାଁର ପୁରାତନ ସଂସ୍ଥା ଗ୍ରାମମଙ୍ଗଳ ସମିତି । ଏ ସଂସ୍ଥା ସୁଦାମଙ୍କ ଜେଜେ ବାପାଙ୍କ ଅମଳରୁ ପ୍ରତିଷ୍ଠିତ । ଏହା ଏକ ରେଜିଷ୍ଟ୍ରି ଭୁକ୍ତ ସଂସ୍ଥା ଥିଲା । ଗାଁ ର ପ୍ରତ୍ୟେକ ବ୍ୟକ୍ତି ଥିଲେ ଏହାର ସଦସ୍ୟ । ସମ୍ପନ୍ନ ଲୋକମାନଙ୍କର ଦାନ ଓ କିଛି ସରକାରୀ ସାହାଯ୍ୟ ଥିଲା ଏହାର ଆର୍ଥିକ ସାଧନ । ସେଇ ଅର୍ଥରେ ଗାଁରେ ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟକରା ଯାଉଥିଲା । ଗାଁ ର ପ୍ରତ୍ୟେକ ବ୍ୟକ୍ତିର ସମସ୍ୟା ବିଷୟରେ ଏ ସମିତି ବିଚାର କରୁଥିଲା । ସବୁ ରବିବାର ସନ୍ଧ୍ୟାରେ ଗାଁର ଲୋକମାନେ ଏକତ୍ର ହେଉ ଥିଲେ ଓ ସାମୂହିକ ପ୍ରାର୍ଥନା ହେଉଥିଲା । ପ୍ରାର୍ଥନା ପରେ ବୟୋଜ୍ୟେଷ୍ଠ ଲୋକଙ୍କ ଦ୍ୱାରା ଶାସ୍ତ୍ର ପ୍ରବଚନ ପାଠ ଓ ଆଲୋଚନା ହେଉଥିଲା । ଶିବ ମନ୍ଦିର ପାଖରେ ପହଞ୍ଚି ପ୍ରଥମେ ସୁଦାମ ଗ୍ରାମ ସମିତିର ଘର ଆଡ଼େ ଚାହିଁଲେ । ଏ କ'ଣ ? ସେଠି ଗୋଟାଏ, ବିରାଟ ସାଇନବୋର୍ଡ ଝୁଲୁଥିଲା—"ଡୋସାନ ସେନା" ଓ ତାର ଉପରେ ଗୋଟାଏ ବଡ଼ ବିଜୁଳି ବଲ୍ବ ଜଳୁଥିଲା ।

ଆଶ୍ଚର୍ଯ୍ୟର ସହ ସୁଦାମ ପଚାରିଲେ "କହୋ ମକୁଦାଦା, ଏବେ ଗ୍ରାମ ମଙ୍ଗଳ ସମିତି କୋଉଠି ହେଉଛି କି ?"

"ଗ୍ରାମ ମଙ୍ଗଳ ସମିତି କ'ଣ ଆଉ ଅଛି ?" ମକୁ ସୁଦାମଙ୍କ ପାଖକୁ ଲାଗି ଆସି ଚୁପ ଚୁପ କହିଲା । "ସବୁ ଏଇ ଦଳେଇ ପୁଅଙ୍କର ପାପ । ଦିନେ ସକାଳେ ଦେଖିଲା ବେଳକୁ ଏଠି ଏଇ ସାଇନ୍ ବୋର୍ଡ ମରାଯାଇଛି, ଆଉ ଗାଁର ଭେଣ୍ଡିଆ ସବୁ ଏ ଘର ଦଖଲ କରି ଏଠି କୁସ୍ତି କସରତ କରୁଛନ୍ତି ।"

"ଗାଁ ଲୋକେ ସେ'ର ପ୍ରତିବାଦ କଲେନି ?" ସୁଦାମ ପଚାରିଲେ । "କଲେନି କାହିଁକି ? କଲେ । କେତେଥର ସାହି ସାହିରେ ମିଟିଂ ହେଲା । ହେଲେ ଝଲେଇ ବେକରେ ଘଣ୍ଟି ବାନ୍ଧୁଛି କିଏ ? ପୋଲିସରେ ଦେଲେ । ହେଲେ ପୋଲିସବାଲା ସରପଂଚ ଠାଁ ପଇସା ପକେଇ ବସିଗଲେ । ତା' ପରେ ସରପଂଚ ହାତରେ ଲୋକ ବେଶି । ଦରକାର ପଡ଼ିଲେ ସବୁ ଠେଙ୍ଗା ବାଡ଼ି ଧରି ବାହାରି ଆସିବେ । ଏ ବୃନ୍ଦାଜାକ କରିବେ କ'ଣ ? କିଏ ଅଛି ଏମାନଙ୍କର ଗାଁ ରେ ? ସୁଅ ପୁରୁଷ ସବୁ ଯିଏ ଯୋଉଠି ଚାକିରି କରୁଛନ୍ତି ।"

"ତେବେ ଏଠି କୁସ୍ତି କସରତ କରୁଛନ୍ତି କିଏ ?"

"ଯେଉଁମାନେ କୋଉଠି କିଛି ନପାଇଲେ । ପରୀକ୍ଷାରେ ଫେଲ ହେଲେ ସେଇ ସବୁତ ସରପଂଚ ଚେଲା ।"

"କ'ଣ କରୁଛନ୍ତି ଏମାନେ ଏଠି ?"

"କରିବେ ଆଉ କ'ଣ ? ଦଙ୍ଗା ହେଙ୍ଗାମ, ମାରପିଟ୍, ଗୁଣ୍ଡା ଏଇ ସବୁ । ସମସ୍ତଙ୍କର ଗୋଟାଏ ଗୋଟାଏ ତେଲ ଦିଆ ଠେଙ୍ଗା । ଗ୍ରାମ ମଙ୍ଗଳ ସମିତିରେ ଯୋଉ ଆଲମିରାରେ ଶାସ୍ତ୍ର ପୁରାଣ ରହୁଥିଲା, ସେଥିରେ ଏବେ ମଦବୋତଲ ରହୁଛି । ଏଇ ମାନଙ୍କ କଥାରେ ଏବେ ଗାଁ ଚାଲିଛି ।"

ସୁଦାମ ଏକ ଦୀର୍ଘଶ୍ୱାସ ପକାଇ ଆଗକୁ ପାଦ ବଢ଼ାଇଲେ । ଚମିନି ନଥିବା ନିଭୁଜ କୋଠରୀ ର ଧୂଆଁ ପରି ଏକଥା ତାଙ୍କର ଗୋଳେଇ ଘାଣ୍ଟି ହେବାକୁ ଲାଗିଲା । ମକୁଦାଦାର କଥାର ଯଥାର୍ଥତା ସେ ଏବେ ଠିକ୍ ବୁଝି ପାରୁଥିଲେ । ହେଲେ ସେ କ'ଣ ଭୁଲ କଲେ ଗାଁ କୁ ଫେରି ଆସି ? କାଲି ପୁଅ ଲକ୍ଷ୍ମୀକାନ୍ତ ଚିଠିରେ ସବୁ ଜିନିଷ ପତ୍ର ଧରି ଆସି ପହଂଚିବ । ସେ ଯେତେବେଳେ ଏ ସବୁ କଥା ଶୁଣିବ ଆମକୁ ଏକୁଟିଆ ଗାଁ ରେ ଛାଡ଼ି ଯିବାକୁ କ'ଣ ରାଜି ହେବ ? ବାର ବାର ସେ ମନା କରୁଥିଲା ଗାଁ କୁ ଫେରି ଯିବାକୁ । ସୁଦାମ ବିବ୍ରତ ହୋଇ ପଡ଼ିଲେ ।

ଘରେ ପହଂଚ ସୁଦାମ ଗୁମ୍ ମାରି ବସିଗଲେ । ସୁମତି ସୁଦାମଙ୍କ ଉଦାସ

ଦେଖି କିଛି ବୁଝି ନ ପାରି ପଚାରିଲେ— "କ'ଣ ଗାଁ ରେ ପହଂଚ ଏତେ ଖୁସି ହେଉଥିଲ ? ପୁଣି କ'ଣ ହେଲା ? ଏମିତି ଉଦାସ ହୋଇଗଲ ଯେ ।"

ସୁଦାମ ଚୁପ ରହିଲେ । କିଛି ସମୟ ପରେ ଏକ ଦୀର୍ଘଶ୍ୱାସ ଛାଡ଼ି କହିଲେ । "ଗାଁ କୁ ଅସି କ'ଣ ଆମେ ଠିକ୍ କଲେ ସୁମତି ?"

"କାହିଁକି କ'ଣ ହେଲାକି ?" ସୁମତି ପଚାରିଲେ ।

ସୁଦାମ କ'ଣ କହିବାକୁ ଯାଉଥିଲେ ଏହି ସମୟରେ କବାଟରେ ଠକ୍ ଠକ୍ ଶବ୍ଦ ହେଲା । ସୁମତି ଯାଇ କବାଟ ଖୋଲିଲେ । "କ'ଣ ସୁଦାମ, ଭଲରେ ଭଲରେ ଆସି ପହଂଚିଲତ ?" ଘରଭିତରକୁ ପଶି ଆସୁ ଆସୁ କହିଲେ ରମାନାଥ ବାବୁ ।

"ଆରେ ରମା ଭାଇନା, ଆସ ଆସ । ମୁଁ ଶୁଣିଥିଲି ତୁମେ ରିଟାୟାରମେଣ୍ଟ ପରେ ଗାଁରେ ଅଛ ବୋଲି । କ'ଣ ସବୁ ଭଲତ ?" ସୁମତିଙ୍କୁ ଇଶାରା କରି ସେ ଚୌକୀ ବଢ଼ାଇ ଦେଲେ ରମାନାଥ ବାବୁଙ୍କ ଆଡ଼କୁ ।

"ହଁ ଭଲ ମନ୍ଦ ଆଉ କ'ଣ ? ମୁଁ ତ ଗାଁ ଛାଡ଼ି ଦେଉଛି ସବୁ ଦିନ ପାଇଁ । ଜମି ବାଡ଼ି ସବୁ ବିକ୍ରୀ କରିଦେଲି । ଘର ଖଣ୍ଡିକ ପଡ଼ି ରହିଥିବ ।" ଚୌକୀରେ ବସୁ ବସୁ କହିଲେ ରମାନାଥ ବାବୁ ।

ଗାଁ ଛାଡ଼ି ଦେଉଛ ? କାହିଁକି ?" ସୁଦାମ ପ୍ରଶ୍ନ କଲେ । "ମଙ୍ଗୁଦାଦା ଠାରୁ ତୁମ ବିଷୟରେ ଶୁଣିଥିଲି । ହେଲେ ଗାଁ ଛାଡ଼ିବା କଥାତ ସେ କହି ନଥିଲା ।"

"ସେ ଜାଣି ନଥିବ ।" ରମାନାଥ ବାବୁ କହିଲେ—"କାଲି ସକାଳ ଆସିବ ଆମକୁ ନେବାପାଇଁ । ଗାଁ ରେ ରହିବାର ବହୁତ ଇଚ୍ଛାଥିଲା , ହେଲେ ଗାଁ ର ପରିସ୍ଥିତି ଭଲ ଲୋକଙ୍କ ରହିବା ଭଳି ହୋଇ ଆଉ ନାହିଁ । ତିନି ବର୍ଷ ହେଲା ମୁଁ ସଂଘର୍ଷ କରି ଆସୁଛି ଟିକିଏ ଶାନ୍ତିରେ ରହିବା ପାଇଁ । ହେଲେ ଶେଷରେ ବାଧ୍ୟ ହୋଇ ଗାଁ ଛାଡ଼ିବାକୁ ଠିକ୍ କଲି ।"

ସେଇ ମାଙ୍କଡ଼ ମାନଙ୍କ ପାଇଁ ତ ମୁଁ ଗାଁ ଛାଡ଼ୁଛି ।" ରମାନାଥ ଗମ୍ଭୀର ହୋଇ କହି ଉଠିଲେ—"ସେଇ ମାନଙ୍କୁ ଶ୍ରଦ୍ଧା ଦେବନି ବୋଲି ମନା କରିବାରୁ ତ ମୋ'ର ସେମାନଙ୍କ ସହ ସଂଘର୍ଷ ଆରମ୍ଭ ହେଲା । ମୁଁ ପଚାରିଲି ଶ୍ରଦ୍ଧାରେ କ'ଣ ହେଉଛି ଜାଣିଲେ ଶ୍ରଦ୍ଧା ଦେବି । ସେଇଦିନ ମୋ ଘରୁ ସବୁ ଜିନିଷ ପତ୍ର ଚୋରୀ ହୋଇଗଲା । ମୋ ସ୍ତ୍ରୀକୁ ଧକା ମାରି ଯେଉଁମାନେ ଚୋରୀ କରି ନେଇ ପଳେଇଲେ, ସେମାନଙ୍କୁ ମୁଁ ଭଲ ଭାବରେ ଦେଖିଥିଲି । ସରପଂଚଙ୍କୁ କହିଲି । ସେ କହିଲେ ଆମ ଗାଁ ର ସବୁ ଖବର ଚୋଫାନୀ ସେନା ବୁଝୁଛି । ତା ମାଧ୍ୟମରେ ମୋ ପାଖକୁ ଆସନ୍ତୁ । ପୋଲିସରେ ଏତଲା ଦେଲି । ଥାନା ଇନ୍

ଘୁର୍ଣ୍ଣ ଅଙ୍ଗିସର ଫର୍ମାଲ୍ ଏତଲ୍ ଇନ୍‌କ୍ୱାଶ୍ରରେ ଆସି ପୁଣି ସରପଂଚଙ୍କ ନିର୍ଦ୍ଦେଶ ରେ ଚୁପ୍ ହୋଇଗଲେ । କହିଲେ ସରପଂଚଙ୍କୁ କହନ୍ତୁ । କଥାଟା ଠିକ୍ ଜଣା ପଡ଼ିବ । ଶେଷରେ ଗାଁ ସ୍କୁଲରେ ଶିକ୍ଷକ ଓ ଡ଼ାକ୍ତରଖାନାର ଡ଼ାକ୍ତରଙ୍କୁ କହିଲି । ସେମାନେ ମୋତେ ଉପଦେଶ ଦେଲେ—"ଆପଣ ତୋଫାନୀ ସେନାକୁ ଘୃଣା ଦେଇ ହଅନ୍ତୁ ନା, କଥା ଛୁଡ଼ିଯିବ । ପାଣିରେ ଘର କରି କୁମ୍ଭୀର ସହ ଶତ୍ରୁତା କ'ଣ ଚଳିବ ? ଏବେ ତୁମେ କୁହ ଏ ଗାଁରେ କେମିତି ମଣିଷ ରହିବ ? ଗୋଟିଏ ଘଟଣା ନୁହେଁ, ଏଇମିତି ଅନେକ ଘଟଣା ।"

ସୁଦାମ ଚୁପ୍ ହୋଇ ବସି ରହିଲେ କିଛି ସମୟ । କ'ଣ କହିବେ କିଛି ଭାବି ପାରିଲେନି । ଅନେକ ସମୟ ପରେ କ୍ଷୀଣ ସ୍ୱରରେ କହିଲେ—"ରମା ଭାଇନା, ଅନେକ ଆଶା ନେଇ ମୁଁ ଗାଁକୁ ଫେରି ଆସିଥିଲି । ଗାଁ ସବୁର ସ୍ଥିତି ଏବେ ଭଲ ନୁହେଁ ବୋଲି ଶୁଣିଥିଲି, ପଢ଼ିଥିଲି, ହେଲେ ପ୍ରତ୍ୟକ୍ଷ ଅନୁଭୂତି ନଥିଲା । ତୁମଠାରୁ ଏ ସବୁ ଶୁଣି ମୋ' ମୁଣ୍ଡ ଖରାପ ହୋଇ ଯାଉଛି । ଏ ସବୁର କ'ଣ କିଛି ସମାଧାନ ନାହିଁ ?"

"ପଳାୟନ ସୁଦାମ ପଳାୟନ । ଗାଁ ଲୋକେ ମରନ୍ତୁ ବା ବଂଚନ୍ତୁ, ଆମକୁ ବଞ୍ଚିରହିବା ପାଇଁ ହେଲେ ଏଠୁ ଗ୍ରାମ ଛାଡ଼ିଯିବା ଛଡ଼ା ଆଉ ଆନ୍ୟ ଉପାୟ ନାହିଁ ।" ରମାନାଥ ବାବୁ ଏକ ନିଶ୍ୱାସରେ କହି ପକାଇଲେ ।

ସଙ୍ଗେ ସଙ୍ଗେ ସୁଦାମ କହି ଉଠିଲେ—"ହେଲେ ଆମେ କ'ଣ ଏଇ ଦୁଷ୍ଟ ଦୁର୍ବୃତ୍ତ ମାନଙ୍କ ପାଇଁ ଗାଁ ଛାଡ଼ି ସହର ପଳେଇ ଯିବା ? ସହରରେ କ'ଣ ସମସ୍ୟା ନାହିଁ ? ତା' ପରେ ଆମେ ସିନା ଚାଲିଯିବା, ହେଲେ ମଜୁରିଆ ଗରିବ ନିରୀହ ଲୋକ ମାନଙ୍କ ସ୍ଥିତି କ'ଣ ହେବ ? ସେମାନେ କୁଆଡ଼େ ଯିବେ ।"

ହଠାତ୍ ବାହାରେ ପାଟି ଶୁଭାଗଲା । କେତେକ ଲୋକ ହସି ହସି ବେଦମ ହୋଇ ଯାଉଥିଲେ । ସୁଦାମ ଓ ରମାନାଥ ବାବୁ ବାହାରକୁ ବାହାରି ଆସିଲେ । ଶୁଣିଲେ ବାଡ଼ିରେ ପଶି କଖାରୁ ଖାଇ ଯାଉଥିବା ବେଳେ ନାଥ ସାହୁ ଦନେଇ ପ୍ରଧାନର ମାଙ୍କଡ଼କୁ ପିଟିଥିଲେ । ଏଣୁ ଦନେଇ ପ୍ରଧାନ ତା' ଉପରେ ରାଗି ଯାଇଥିଲା । ଆଜି 'ତୋଫାନୀ ସେନା' ବିଚାର କରି ଜଣେଇ ଦେଇଛି ଯେ ମାଙ୍କଡ଼ର ଚକିତ୍ସା ପାଇଁ ନାଥ ସାହୁ ଠାରୁ ଦୁଇଶହ ଟଙ୍କା ଜୋରି ମାନା ଆଦାୟ କରାଯିବ ।

"ସୁଦାମ ଚକ୍କାର କରି ଉଠିଲା ଯତେ ଯେମିତି କିଏ ବାରୁଦ ଗଦାରେ ନିଆଁ ଫିଙ୍ଗି ଦେଇଛି ।

"ନାଁ ନାଁ ନାଥସାହୁ ଜୋରିମାନା ଦେବନି । ଏମିତି କାର୍ଯ୍ୟ ନ୍ୟାୟ

ନୁହେଁ ।

ପୁଣି ଟିକଏ ରହି କହିଲା—"ଗମା ଭାଇନା, ତୁମେ ଗାଁ ଛାଡ଼ିବାକୁ ନିଷ୍ପତ୍ତି କରି ସାରିଲଣି । କିନ୍ତୁ ମୁଁ ଆସିଛି ଗାଁରେ ରହିବା ପାଇଁ ।

□ ହରୀ ବରାଳ
ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ
ବାରିପଦା ( ମୟୂରଭଞ୍ଜ )

---

● ନାଥାନିଏଲ ହଥର୍ନ ଜଣେ ବଡ଼ ଲେଖକ । ସେ ମଣିଷ ହୋଇ ପାରିବେ କି ନା, ସେଥିପାଇଁ ତାଙ୍କ ମା ବହୁତ ଚିନ୍ତା ଭାବନା କରୁଥିଲେ । ପୁଅ ଡାକ୍ତର ହେବ ନା ଓକିଲ, ପାଦ୍ରୀ ? କଣ ହେଲେ ପୁଅର ଭବିଷ୍ୟତ ଉଜ୍ଜ୍ୱଳ ଓ ନିଷ୍କଣ୍ଟକ ହେବ, ସେଥି ପାଇଁ ତାଙ୍କ ମା'ଙ୍କର ବହୁତ ଦୁର୍ଭାବନା ଥିଲା । କେଉଁ ଦେଶର ବାପା ମାଆ ଭଲ ଚାହାଁନ୍ତି ଯେ ତାଙ୍କ ପୁଅ ଜଣେ ଲେଖକ ହେଉ । ସେଟା ଗୋଟାଏ କଣ ଜୀବିକା ନା ପେଷା ? ସେଥିରେ କଣ ଉଦର ଭର୍ତ୍ତି ହେବ ? ଲକ୍ଷ ଲକ୍ଷ ପିଲାମାନେ ଲେଖକ ହେବାକୁ ଯାଇ ନିଜ ଜୀବନକୁ ନଷ୍ଟ କରି ଦେଇଛନ୍ତି, ତାର ଇୟତ୍ତା ନାହିଁ । ଲକ୍ଷେ ଭିତରେ ହୁଏତ ଜଣେ ଲେଖକ ହୋଇ ଠିଆ ହୋଇଗଲା । ସେ ପୁଣି କେତେବେଳେ ? ଯେତେବେଳେ ବୟସ ପ୍ରାୟ ଶେଷ ହୋଇ ଆସେ, ସେତିକିବେଳେ । କମ୍ ବୟସରେ ଉପନ୍ୟାସ ଲେଖି କେହି କଣ ଖ୍ୟାତି ଅର୍ଜନ କରିଛି ? ଯଦିବା କେହି ନାଆଁ କରିଛି, ସେଇଟା ଦୁଇ ଦିନ ପାଇଁ । ତୁମର ଯେତେବେଳେ ବୟସ ବଢ଼ିବ, ପୃଥିବୀ ସେତେବେଳେ ତୁମକୁ ଭୁଲି ଯାଇଥିବ । ତୁମେ ସେତେବେଳେ ପ୍ରତି ଲୋକଙ୍କ ଆଗରେ କହିବ—ଆରେ ମୁଁ ବି ଦିନେ ଲେଖକ ଥିଲି, ଦିନେ ମୋର ବି ଭାରି ନାଆଁ ଥିଲା ।

ହଥର୍ନଙ୍କର ଚିଠି ଆଜି ବି ରହିଛି । ସେଇ ଚିଠି ସେ ତାଙ୍କ ମାଙ୍କୁ ଲେଖିଥିଲେ ।

ସେ ଲେଖିଥିଲେ— I do not want to be a doctor and live by man's diseases ; nor a minister to live by their sins ; nor a lawyer and live by their quarrels . So I don't see there is anything left for me but to be an author. ●

ମା'ବାପାଙ୍କ ଯତ୍ନ ହେପାଜତରେ ଶିଶୁ ବଢ଼ିଲାପରି ଓଡ଼ିଆ ସାହିତ୍ୟ ବଢ଼ୁଛି । କିନ୍ତୁ ଏଇ ଶିଶୁ କାଲି ବଡ଼ ହୋଇଯିବ ଠିକ୍ ଆମରି ପରି । ତା' ପୃଥିବୀ ଭିନ୍ନ ହୋଇଯିବ । ହୃଦୟ ତାର ପୂରିଯିବ ଛନ୍ଦ କପଟରେ ।

ସାହିତ୍ୟ କଣ ସେହିପରି ? ପ୍ରତିବର୍ଷ ପୁସ୍ତକ ମେଳା ବସୁଛି । ମନ୍ତ୍ରୀ ଉଦ୍‌ଘାଟନ କରୁଛନ୍ତି । କିନ୍ତୁ ପାଞ୍ଚବର୍ଷରେ ପାଞ୍ଚଖଣ୍ଡ ନୂଆ ବହିର ମୁହଁ ଦିଶୁନାହିଁ । ଯେଉଁମାନେ ପ୍ରତିଷ୍ଠିତ ଏବଂ ପଦବୀଧାରୀ ତାଙ୍କର ଦଶଅବତାର ଦେଖାଯାଉଛି । କେଉଁ ବହିର ପୁନଃ ପ୍ରକାଶନ ହୋଇ ସାରିଲାଣି ।

ପୋଷାକ ଉପରେ ପିଣ୍ଟୁ କ୍ରୁଦ୍ଧ ହେଲାବେଳେ ନରମ ପାଦଚିହ୍ନ ଦଇଟି ସ୍ମୃତି ଭଳି ସାଇତି ରଖିବାକୁ ଇଚ୍ଛା ହେଉଥିଲା । ପିଣ୍ଟୁର ପରିସ୍ରାକନାକୁ ଆଦରରେ ଜାକି ଧରିଥିଲେ ମା' ବାପା । ସେଦିନର ପୃଥିବୀ ବଦଳି ଗଲା ପଦବୀଧାରୀ ସାହିତ୍ୟ ପରି ।

ଏମ୍. ପି. ଜଣକ ନିଜ ଗାଁ ପାଖରେ ଖୋଲିଥିବା ରେଲ୍‌ୱେଷ୍ଟେସନ ଯେପରି ରେଳବାଇ ବେମାଉକ ଆଚରଣର ସଂଶୋଧନ କରିପାରି ନାହିଁ, ସାହିତ୍ୟ କଥାଟି ଠିକ ସେଇପରି............

## କାହାଣୀ ॥ ପିଣ୍ଟୁର ପାଦଚିହ୍ନ ॥ ଶଶିରଥ

---

ବର୍ଗ ଭିତରକୁ ପଶି ଆସିଲେ ଭଦ୍ରଲୋକ. ଖୁବ୍ ତରତରରେ । ଯେମିତି ଟ୍ରେନ୍ ଗୁଡ଼ଦେବ ବା ବସିବା ପାଇଁ ଟ୍ରେନ୍‌ରେ ସିଟ୍ ମିଳିବ ନାହିଁ, ସେମିତି । ଡାହାଣ ହାତରେ ଗୋଟେ ଭି. ଆଇ. ପି ଜେଟ୍ ଷ୍ଟାର ଅଟାଚି । ବାଁ କାନ୍ଧରେ ଝୁଲୁଛି ଗୋଟେ ଏୟାର ବ୍ୟାଗ ଯେ ତାଭିତରେ ସେଇ ଠେକା ଭଡ଼ା ନଣୁଆ ଭୁତାର ଚଳ ଅଛି ଏବଂ ବାଁ ହାତରେ ଗୋଟେ

ବଡ଼ ଲାଇଲନ୍ ବ୍ୟାଗ ଝୁଲୁଛି । ସେଥିରେ ଅଗୁଡ଼ୁ ମାଗୁଡ଼ୁ କିଛି ଜିନିଷ । ଭଦ୍ରବ୍ୟକ୍ତି ଲମ୍ବା ବେଂଚ୍‌ର ଗୋଟିଏ ପାଖକୁ ଅଟାଚି ଓ ବ୍ୟାଗ୍‌ଟା ଥୋଇ ଦେଇ ଲମ୍ବା ନିଶ୍ୱାସ ଟିଏ ମାଇଲେ । ଯେମିତି କି ସେ ଖୁବ୍ ଆଶ୍ୱାସ ହୋଇ ଗଲେ ଏବଂ ଗୋଟେ ବଡ଼ ବୋଝ ତାଙ୍କ ମୁଣ୍ଡରୁ ଖସିଗଲା । ପୁଣି ଭଦ୍ର ଲୋକ ଏମିତି ଭାବରେ ଠିଆ ହୋଇ ରହିଲେ ଯେ ସତେ ଯେପରି ସେ କାହାକୁ ଅପେକ୍ଷା କରୁଛନ୍ତି ।

ବେଂଚର ଝର୍କା ପାଖକୁ ଲାଗି ଗୋଟିଏ ପାଖରେ ମୁଁ ଅନେକ ଆଗରୁ ବସିଥିଲି । ଚାହିଁଲି ବଗିର ପ୍ରବେଶ ଦ୍ୱାରକୁ , କିଏ ଆସୁଛନ୍ତି କି ଆଉ ପଛେ ପଛେ, ଭଦ୍ରଲୋକ ଅପେକ୍ଷାରେ ଠିଆ ହେଲେ ଯେ ?

ସତକୁ ସତ ପଛେ ପଛେ ପ୍ରବେଶ କଲେ ଭଦ୍ର ମହିଳା, ସେମିତି ତର ତର ଭାବରେ । କୋଳରେ ପୁଣି ଦେଢ଼ ବର୍ଷର ଶିଶୁଟିଏ , ସନ୍ତାନଟିକୁ ଭଦ୍ରମହିଳା ଉପସ୍ଥିତ ବେଂଚରେ ଠିଆ କରେଇ ଦେଲେ । ଲଙ୍ଗଳା ଶିଶୁ ପୁଅଟିଏ । ଭଦ୍ର ମହିଳା ନିଜର ଅସ୍ତ ବ୍ୟସ୍ତ ହୋଇଥିବା ଶାଢ଼ୀ ସଜାଡ଼ି ନେଲେ । କେବଳ ଶିଶୁଟିର ଗ୍ରୀବ ଓ ପିଠିକୁ ଲୁଚେଇ ଥିଲା ନ୍ୟାଭିବ୍ଲୁ ରଂଗର ବେବି ଡ୍ରେସର ସାର୍ଟ ଟିଏ । ହୁଏତ ପୁଅଟି ମୂତଦେଇ ପ୍ୟାଣ୍ଟ ଓଦା କରି ଦେଇଛି । ତେଣୁ ମା' ବାଧ୍ୟ ହୋଇ ପ୍ୟାଣ୍ଟଟିକୁ ପୁଅ ଦେହରୁ ବାହାର କରି ଦେଇଛନ୍ତି । ଭଦ୍ରମହିଳା ବି ଆଶ୍ୱାସ ହେଲା ପରି ଦୀର୍ଘ ନିଶ୍ୱାସଟିଏ ମାରିଲେ ସ୍ୱସ୍ତିରେ ।

ଭଦ୍ରଲୋକ ମୋ ସାମନାର ଖାଲି ପଡ଼ିଥିବା ସିଟ୍‌କୁ ଆଙ୍ଗୁଠି ଠାରି କହିଲେ : ସେଇଠି ସେହି ଝର୍କା ପାଖକୁ ବସ ।

: ନା-ନା, ସେପଟେ ବସିଲେ ଭଲ ହେବ । ନହେଲେ ପିଣ୍ଟୁ ଆଖିରେ କୋଇଲା ଗୁଣ୍ଡ ପଡ଼ିବ । ଭଦ୍ର ମହିଳା ଅର୍ଥାତ୍ ପିଣ୍ଟୁର ମା, ପିଣ୍ଟୁ ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ।

ପିଣ୍ଟୁ ବାପା କହିଲେ : ବସୁନ, ବସ ତାହେଲେ ।

ପିଣ୍ଟୁ ସେତେବେଳକୁ ଅନ୍ୟ ଥାକରେ ବସିଥିବା ଆଠ/ନଅ ବର୍ଷର ଦୁଇଟି ଭାଇ ଭଉଣୀଙ୍କ ସହ ଲୁଚକାଳି ଖେଳରେ ମାତି ଯାଇଥାଏ । ଲମ୍ବା ବେଂଚର ଗୋଟିଏ ପାଖକୁ ଧୀରେ ଧୀରେ ଯାଇ ଆର ପାଖକୁ ଭୁଙ୍କି ମାରି ଦେଖେ । କିଛି ସମୟ ପରେ ସେହିଭାଇ ଭଉଣୀ ବାହାରି ଆସନ୍ତି । ପିଣ୍ଟୁ ସେମାନଙ୍କୁ ଦେଖିପାରୁଛି. ଏଇ ଖୁସିରେ ହସି ହସି ଲୁଚିବା ପାଇଁ ବେଂଚର ଅନ୍ୟ ପାଖକୁ ଧାଇଁ ଧାଇଁ ଗୁଞ୍ଜି ଆସେ । ପୁଣି ପାଦ ଚପି

ଚପି ଆର ପାଖକୁ ଯାଏ । ପିଣ୍ଟୁର ଏଇ ଧାଇଁବା ଓ ପାଦଚପି ଫେରିବା ନେଇ, ପିଣ୍ଟୁର ମା ଆହୁରି ବ୍ୟସ୍ତ ହୋଇ ପଡ଼ନ୍ତି : ପିଣ୍ଟୁ, ଏ ପିଣ୍ଟୁ··· ···ଆରେ······ପଡ଼ିବୁ······ପଡ଼ିବୁ । ସ୍ୱାମୀଙ୍କୁ ନିର୍ଦ୍ଦେଶ ଦେଲେ ; ଟିକେ ଦେଖନ୍ତ, ନଚେତ୍ ପିଣ୍ଟୁ ପଡ଼ିଯିବ । ଭଦ୍ରମହିଳା ନଇଁପଡ଼ି ଶାଢ଼ୀର କୁଞ୍ଚ ସଜାଡ଼ୁଥିଲେ ।

ମୁଁ ବସି ବସି ପିଣ୍ଟୁର ଖେଳକୁ ଉପଭୋଗ କରୁଥିଲି ଏବଂ ମୋର ବାଲ୍ୟ କାଳକୁ ମନେ ପକାଉଥିଲି । ମୁଁ କଣ ଏମିତି ଲୁଚକାଳି ଖେଳ ଖେଳିଥିଲି କି, ଗାଡ଼ିରେ, ମଟରରେ, ଷ୍ଟେସନରେ ? କିଏ ଜାଣେ ଖେଳି ଥିଲେ ଖେଳିଥିବି । ଏ ଛୋଟ କଥାଟିକୁ କିଏ ମନେ ରଖିଥିବ ଯେ ବର୍ଣ୍ଣନା କରି କହିବ, ସେପରି ଘଟଣା ମାନ । ଏ ଘଟଣା ତ ଆଉ ମହାତ୍ମାଗାନ୍ଧୀ କି ଇନ୍ଦିରାଗାନ୍ଧୀଙ୍କ ହତ୍ୟା ଘଟଣାଟେ ନୁହେଁ କି ଅମୁକ କ୍ରିକେଟ୍ ମ୍ୟାଚ-ରେ କିଏ ମ୍ୟାନ୍ ଅଫ ଦି ମ୍ୟାଚ୍ ହେଲା, କି ଅମୁକ ସିରିଜ୍‌ରେ କିଏ ମ୍ୟାନ ଅଫ ଦି ସିରିଜ୍ ହେଲା ବା ଅମୁକ ଏସିଆନ ବା ଅଲମ୍ପିକ ଖେଳରେ କିଏ ସ୍ୱର୍ଣ୍ଣପଦକ ପାଇଲା ତା ମନେ ରଖିବାକୁ ହେବ । କାରଣ ଏ ସବୁ କଂପିଟେଟିଭ ପ୍ରଶ୍ନ । ଉତ୍ତରଟି ଠିକ୍ ଲେଖିଲେ ପିଲାର ସାଧା-ରଣ ଜ୍ଞାନ ଅଛି ବୋଲି ପରୀକ୍ଷକ ଜାଣିବେ । ଅଥଚ ନିଜେ ପରୀକ୍ଷକ ତାର ସଠିକ୍ ଉତ୍ତର ଜାଣିନଥିବେ ଏବଂ ଉତ୍ତର ସଠିକ ଅଛି କି ନାହିଁ ଜାଣି ନମ୍ବର ଦେବା ପାଇଁ ସେମାନଙ୍କୁ ଉତ୍ତର ସିଟ୍ ଦିଆ ଯାଇଥିବ । ଏଦେଶର କିରାଣୀ ଚାକିରି, ପିଅନ ଚାକିରି ପାଇବା ପାଇଁ ଅନେକ ଦେଶର ରାଷ୍ଟ୍ରପତି ଓ ପ୍ରଧାନ ମନ୍ତ୍ରୀଙ୍କ ନାମ ମନେ ରଖିବାକୁ ହୁଏ । କେଉଁ ଦେଶରେ କଣ ମିଳୁଛି, ତା ଜାଣିବାକୁ ହୁଏ । ଅବଶ୍ୟ ଥରେ ଚାକିରି ପାଇଗଲା ପରେ ଏଗୁଡ଼ାକ ଆଉ ଦରକାରରେ ଲାଗେ ନାହିଁ । ଏମିତିକି ଏ ଦେଶର ମନ୍ତ୍ରୀ ମଣ୍ଡଳରେ କିଏ କିଏ ମନ୍ତ୍ରୀ ଅଛନ୍ତି ବା କେଉଁ ମନ୍ତ୍ରୀଙ୍କ ଦାୟିତ୍ୱରେ କେଉଁ ବିଭାଗ ରହିଛି, ତା ଜାଣିବା ଆଦୌ ଦରକାର ନାହିଁ । ସେ ଏକ ଭିନ୍ନ ଜଗତ । ସେଠାର ସାଧାରଣ ଜ୍ଞାନ ଭିନ୍ନ । ସେଠି ଜାଣିବା କଥା କେଉଁ ଫାଇଲ୍ ଦାୟିତ୍ୱରେ ଭଲ ଉପରି ମିଳେ । କେଉଁ ଅଫିସର କେଉଁ ପ୍ରକା-ରର ଲୋକ ? କିଏ ଅଫିସରଙ୍କୁ ତେଲ ମାରୁଛି ? କିଏ ଆଜି କେତେ ଉପରି ପାଇଲା ? ଏ ସବୁ ବିଷୟରେ ବନ୍ଧୁ ମହଲରେ ଆଲୋଚନା କରି ନିଜ ସାଧାରଣ ଜ୍ଞାନକୁ ପ୍ରକାଶ କରିବା କଥା । ଜୀବନ ଜଞ୍ଜାଳବିସ୍ତାର ଲୁଚକାଳି ଖେଳ ଭିତରେ ଏ ପିଲା ଦିନର ଏ ତୁଚ୍ଛ ଲୁଚକାଳି ଖେଳକୁ କିଏ ମନେ ରଖୁଛି ? କି ଲାଭ ଅଛି ଏ ସବୁ ମନେ ରଖିବାରେ ? ବରଂ ଜୀବନରେ ଜଡ଼-

ବାର ଜୁଆ ଖେଳ ଭିନ୍ନ ଭିନ୍ନ ତଣକାକୁ ମନେ ରଖିବାକୁ ହେବ । କିନ୍ତୁ ବାଲ୍ୟ ସ୍ମୃତିରେ ଯେ ଅନେକ ସ୍ୱାଦ ଓ ଅନବଚନୀୟ ଆନନ୍ଦ ରହିଛି ; ତା ବୁଝିବା ସମ୍ଭବ ନୁହେଁ । ତେଣୁ ମୁଁ କେବଳ ପିଣ୍ଟୁକୁ ଭୁଲି ଭୁଲି ଚାହୁଁଥିଲି  କାରଣ ତା ଖେଳ ଥିଲା ଖୁବ୍ ଆମୋଦଦାୟକ । ନିଜର ବାଲ୍ୟ ଜୀବନ ବାରହୋଇ ପଡୁଥିଲା ପିଣ୍ଟୁର ଲୁଚକାଳି ଖେଳ ଭିତରେ ।

କିଛି ସମୟ ଠିଆ ହେବା ପରେ ପିଣ୍ଟୁ ବାପା କହିଲେ , ଆପଣ ଟିକେ ଏ ପାଖକୁ ଆସିବେ ?

ବିନା ବାକ୍ୟରେ ମୁଁ ଉଠି ଆସିଲି । ବାସ୍ତବିକ୍ ପିଲାଟା ଅଖିରେ କୋଇଲି ସ୍ୱରର ଆଘାତ ସହି ପାରିବ ନାହିଁ , ଏଇ ବିଶ୍ୱର ବୋଧରେ ।

ବର୍ଥ ପାଖକୁ ଲାଗି ମୋ ସମ୍ମୁଖରେ ବସିଲେ ପିଣ୍ଟୁର ବାପା । ମୁହଁରେ ଅନେକ ବୟସ୍କ ଦାଗ ସତ୍ତ୍ୱେ ଅନେକ ସରଳତା ଓ ପ୍ରଫୁଲ୍ଲତା ବେଶ ବାରି ହୋଇ ପଡୁଥିଲା ତାଙ୍କର । ପାଙ୍କୁ ପିଣ୍ଟୁର ମା । ଆଟାଚି ଓ ଏଆର ବ୍ୟାଗକୁ ରଖିଦେଲେ ଲଗେଜର୍‍ୟାକ୍‌ରେ । ନାଇଲନ ବ୍ୟାଗଟି ରହିଲା ପିଣ୍ଟୁମାଙ୍କର ଡାହାଣ ପଟେ । ଅନ୍ୟ ଜଣେ ଯାତ୍ରୀ ଠାରୁ ଦୂରତା ରଖିବା ପାଇଁ ବସିପଡି ପିଣ୍ଟୁମା ନାଇଲନ୍ ବ୍ୟାଗ୍‌ରୁ ବାହାର କଲେ - ନାଲି ବର୍ଣ୍ଣର ଥର୍ମୋଫ୍ଲାସ୍କ, ଗୋଟିଏ ପାଣି ଭର୍ତ୍ତି ପ୍ଲାଷ୍ଟିକ୍ ବୋତଲ, ଛୋଟ ଷ୍ଟିଲ ଗ୍ଲାସଟିଏ ଓ ଚାମଚଟିଏ ଏବଂ ଦୁଧ ଗୁଣ୍ଡ ଡବା । ଫ୍ଲାସ୍କରୁ ଗରମ ପାଣି ଢାଳି, ଗ୍ଲାସରେ ଫେଣ୍ଟି ଫେଣ୍ଟି ଗୁଣ୍ଡ ଦୁଧକୁ କ୍ଷୀର ବନାଇଲେ । କିନ୍ତୁ ପିଣ୍ଟୁ ତା ଖେଳ ଓ ତା ଆମୋଦ ପ୍ରମୋଦରେ ମାତିଥାଏ । ପିଣ୍ଟୁ ମା ପିଣ୍ଟୁକୁ କୋଳକୁ ଟାଣିନେଲେ । ନିଜର ଚକା କୋଳରେ ପିଣ୍ଟୁକୁ ଚିତ୍ କରି ଶୁଆଇ ଦେଲେ । ଛୋଟ ଷ୍ଟିଲ୍ ଚାମଚଟିରେ କ୍ଷୀର ନେଇ ଧୀରେ ଧୀରେ ପିଣ୍ଟୁର ପାଟିରେ ଢାଳିଲେ ।

ବାସ୍ , ଦୁଇତିନି ଢୋକ ପିଇଦେଲା , ତା ପରେ ପ୍ରତିଥର କ୍ଷୀରକୁ ପାଟିରେ ରଖି ଘଡୁରୁ ଘଡୁରୁ କଲା ପିଣ୍ଟୁ । ପାଟିରୁ ବାହାର କରିଦେଲା । ପ୍ରତି ମୁହୂର୍ତ୍ତରେ ଚେଷ୍ଟା କରୁଥାଏ ମା'ର କୋଳରୁ ଉଠିଯିବା ପାଇଁ । ଗୋଡକୁ ଧରି ଚାପି ଦେଉଥାନ୍ତି ମା । ପିଣ୍ଟୁ ଘୁଡୁ ଘୁଡୁ କରି କ୍ଷୀର ଢୋକୁନାଏ । ପୁଣି ଉଠିବାକୁ ଚେଷ୍ଟା କରେ । ଆଉ ଢୋକେ କ୍ଷୀର ପିଣ୍ଟୁର ପାଟିରେ ଦେଇ ମା କହୁ ଉଠନ୍ତି : ଏଇ ସରିଲାରେ ସରିଲା ··· ଆଉ ଟିକିଏ । ଆରେ କାଉ ଆଃ ଆଃ - ନେ - ଏଇ କାଉ ଖାଇଲାରେ ଖାଇଲା । ······ଆରେ ବାଇ ଚଢେଇ ଆଃ ··· ନେ ··· ନେ, ପିଣ୍ଟୁକୁ ନେ । ହେଇ ଆଇଲାରେ ବାଇ ଚଢେଇ ··· ଆଇଲା । ନାହିଁ ରେ ନାହିଁ ଯା ··· ପିଣ୍ଟୁ ଆମର

ସୁନା ପୁଅ ··· ଖାଇ ଦେଲଣି କ୍ଷୀର ··· ଯା' । ମା ଆଉ ଥୋକେ ଦଅନ୍ତି ପିଣ୍ଟୁର ପାଟିରେ । ପିଣ୍ଟୁର ବାପା ଉଠିଯାଇଥିବା ପିଣ୍ଟୁର ମୁଣ୍ଡକୁ ଚପି ଧରିଥାନ୍ତି । ଖାଇ ସାରି ପିଣ୍ଟୁ ବସିଲା ମା କୋଳରେ ଏବଂ ଅନ୍ୟ ଯାତ୍ରୀ ମାନଙ୍କୁ ଗୁହିଁଲା । ଜଣ ଗ୍ରବଲା କେଜାଣି ଗଡ଼ଟାଏ ଛୁଟିଲା ପରି ତେଜାଏ ହସ ପିଣ୍ଟୁର ଓଠରେ ଖେଳିଗଲା । ସମ୍ଭବତଃ ବାପା ଓ ମା' ଙ୍କ ହାତରୁ ଖସିଯାଇଛୁ ବୋଲି, ମୁକ୍ତିର ସ୍ୱାଦରେ ବସ୍ତ୍ରୋଶତ ।

ଏଥର ମୁଁ ପିଣ୍ଟୁ ଓ ପିଣ୍ଟୁର ବାପା ଓ ବୋଉଙ୍କ ମୁହଁକୁ ବାରମ୍ବାର ଗୁହିଁ ଥାଏ । ବାପା ମାଙ୍କଠାରୁ ବର୍ଣ୍ଣରେ ସରସ ପିଣ୍ଟୁର କହରା ବାଳ, ଗୋଲ ମୁହଁ, ଗ୍ରେଟ ଗ୍ରେଟ ଦୁଷ୍ଟାମି ଭରା ଦୁଇଟି ଆଖି । କିନ୍ତୁ ପିଣ୍ଟୁ ଦେଖିବାକୁ ତା ବାପାଙ୍କ ପରି ସୁନ୍ଦର । ମାତ୍ର ମା ପରି ତାର ନାକଟି ଚେପଟା । ବୋତଲରୁ ପାଣି ଢ଼ାଳି ପିଣ୍ଟୁର ମା ଷ୍ଟିଲ୍ ଗ୍ଲାସ, ଗ୍ଳମଚ୍ଚ ଓ ଶାମୁକାକୁ ଧୋଇ ଦେଇ । ପିଣ୍ଟୁ ବାପାଙ୍କୁ ଗ୍ଲାସଟା ବଢ଼ାଇ ଦେଲେ । ପିଣ୍ଟୁ ବାପା ଝର୍କା ଦେଇ ପାଣିତକ ଢାଳିଦେଲେ । ଠିକ୍ ଏତକ ବେଳକୁ ଢାଳି ଦେଲା ପରି ପିଣ୍ଟୁ ମା'ଙ୍କ ଉପରେ ମୁତିଦେଲା । ଭଦ୍ରମହିଳା ଚିତ୍କାର କଲେ : ଗଲା ··· ଗଲା ··· ଗଲା । ତରତରରେ ପିଣ୍ଟୁକୁ ତଳେ ଠିଆ କରେଇ ଦେଲେ । ପିଣ୍ଟୁ ଅବଶିଷ୍ଟାଂଶ ତଳେ ମୁତି ଦେଲା ।

ବଗି ଭିତରକୁ ବେଶ୍ ଆହୁରି କିଛି ଯାତ୍ରୀ ପଶିଲେଣି । ଯିଏ ଯେମିତି ସୁବିଧା ଦେଖି ନିଜ ପାଇଁ ସ୍ଥାନଟିଏ ଅଧିକାର କରି ନେଲେଣି । ପିଣ୍ଟୁ କିନ୍ତୁ ଆଉ ମା କୋଳକୁ ଉଠି ନଥିଲା । ସେଇଠି ତଳେ ବସି ପଡ଼ି ବାପା ଓ ମାଙ୍କ ଚଟି ଧରି ଖେଳିବାରେ ଲାଗିଗଲା ।

: ଆଜି ଠାରୁ ପୁସ୍ତକ ମେଳା ଆରମ୍ଭ ହେଉଛି । ସ୍ତ୍ରୀକୁ କାମ ଗ୍ରପରୁ ମୁକ୍ତ ହେବା ଦେଖି ପିଣ୍ଟୁ ବାପା କହିଲେ ।

: ତୁମେ ଦେଖି ଯିବକି ? ପିଣ୍ଟୁ ମା ପଚାରିଲେ ।

ହଁ କାଲି ସକାଳେ ଯିବା । ପୁଣି M. L A. ଙ୍କ ଘରକୁ ମଧ୍ୟ ଯିବା । ଯଦି ଟିକେଟ୍ ମିଳିଯାଏ ତେବେ ଗୋଟେ ଦିନ ଆସେମ୍ବ୍ଲିଟା ବି ଦେଖିଯିବା ।

: ଆଉ ଫେରିବା ? ଘରକୁ ଫେରିବା ପାଇଁ ଖୁବ୍ ଆତୁର ଥିବା ପରି ପିଣ୍ଟୁର ମା ପଚାରିଲେ ।

: କାଲି ସଂଧ୍ୟାକୁ । ଦୃଢ଼ ନିଷ୍ପତ୍ତି ନେଇଥିବା ପରି ପିଣ୍ଟୁର ବାପା କହିଲେ । ପୁସ୍ତକ ମେଳାରୁ କିଛି ବହି ପତ୍ର ବି କିଣିବା ।

ପୁସ୍ତକମେଳା ! ଆଜି କଣ ? କାଲିଠାରୁ ଆରମ୍ଭ ହେବ । ......କାଲି ଉଦ୍‌ଘାଟନ ହେବ । ପଦ୍ମରଥନ ଠାରୁ ବହି ଆରମ୍ଭ ହେବ । ଏ ପର୍ଯ୍ୟନ୍ତ ନୀରବରେ ବସି ମୁଁ ପିଣ୍ଟୁର ଖେଳ ଦେଖୁଥିଲି । ଯାତ୍ରୀ ମାନଙ୍କୁ ଲକ୍ଷ୍ୟ ଥିଲି । ପିଣ୍ଟୁ ବାପା ବୋଉଙ୍କର ଅତ୍ୟନ୍ତ ଘରୋଇ ବା ବ୍ୟକ୍ତିଗତ ଆଲୋଚନା ଶୁଣୁଥିଲି । କିନ୍ତୁ ପୁସ୍ତକମେଳା ଶବ୍ଦଟି ସ୍ୱତଃ ମୋ ମୁହଁ ଖୋଲିଦେଲା , କାରଣ ମୋ ଭିତରେ ତାହା ସୃଷ୍ଟି କରିଥିଲା ତାଙ୍କର କୋଳାହଳ ।

ପିଣ୍ଟୁର ବାପା କହିଲେ ; ନାହିଁ ଆଜି କାଗଜରେ ବାହାରିଛି , ଆଜି ଉଦ୍‌ଘାଟନ ହୋଇ ଛଅ ତାରିଖ ପର୍ଯ୍ୟନ୍ତ ଚାଲିବ ।

: ହୋଇଥିବ , ମୁଁ ଆଜି କାଗଜ ଦେଖିନାହିଁ । କିନ୍ତୁ ପୂର୍ବରୁ ଷ୍ଟଲ ପାଇଁ ଆବେଦନ କରିବାକୁ ବାହାରି ଥିଲା । ସେଥିରେ ଅସନ୍ତା କାଲିର ତାରିଖ ଥିଲା । ସମ୍ଭବତଃ ପଦ୍ମରଥନ ମନ୍ତ୍ରୀଙ୍କର ଅନ୍ୟକିଛି କାମଅଛି । ତେଣୁ....

: ହୋଇ ପାରେ । ଆପଣଙ୍କର କଣ ପ୍ରକାଶନ ସଂସ୍ଥା ଅଛି କି ? ପିଣ୍ଟୁର ବାପା ପଚାରିଲେ ।

ନା ?

: ତେବେ ଏତେ ଆଗ୍ରହ ?

: ନାହିଁ, ଏମିତି ପୁସ୍ତକ ମେଳାଯାଏ, କିଛି ବହି ପତ୍ର କିଣେ ।

: ଆଚ୍ଛା, ଆଚ୍ଛା, କଣ ଭଲ ବହି ମିଳେ ? ପୁସ୍ତକ ମେଳା ସଂପର୍କରେ ପିଣ୍ଟୁ ବାପାଙ୍କର ଜିଜ୍ଞାସା ବୋଧେ ବଢ଼ୁଥିଲା ।

ପାଞ୍ଚ ବର୍ଷ ହେଲା ମୁଁ ପୁସ୍ତକ ମେଳା ଦେଖୁଛି । ଏ ବର୍ଷ ମଧ୍ୟ ଦେଖିବି । ବିଗତ ପାଞ୍ଚ ବର୍ଷରେ ବର୍ଷକୁ ପାଞ୍ଚଟି କରି ନୂଆ ବହି ମୁଁ ଦେଖି ନାହିଁ । ଦେଖିଲେ ଯେମିତି ମନେ ହେବ ଏଇ ପାଞ୍ଚ ବର୍ଷ ମଧ୍ୟରେ ଓଡ଼ିଶାରେ ଲେଖକ ମାନେ କିଛି ଲେଖି ନାହାନ୍ତି ବା ସମସ୍ତ ଲେଖକ ମରିଯାଇଛନ୍ତି । ଆଉ ଯାହା ବା ବାହାରେ ସେଇ ଲେଖକ ମାନଙ୍କର , ଯେଉଁମାନେ ପ୍ରତିଷ୍ଠିତ ଓ ପଦସ୍ଥ ଥାଆନ୍ତି, ଯାହାଙ୍କର ଦଶ/ବାର ପ୍ରକାଶନ ହେଲାଣି ବା କେଉଁ ବହିର ପୁନଃ ପ୍ରକାଶନ ହୋଇଛି । ସତେ ଯେମିତି ଦଶ ବର୍ଷ ଭିତରେ ଓଡ଼ିଶା ମାଟି ଜଣେ ନୂଆ ଲେଖକକୁ ଜନ୍ମ ଦେଇ ନାହିଁ । ବ୍ରହ୍ମପୁର ପ୍ରକାଶକ ମାନେ ବି ଆସନ୍ତି ନାହିଁ । ଅନ୍ୟ ପ୍ରକାର ବହି ବୋଇଲେ ବିଶ୍ୱଭାରତୀରୁ କିଛି ବଙ୍ଗଳା ବହି ଆସେ । ଆଉ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଏନ୍ . ବି . ଟି . କିଛି ଆଣନ୍ତି । ଆଉ ହିନ୍ଦୀ, ଇଂରାଜୀ ଯାହା ବହି ମିଳେ ତାହା ଷ୍ଟେସନ ହ୍ୱିଲରରେ ଓ ବସଷ୍ଟାଣ୍ଡରେ ମିଳିବ । ଏଇ ହେଉଛି ପୁସ୍ତକ ମେଳା । ଆଉ ରିବେଟ୍ କଥା ପ୍ରତିବର୍ଷ କୋଡ଼ିଏ ପରସେଣ୍ଟ ମିଳୁଥିଲା । ଗଲା ବର୍ଷ ଦଶକୁ ଆସିଛି ।

ମୋର ଦୀର୍ଘ ଉତ୍ତରରେ ପିଣ୍ଟୁର ବାପା ଗମ୍ଭୀର ହୋଇ ହୁଁ ହଁ ମାରିଲେ । କିଛି ସମୟ ନୀରବ ରହିବା ପରେ ପଚାରିଲେ ; କିଛି ପାଠ୍ୟ ପୁସ୍ତକ ମିଳେ କି ନାହିଁ ? ବ୍ରହ୍ମପୁର ପ୍ରକାଶକ ମାନେ ତ ଟେକ୍‌ସଟ ବହି ଛାପନ୍ତି ନାହିଁ, କେବଳ ନୋ' ବହି ଛାପନ୍ତି । ମୁଁ ପରା ନୋ' ବହି ଲେଖେ - ମୁଁ ଜାଣିନ ।

ପିଣ୍ଟୁ ବାପାଙ୍କ ନୋ' ବହି ଲେଖିବାର ଅହଂକାରକୁ ମୁଁ ପସନ୍ଦ କଲିନାହିଁ । କାରଣ ତା ଦ୍ୱାରା ଛାତ୍ରଙ୍କର ବିଚାରବିମର୍ଷ ନଷ୍ଟ ହୁଏ, ଏବଂ ଶ୍ରେଣୀ ଅମନୋଯୋଗିତା ସୃଷ୍ଟି କରେ । ବଜାରରେ ନୋ' ବହି ମିଳୁଛି କଣ ମିଛରେ ଘଣ୍ଟା ଘଣ୍ଟା ବସି ଲେକ୍‌ଚର ଶୁଣିଲେ ? ନୋ' ବହି ଘୋଷିଲେ ଯଥେଷ୍ଟ । କିନ୍ତୁ ମୁଁ ନୀରବରେ ସେ ଅହଂକାରକୁ ବରଦାସ୍ତ କରିନେଲି । ମୁଁ କହିପାରିଲି ନାହିଁ , ମୁଁ ଜଣେ ଲେଖକ । କହିବାରେ କୁଣ୍ଠା ଆସିଲା ।

ଏତିକିବେଳେ ପିଣ୍ଟୁ ମୋ ପାଦରୁ ଚପଲ ଭିଡ଼ିଲା । ମୁଁ କହିଲି : ଏହେ ଛିଃ ଛିଃ । ପିଣ୍ଟୁର କଅଁଳିଆ କୁନି କୁନି ପାପୁଲିରୁ ମଳି ଝାଡ଼ିଦେଲି । ଚପଲରୁ ଲାଗିଥିବା ଧୂଳିକୁ ପାପୁଲିରୁ ରୁମାଲରେ ପୋଛିନେଲି । ପିଣ୍ଟୁର ବାପା କହିଲେ ; ପୋଛିଲେ କଣ ହେବ ? ତାର ସବୁବେଳେ ସେଇ କାମ । ଚପଲ ତାର ବଡ଼ ଖେଳନା । ପିଣ୍ଟୁ ବାପା ପିଣ୍ଟୁକୁ କୋଳକୁ ଉଠାଇ ନେଲେ । ଝର୍କା ଦେଇ ପିଣ୍ଟୁ ବାହାରର ଦୃଶ୍ୟ ଦେଖିଲା ଏବଂ ବୁଲିପଡ଼ି ମୋ ମୁହଁକୁ ଚାହିଁ ହସିଲା , ସେଇ ବିଜୟୀ ଓ ଗର୍ବିତ ହସ ଚେନାକ । ମୁଁ ପିଣ୍ଟୁକୁ ଚାହିଁ ଭାବୁଥିଲି, ଏକା ପିଣ୍ଟୁ ନୁହେଁ ଏବୟସରେ ପିଲା ମାନଙ୍କର ଏଇଟା ଗୋଟେ ଖୋଇ । ଚପଲ ଓ ଜୋତାରେ ଖେଳିବାରେ ଆଗ୍ରହ । ଘରର ସବୁ ଜିନିଷ ଘାଣ୍ଟିବେ । ସଜଡ଼ାକୁ ଉଜାଡ଼ି ଦେବାରେ ସେମାନଙ୍କର ଆନନ୍ଦ ଓ ବାହାଦୂରୀ । ଏଇ ବୟସରେ ପିଣ୍ଟୁ ବାପା, ମା, ମୁଁ ସମସ୍ତେ ଏମିତି କରିଥିବୁ , ଅଥଚ ଏଇ ଗୁରୁତ୍ୱହୀନ କଥାଟାକୁ ଭୁଲିଯାଉ ।

ପିଣ୍ଟୁର ବାପା, ମା ଓ ମୋ ଭିତରେ ବେଶ୍ ଆଳାପ ହୋଇଗଲା : କିଏ, କେଉଁଠିକୁ ଯାଉଛ ? କିଏ କଣ କରୁଛ ? ଆନ୍ତରିକତା ଟିକେ ଟିକେ ବଢ଼ୁଛି । ପିଣ୍ଟୁର ମା ପଚାରିଲେ ; ଏଠି ଓଡ଼ିଆ ଏମ୍. ଏ. ରେ କୋର୍ସରେ କଣ ବହି ଚଳେ ? କେତେ ମାର୍କର ପରୀକ୍ଷା ଦେବାକୁ ହୁଏ ?

: ଆଠଶହ ମାର୍କ । କୋର୍ସରେ ବହି ବଦଳି ଯାଇଛି । କିନ୍ତୁ କଣ ଚଳୁଛି ଠିକ୍ କହି ପାରିବି ନାହିଁ ।

: କାହିଁକି ପଚାରୁଥିଲିକି — ମୁଁ ଏ ବର୍ଷ ପ୍ରାଇଭେଟ୍‌ରେ ଓଡ଼ିଆ ଏମ୍. ଏ. ପରୀକ୍ଷା ଦେଉଛି, ଖାଲିକୋଟ କଲେଜରେ । ସେଥିପାଇଁ ...... ।

ପିଣ୍ଟୁ ବେଶି ସମୟ ସ୍ଥିର ହୋଇ ବସି ପାରିଲା ନାହିଁ । ବାହାରର ଦୃଶ୍ୟ ତାକୁ ଭଲ ଲାଗିଲା ନାହିଁ । ବାପାଙ୍କ କୋଳ ଉପରୁ ଡେଇଁ ପଡ଼ିଲା ତଳକୁ । ସମସ୍ତ ଯାତ୍ରୀଙ୍କ ମୁହଁକୁ ଚାହିଁ ଖୁସିରେ ଫାଟି ପଡ଼ିଲା ପିଣ୍ଟୁ । ମଝିର ପାଖରୁ ଦେହରେ ବୁଲି ଆସିଲା । ଯେମିତିକି କୌଣସି ଯାତ୍ରୀ ତାର ଅପରିଚିତ ନୁହଁନ୍ତି । ସମସ୍ତଙ୍କ ସହ ତାର ଯୁଗଯୁଗାନ୍ତରର ପରିଚୟ ; ସମସ୍ତେ ତାର ଆପଣାର । ଖୁବ୍ ଆପଣାର । ପିଣ୍ଟୁ ମା'ଙ୍କ ଡ଼ାହାଣ ପାଖରେ ବସିଥିବା କଲେଜରୁ ଫେରୁଥିବା ତରୁଣୀଙ୍କ ପାଖକୁ ଚମ୍କି ଗଲା । ତରୁଣୀଙ୍କ କୋଳରେ ନଗ୍ନପଦରେ ଥିବା ତାଙ୍କର ବହିଖାତାକୁ ଟାଣି ନେଇ ଦୁମ୍ କରି ଫିଙ୍ଗି ଦେଲା ତଳକୁ । ତରୁଣୀ ହେ ...ହେ... ... ବୋଲି ଅତଙ୍କରେ ଚିତ୍କାର କରି ଉଠିଲେ । ପରେ ପରେ ବହି ଗୋଟାଇ ଆଣିଲାବେଳେ ସେ ଅଚେତନ ଚିତ୍କାର ପାଇଁ ଲଜ୍ଜିତ ଥିବା ପରି ମନେ ହେଲେ । ଏକଥା ଜଣାଇ ଦେଉଥିଲା ତରୁଣୀଙ୍କ ହସ ଓ ନାଲି ପଡ଼ି ଯାଇଥିବା ମୁହଁ । ପିଣ୍ଟୁକୁ ମା' କୋଳକୁ ଉଠାଇ ଆଣି ଚିତ୍କରି ଶୁଆଇ ଦେଲେ । ପିଣ୍ଟୁର ମୁହଁକୁ ପରିତ ଆଣ୍ଠୁଆଲି କରି ଲୁଗ୍ଗଇ ଦେଇ କ୍ଷୀର ଖୁଆଇଲେ ।

ମାତ୍ର ଦୁଇ ସେକେଣ୍ଡ । "ଜୟ ଲୋ ମା" — ଗୋଟିଏ ଚିତ୍କାରରେ ପିଣ୍ଟୁ ମା'ର ପରିତ ତନ୍ଦ୍ରୁ ମୂର୍ଚ୍ଛିଟି ବାହାର କରି ଜୁଲୁ ଜୁଲୁ ଚାହିଁଲା , ଠିକ୍ ଚଢ଼ରେ ଯେମିତି କଙ୍ଗାରୁ ଥଳିରୁ କଙ୍ଗାରୁ ଶାବକ ଚାହିଁଥାଏ । "ଯେନ୍ତୁ ବଦ୍‌ମାସ" — ପିଣ୍ଟୁ ମା' ସାମାନ୍ୟ ବିରକ୍ତିରେ , ସଜାଡ଼ି ହୋଇଗଲେ । ପିଣ୍ଟୁ ଡେଇଁ ପଡ଼ିଲା ତଳକୁ । ସିନ୍ଦୁର ବୋଲା ମା'ଙ୍କ ମୂର୍ତ୍ତି ଧରି ଆସିଥିବା ଲୋକଟା ମା'ଙ୍କ ମୁଣ୍ଡରୁ ନିଜ ଅନାମିକା ଆଙ୍ଗୁଠିରେ ଟିପେ ସିନ୍ଦୁର ଆଣି ଯାତ୍ରୀଙ୍କୁ ଦେଲା । କିଏ କେମିତି ଟିପରେ ନେଇ ମୁଣ୍ଡରେ ମାରିଲେ । ପଇସା ବି ଦେଲେ । ପିଣ୍ଟୁ ବାପା ନିଜ ଅନାମିକା ଆଙ୍ଗୁଠିରେ ନେଇ ଥିବା ସିନ୍ଦୁର ତକ ଟ୍ରେନ୍‌ରେ ପୋଛିଦେଲେ । ପିଣ୍ଟୁ ମା କହିଲେ ; ଖୁଚୁରା ଯଦି ଅଛି ଦଶପଇସା ଦିଅ । ପିଣ୍ଟୁ ବାପା ମନାକଲେ । ଅଥଚ ମୋ ମୁହଁକୁ ବିସ୍ମୟରେ ଚାହିଁଥିଲେ ଯେ ସିନ୍ଦୁର ନେଇ ନାହିଁ । ମତେ ଲକ୍ଷ୍ୟକରି କହିଲେ ! ଏଥି ପାଇଁ ପୂଜା ଆସିବାକୁ ଇଚ୍ଛା ହୁଏନି । ପଣ୍ଡାମାନେ ତ ମନ୍ଦିରରେ ଯାତ୍ରୀମାନଙ୍କୁ ଗୁଡ଼ମୁଣ୍ଡା ଖାଇ କନ୍ଦାପରି ବେଢ଼ି ଯାଆନ୍ତି । ସେଥିରେ ପୁଣି ଯେଉଁ ଖର୍ଚ୍ଚ ? ହୁଁକାର ଦେଇ ହନୁମାନ ଭାରତରୁ ଲଙ୍କାକୁ ଡେଇଁ ପଡ଼ିବା ପରି ପିଣ୍ଟୁ ବାପା ହଠାତ୍ ପୁସ୍ତକ ମେଲାରୁ ପୂଜା ପଣ୍ଡାଙ୍କ ପାଖକୁ ଡେଇଁ ପଡ଼ିଲେ । ପିଣ୍ଟୁର ବାପାଙ୍କ ତୁଣ୍ଡରେ ମଧ୍ୟ ସେଇ ଚିରାଚରିତ ଓ ସାର୍ବଜନୀନ ଅଭିଯୋଗ ପଣ୍ଡାଙ୍କ ବିରୁଦ୍ଧରେ । କଥାଟା ମୋର ପସନ୍ଦ ହେଲାନି । ମୁଁ କହିଲି , ନାଇଁ

ଆଜ୍ଞା , ଆପଣ ଯେତେ ଭାବୁଛନ୍ତି କଥାଟା ସେତେ ଗୁରୁତ୍ୱ ନୁହେଁ ।

: ନୁହେଁ କଣ ? ଖବର କାଗଜରେ ବାହାରୁଛି । ମୁହଁକୁ ଲୁଚିଦେଇ କହିଲେ ମୋ ବାଁ ପାଖରେ ବସିଥିବା ଯୁବକ ଜଣକ ।

ମୁଁ କହିଲି , ହଁ ବାହାରୁଛି । ଏବେ ସେପରି ସମ୍ବାଦ ବେଶ୍ ହଟ ଚମଟ ସୃଷ୍ଟି କରୁଛି । କିନ୍ତୁ ଖବର କାଗଜ ବାଲାଏ ଯାହା ସଜାଡ଼ିବା କଥା ସଜାଡ଼ୁ ନାହାନ୍ତି । ଦୁର୍ନୀତିଗ୍ରସ୍ତ ରାଜନୀତିଜ୍ଞ , ଯେଉଁମାନେ ସମଗ୍ର ଦେଶ ଓ ଜାତିକୁ ନଷ୍ଟ ଭ୍ରଷ୍ଟ କରୁଛନ୍ତି , ସେମାନଙ୍କ ଠାରୁ ଟଙ୍କା ଖାଇ ପଣ୍ଡ ଘୋଡ଼ାଉଛନ୍ତି । ଆଉ ପେଟ ପାଟଣା ପାଇଁ ମନ୍ଦିର ସେବାୟତ କଣେ କଲେ ଯେ ବାହାର ପଡ଼ିଲେ ତାଙ୍କୁ ସଜାଡ଼ିବା ପାଇଁ ! ଏମିତ ସମ୍ବାଦ ପ୍ରସ୍ତାବୀ ଏମାନେ ! ଯୁବକଙ୍କ ମୁହଁ ଛଟା ଉତ୍ତରରେ ମୋ କଣ୍ଠରେ ବେଶ୍ ଉତ୍ତେଜନା ଭରିଗଲା ।

ପିଣ୍ଟୁର ମା କହିଲେ : ଆପଣ କ'ଣ ଏ ସବୁକୁ ମିଛ କହୁଛନ୍ତି । ଦେଖୁଛି ପଣ୍ଡାଙ୍କ ପ୍ରତି ଆପଣଙ୍କ ଦରଦଟା ବେଶି । ଅଚ୍ଛା କଣବା ସତ କହୁ ପିଣ୍ଟୁର ମା ହସିଲେ ।

ମୁଁ କହିଲି : ଦେଖନ୍ତୁ, ମୁଁ ମଧ୍ୟ ଭାରତର ଅନ୍ୟ ତୀର୍ଥ ସ୍ଥାନକୁ ଯାଇଛି । ପୁରୀ ମୋର ଘର । ଆପଣ ଅସ୍ଥି ବିସର୍ଜନ ପାଇଁ ପ୍ରୟାଗ ଯାଆନ୍ତୁ । ଶ୍ରାଦ୍ଧ କରିବାକୁ ଗୟା ଯାଆନ୍ତୁ । ରକ୍ତ ମନ୍ଦାର ଚଢ଼େଇବାକୁ କାଳୀ ମନ୍ଦିର କଲିକତା ଯାଆନ୍ତୁ ବା ଲଣ୍ଡା ହେବାକୁ ତିରୁପତି ଯାଆନ୍ତୁ , ସବୁଠି ସେବାୟତ ମାନଙ୍କର ଅତ୍ୟାଚାରର ଶିକାର ହେବେ । ଆମେ ସେମାନଙ୍କ ଭାଷାର ଭଲ ଖାରାପ ଶବ୍ଦକୁ ବୁଝି ପାରୁନା ବୋଲି ଜାଣି ପାରୁନା । ଆଉ ବୁଝି ପାରୁ ବୋଲି ପୁରୀର ଭଲ ଶବ୍ଦ ବି ପଣ୍ଡାଙ୍କ ଉଚ୍ଚାରଣ ଭଙ୍ଗୀରେ ଆମ କାନ ଓ ମନକୁ ଅଶ୍ଳୀଳ ଲାଗେ । ତା'ବାଦ ସେଠାରେ ମାତ୍ର ଠାକୁର ଏକ । କିନ୍ତୁ ଏଠି ତେତିଶ କୋଟି ଦେବତା । ତାଙ୍କର ତେତିଶ କୋଟି ପୂଜକ । ପ୍ରତ୍ୟେକ ପୂଜାସ୍ଥ ଯାତ୍ରୀଙ୍କ ଠାରୁ କିଛି, ସେବକ ମାନେବି କିଛି କିଛି ମାଗନ୍ତି । ମାଗିବା ସ୍ୱାଭାବିକ । ଆମକୁ ଗୁଣ୍ଡମୁଣ୍ଡାରେ କଥା ବେଶିଗଲା ପରି ମନେ ହୁଏ । ପୁନଶ୍ଚ ଆଉ ଗୋଟିଏ କଥା । ଆପଣ ଅଧ୍ୟାପନା କରନ୍ତି । ସେଥି ପାଇଁ ଯଦି ସରକାର କାମ ବିନିମୟରେ ଦରମା ନ ଦେଇ ଆପଣଙ୍କ ପରିବାରକୁ ଦୁଇ ବେଳା ଖାଦ୍ୟ ଦିଅନ୍ତି , ତେବେ ଆପଣ ରାଜି ହେବେକି ? ହେବେ ନାହିଁ । କାରଣ ଆପଣଙ୍କ ଅନ୍ୟାନ୍ୟ ଆବଶ୍ୟକତା ରହିଛି । ସେଥି ପାଇଁ ଅର୍ଥ ଦରକାର । ତେଣୁ ଦୁର୍ନୀତି କରିବେ ଅଥବା ଓଳେଇ ଗାଈ ପରି ହେବେ , ଯାହା ଘଟୁଛି ପୁରୀ ମନ୍ଦିର ସେବାୟତଙ୍କ ପାଖରେ ।

ଲକ୍ଷ୍ୟ କଲି ପିଣ୍ଟୁର ବାପା ମୋ କଥାରେ ଯୁକ୍ତିଯୁକ୍ତତାକୁ ଗ୍ରହଣ କରି ମୁଣ୍ଡ ଝୁଙ୍କାଉ ଛନ୍ତି । ଉତ୍ସାହିତ ହୋଇ ମୁଁ କହିଲି ; ଜାଣନ୍ତି, ଅନ୍ୟ କେଉଁଠି ନୁହେଁ । କିନ୍ତୁ ପୁରୀ ପଣ୍ଡା ଦରକାର ପଡ଼ିଲେ ଯାତ୍ରୀଙ୍କ ପାଇଁ ଜୀବନ ଦେଇ ଦେବେ । ନିଜ ଭିତରେ ବରଂ ଯାତ୍ରୀ ପାଇଁ ହଣାମରା ହେବେ , ଅଥଚ ଯାତ୍ରୀଙ୍କୁ ନିରାପଦରେ ରଖିବେ । ଆପଣ ତାଙ୍କର ଆଶ୍ରୟ ନେଇଥିଲେ ରହିବା, ଖାଇବା, ବୁଲିବା, ଦର୍ଶନ କରିବା ସବୋପରି ରେଳରେ ରିଜରଭେସନ୍ କୌଣସି ଥିରେ ଅସୁବିଧା ହେବନି । ଖୁବ୍ ସାହାଯ୍ୟକାରୀ । କିନ୍ତୁ ହାଓଡ଼ା ଷ୍ଟେସନରେ କୁଲିକୁ ଟଙ୍କା ନଦେଲେ ଆପଣ ସାଧାରଣ ବଗିରେ ବସିବା ପାଇଁ ସିଟ୍ ପାଇବେ ନାହିଁ । ସେ ଅତ୍ୟାଚାର ପୁରୀରେ ଅଛି କି ?

: ହଁ ...... ହଁ ପଇସା ପାଇଲେ ସବୁ କରିବେ । ପିଣ୍ଟୁର ମା ବେଖା ଉଖ କଲାପରି ମନ୍ତବ୍ୟ ଦେଲେ ।

କଥାଟା ମୋତେ ବାଧିଲା । ମୁଁ କହିଲି-- ହଁ ଆଜ୍ଞା, ପଇସା ପାଇଲେ ସବୁ କରିବେ । ପଇସା ପାଇଁତ ସମସ୍ତେ ବ୍ୟାକୁଳ । ଦରମା ପାଇବା ଓ ପଇସା ଉପୁରି ନ ଦେଲେ କ୍ଲର୍କ ଫାଇଲ ପୁଟ୍ଅପ କରେନି । ପିଅନ ଟେବୁଲରୁ ଟେବୁଲକୁ ଫାଇଲ ନିଏ ନାହିଁ । ଅଫିସର ଅଡ଼ରସିଟ୍‌ରେ ଦସ୍ତ-ଖତ କରନ୍ତିନି । ଏପରିକି ବଫର୍ସରୁ କମାଣ , ଜର୍ମାନରୁ ଜାହାଜ କିଣା ହୁଏ ନାହିଁ କି ଏ ଦେଶର ଭୋଟର ଭୋଟ ଦିଅନ୍ତି ନାହିଁ । ଅଧ୍ୟାପକ ମାନେ ଉନରଥ ଲଗି ବହି ଲେଖନ୍ତି ନାହିଁ । ଆପଣଙ୍କ ଦେଶରେ ମନ୍ତ୍ରୀପଦ ବିକ୍ରି ହେଲେଣି, କମିସନ ଦେବା ନେବାରେ ଅପରାଧ ନାହିଁ । ଆମେ ତ ପୁଣି ନିର୍ବା-ଚନରେ ଅର୍ଥ ଖର୍ଚ୍ଚ କରୁଛୁ । ତାକୁ କେମିତି ଭରଣା କରିବୁ ? ଲାଞ୍ଚତ ନୁହେଁ କମିସନ । ସାଧୁ ଶବ୍ଦ । ଏଠିତ ପଣ୍ଡାଙ୍କ ପେଟ ପାଟଣା କଥା । ଯାତ୍ରୀମାନେତ ତାଙ୍କର ସବୁଜ ଶ୍ୟାମଳ ଶସ୍ୟ କ୍ଷେତ୍ର । ସେଇ ମାନଙ୍କୁ ନିର୍ଭର କଲେ ପଣ୍ଡାଙ୍କ ଚୁଲି ଜଳା ହେବ । ଆପଣଙ୍କ ଜମାର୍ଜନ ପାଇଁ କମିସନ ନେବାରେ ସେମାନଙ୍କର ଅପରାଧ କେଉଁଠି ?

ପିଣ୍ଟୁ ମା ଚୁପ୍ ହୋଇଗଲେ । ବାପା ତାର ମୁଣ୍ଡ ଝୁଙ୍କାଇ ହସିଲେ । ପିଣ୍ଟୁ ବାଁ ପାଖ ଯୁବକଙ୍କ ହାତରୁ ଗୁବ ଛଡ଼ାଇ ନେଇ ଖେଳିଲା କିଛି ସମୟ । ତା ପରେ କଣ ଭାବିଲା କେଜାଣି ଗୁବଟାକୁ ଫିଙ୍ଗି ଦେଇ ମୋ କାନ୍ଧ ଉପରେ ଠିଆ ହୋଇଗଲା । ପିଣ୍ଟୁ ମା ପାଟି କଲେ—ଏ ତୋ ପାଦରୁ ମଳି ଲାଗିବ ତାଙ୍କ ପ୍ୟାଣ୍ଟରେ । ଭଦ୍ର ମହିଳା ପିଣ୍ଟୁକୁ ନେବା ପାଇଁ ହାତ ବଢ଼ା-ଇଲେ । ନାଇଁ ......ନାଇଁ—କହି ପିଣ୍ଟୁ ନଯିବାର ଅନଗ୍ରହ, ମୋ ଉପରେ କୁଦା ହେଲା । ପିଣ୍ଟୁ ମା କହିଲେ— ହେ... ..ହେ ଦୁଷ୍ଟ ଯାହା କରୁଛୁ, କୁଦ

ହୁଅନ୍ତା । ବଡ଼ ଦୁଷ୍ଟଟା ହୋଇଛି ।

ପିଣ୍ଟୁ ମା'ଙ୍କ କଥାରେ ପୁଅ ପାଇଁ ବାତ୍ସଲ୍ୟ ଓ ସ୍ନେହ ଭରି ରହି ଥିଲା ଯେମିତି, ଗର୍ବ ବି ଥିଲା ସେମିତି । ମୁଁ ଉତ୍ତର ଦେଲି : ଏ ବୟସରେ ପିଲା ମାନଙ୍କର ଏ ରକମର ଦୁଷ୍ଟାମି ଟା ଭଲ ଲାଗେ । ଦେଖନ୍ତୁ, ପିଲାଟା ଯଦି ମୋ ପାଖରେ ବସି ରହନ୍ତା, ଖେଳନ୍ତା ନାହିଁ, କଣ ଭଲ ଲାଗନ୍ତା ? ପିଲାଏ ତ ଦୁଷ୍ଟାମି କଲେ ଘର ଗହଳ ହୁଏ । ପିଲାର ଠେକେଇ ଠେକେଇ ସ୍ୱଳ୍ପ ସୁନ୍ଦର ଦିଶେ । ଅଟେଇ ଅଟେଇ ଗୁଳୁର୍ ଗୁଳୁର କଥା କାନକୁ ମିଠା ମିଠା ଲାଗେ । ସେ ଗୁଳୁରେ ଥାଏ ଗୋଟିଏ ଅପୂର୍ବ ଛନ୍ଦ । ସେ କଥାରେ ଥାଏ ଅପୂର୍ବ ତାଳ ଓ ଲୟ । ପିଲାଟିଏ ଦୁଷ୍ଟାମି କରି ଘରେ ଖେଳିଲେ ଘର ହସିଉଠେ, ଘର ପୂରିଯାଏ । ପୂରିଯାଏ ମା ବାପାଙ୍କର ହୃଦୟ । ସେଥି ପାଇଁ ସନ୍ତାନଟିଏ ପାଇଁ ସମସ୍ତେ ବ୍ୟାକୁଳ । ସନ୍ତାନଟିଏ ନ ଆସିଲା ପର୍ଯ୍ୟନ୍ତ ମା'ର ପୃଥିବୀ ଶୂନ୍ୟ, ହାହାକାର, ଧୂସର ବର୍ଣ୍ଣ । ଏତିକି କହି ମୁଁ ନୀରବ ହୋଇ ଗଲି । କିନ୍ତୁ ଗୋଟିଏ ଚିନ୍ତା ମୋ ମନକୁ ବ୍ୟତିବ୍ୟସ୍ତ କରି ଦେଉଥିଲା । ଏଇ ପିଣ୍ଟୁ କାଲି ବଡ଼ ହୋଇ ଯିବ ଠିକ ଆମରି ମାନଙ୍କ ପରି । ତା ପୃଥିବୀ ଭିନ୍ନ ହୋଇଯିବ, ତା ହୃଦୟ ପୂରି ଯିବ ଛନ୍ଦ କପଟରେ । ତା କଥାର ଲୟ ବଦଳି ଯିବ । ପ୍ରତି କଥାରେ ତାର ଗୋଟିଏ ଲୟ ରହିବ । ପରିବେଶ ଓ ପରିସ୍ଥିତି ସହ ତାଳଦେଇ ସେ ଚାଲିବ, କଥା କହିବ, ଯେମିତି ତାର ସ୍ୱାର୍ଥ ସୁରକ୍ଷିତ ରହିବ ।

ପିଣ୍ଟୁ ମୋ ଉପରୁ କୁଦି ପଡ଼ିଲା ତଳକୁ । ମା' କୋଳକୁ ଉଠିଗଲା । ତା ପରେ ମା' ପାଖରେ ବସିଥିବା କଲେଜ ତରୁଣୀଙ୍କ ଠାରୁ ଆପ୍ରୋନଟା ଭିଡ଼ିଲା । ତରୁଣୀ ଜଣକ ଗ୍ରୀବା ଉପରେ ଆପ୍ରୋନଟା ଭିଡ଼ି ଧରିଲେ । ପୂର୍ବବତ୍ ସେହି ଲଜ୍ଜାଶୀଳା ରଙ୍ଗା ମୁହଁର ଆତଙ୍କିତ ଚାହାଣୀରେ ସବୁଯାତ୍ରୀଙ୍କ ମୁହଁକୁ ଚାହିଁଲେ । ପିଣ୍ଟୁ ମା ପିଣ୍ଟୁ ହାତରୁ ଆପ୍ରୋନଟା ଛଡ଼ାଇ ନେଲେ । ତରୁଣୀ ଜଣଙ୍କ ପିଣ୍ଟୁ ଗାଲରେ ହାତ ମାରି ଦେଲେ ।

ପିଣ୍ଟୁ ମା, ପିଣ୍ଟୁ ବାପାଙ୍କ ଆଡ଼କୁ ମୁହଁ କରି ତଳାମାରି ବସି ପଡ଼ିଲେ । ଉପର ପଟକୁ ପିଣ୍ଟୁର ମୁଣ୍ଡଟି କରି ପୁଣି ଥରେ ପିଣ୍ଟୁ ମୁହଁକୁ ପଣତରେ ଢାଙ୍କି ଦେଲେ ।

ଗାଡ଼ି ଅମ୍ କିନା ଠିଆ ହୋଇ ଗଲା । ପିଣ୍ଟୁର ବାପା ପଚାରିଲେ : ଏଠି ଗାଡ଼ି ଠିଆ ହେଲା ଯେ ? କଣ ଚେନ୍ ପୁଲ ହେଲା କି ?

: ନା, ଏଠି ଗୋଟେ ଷ୍ଟେସନ, କ୍ଷଣମାତ୍ର ହେବ ହୋଇଛି । ମୁଁ ଉତ୍ତର ଦେଲି ।

ଘଣ୍ଟାଏ ! ଆଶ୍ଚର୍ଯ୍ୟ ହୋଇଗଲେ ପିଣ୍ଟୁର ବାପା । ଖୋର୍ଦ୍ଧାରୋଡ଼ ଏହା ପରେ କେତୋଟି ଷ୍ଟେସନ ?

ମାତ୍ର ଦୁଇ କିଲୋମିଟର ।

ଦୁଇ କିଲୋମିଟର , ତଥାପି ଗୋଟେ ଷ୍ଟେସନ ! ପିଣ୍ଟୁର ବାପା ଅଦ୍ଭୁତ ଆଶ୍ଚର୍ଯ୍ୟ ହୋଇଗଲେ ।

ଗାଡ଼ି ହର୍ଣ୍ଣଦେଇ ଛାଡ଼ିଲା । ମୁଁ କହିଲି — ଦେଖନ୍ତୁ , ଏଠାକାର ଏମ୍. ପି. ପାଞ୍ଚବର୍ଷ ଭିତରେ କିଛି ତ ଗୋଟେ କରିଛନ୍ତି ବୋଲି ଆଗାମୀ ନିର୍ବାଚନରେ ଲୋକଙ୍କୁ କହିବେ । ସେଥିପାଇଁ ଏଠି ଗୋଟେ ପାସେଞ୍ଜର ହଲ୍ଟ କରିଛନ୍ତି । ଏ ରାଜ୍ୟର ଦ୍ରୁତ ପ୍ରଗତିର ଏଇଟା ଗୋଟେ ନମୁନା ଏବଂ ରେଳବାଇ ଓଡ଼ିଶା ପ୍ରତି ବୈମାତୃକ ଭାବ ପ୍ରଦର୍ଶନ କରୁନାହିଁ ବୋଲି ତାର ଏ ପ୍ରମାଣ ।

ପିଣ୍ଟୁ ବାପା ହସିଲେ । ଦେଶତ ଚାଲିଛି, ଏଇ ପ୍ରଗତି ମାର୍ଗରେ, ଯାହାକୁ ଅଧୋଗତି ବ୍ୟତୀତ କିଛି କୁହାଯିବ ନାହିଁ । ଷ୍ଟିମ ଇଂଜିନ୍ ଯୁକ୍ତ ପାସେଞ୍ଜର ଟ୍ରେନ୍‌ଟିଏ ପରି ଏ ଦେଶର ପ୍ରଗତି ।

ଶଗଡ଼ ଘରରୁ ଉନ୍ନତି ଆସିଛି : ମୁଁ ମନ୍ତବ୍ୟ ଦେଲି ।

ଗାଡ଼ି ଖୋର୍ଦ୍ଧାରୋଡ ଷ୍ଟେସନରେ ଠିଆ ହେଲା । ଆମେ ଆସିବା ପାଇଁ ଠିଆ ହେଲୁ । ପିଣ୍ଟୁର ପରିବାର ଟ୍ରେନ ବଦଳାଇବା ପାଇଁ ପ୍ରସ୍ତୁତ ହେଲେ । ପିଣ୍ଟୁ ମା'ଙ୍କ କୋଳରେ ନିଶ୍ଚିନ୍ତରେ ଶୋଇ ଯାଇଛି । ଇଚ୍ଛାହେଉଥିଲା ଆସିବା ବେଳେ ସ୍ନେହରେ ପିଣ୍ଟୁର ନାକକୁ ଟିକେ ଚିପି ଦିଅନ୍ତି ।

ଡାହାଣ ପାଖକୁ ହାତ ବଢ଼ାଇଲି ଢ଼ାଇଣଟି ପାଇଁ, ଦେଖିଲି ମୋ ପ୍ୟାଣ୍ଟର ଜଂଘ ଉପରେ ଦୁଇଟି କୁନି କୁନି ପାଦଚିହ୍ନ । ତାହା ପିଣ୍ଟୁର ।

□ ସେଲ୍ସ ଟ୍ୟାକ୍ସ କଲୋନୀ
ଜଟଣୀ - ପୁରୀ - ୨୫।୧୦।୫୦

## ଏକାଙ୍କୀକା ॥ ସତ ମିଛ ଊର୍ଦ୍ଧ୍ୱରେ

ଶରତ ନାରାୟଣ ବେହେରା

---

ଚନ୍ଦ୍ରମୋହନ ବାବୁଙ୍କ ବୈଠକଖାନା । ସୋଫା ସାଙ୍ଗକୁ ଦୁଇ ତିନଟା ଚୌକି ପଡ଼ିଛି । ପରଦା ଉଠିଲା ବେଳକୁ ଚନ୍ଦ୍ରମୋହନ ଗୋଟିଏ ସୋଫାରେ ଖବରକାଗଜ ପଢ଼ିବା ଅବସ୍ଥାରେ ଶୋଇ ପଡ଼ିଛନ୍ତି । ହଠାତ୍ ଚମକି ଉଠି ଘୃଣଆଡ଼କୁ ଥରେ ଆଖି ବୁଲେଇ ଆଣି ଚିତ୍କାର କଲେ

ଚନ୍ଦ୍ରମୋହନ — ଆବେ ଏ ଭୂରକୁଟି …ହୁଁ … ଯେତେବେଳେ ଦେଖିବ ନେକଟା ଶୋଇ ପଡ଼ୁଛୁ । (ପୁଣି ଡାକିଲେ) ଆବେ ଏ ଭୂରୁକୁଟି… ।

ଭୂରକୁଟି — (ହାତରେ ଗୋଟିଏ ବେଗଧରି ବଜାର ଆଣି ଫେରିଲା)ବାବୁ ମତେ ଡ଼ାକୁଥିଲ ?

ଚନ୍ଦ୍ରମୋହନ — (ଖଟେଇ ହୋଇ) ଆଜ୍ଞା ହଁ , ଆପଣଙ୍କୁ ଡ଼ାକୁଥିଲି । (ରାଗି ଯାଇ ) କୁଆଡେ ଯାଇଥିଲୁ ?

ଭୂରକୁଟି — (ହସି) ଯିବ ଆଉ କୁଆଡେ ବାବୁ , ଯେଉଁଠିକି ପଠଉଛ ଯାଉଛୁ । (ବେଗ ମୁହଁ ପାଖକୁ ନେଇ ଦେଖେଇ ) ଏଇ ମାଁଙ୍କ ଲାଗି ପାନ, ଗୁଣ୍ଡି , ମାମୁଁ ବାବୁଙ୍କ ଲାଗି ଗୁଡ଼ାଖୁ …

ଚନ୍ଦ୍ରମୋହନ — (ରାଗି) ଚୁପ୍‌କର । ହଇରେ ଏଇଟା ଧର୍ମଶାଳା ? ଯିଏ ଆସିଲା ବେଡ଼ିଂ ପକାଇ ଦେଲା !

ଭୂରକୁଟି — ବାବୁ, ମାମୁଁ ବାବୁଙ୍କ କଥା କହୁଛ ?

ଚନ୍ଦ୍ରମୋହନ — ମନେରଖ ଭୂରକୁଟି, ତୁ ଆଉ ମନଇଚ୍ଛା ଘରୁ ଗୋଡ଼ କାଢି ପାରିବୁ ନାହିଁ ।

ଭୂରକୁଟି — ( ଦେଖାଢର ଭାବ ଗଳାରେ ) ମୁ ଆଉ କୁଆଡେ ଯାଉଛୁ କି ? ଯେଉଁଠିକି ପଠଉଛ ଯାଉଛୁ ।

ଚନ୍ଦ୍ରମୋହନ — ତୁ ସତ କହୁଛୁ ? ମୁଁ ଯେଉଁଠିକି ପଠେଇଲେ ଖାଲି ସେଠିକି ଯାଉଛୁ ?

ଭୂରକୁଟି — ହଁ ।

ଚନ୍ଦ୍ର — ହଁ ?

ଭୂରକୁଟି — (ଦୃଢ଼କଣ୍ଠରେ) ହଁ ।

ଚନ୍ଦ୍ର — ନା ତୁ ମିଛ କହୁଛୁ ।
ଭୂରକୁଟି — ( ଆଶ୍ଚର୍ଯ୍ୟ ହୋଇ ) ମିଛ !! ନାଇଁତ ବାବୁ । ମୁଁ ଗୃହକର ହୋଇ ମିଛ କହିଲେ କଉଟା ଚୁଡ଼ା ପଡ଼ିବ ନାହିଁ ?
ଚନ୍ଦ୍ର — ତୁ କଥା ମିଛ କହୁଛୁ ।
ଭୂରକୁଟି — ଏଁ ! ( କଉଟା ଥରେ ଚାହାଁର କରି ) କାହିଁ ନାଇଁତ ?
ଚନ୍ଦ୍ର — ଫେଏର ...... ?
ଭୂରକୁଟି — ଏଇ ଦେଖି ନାହାଁନ୍ତି ( କଉ ବାହାର କରି ) କଉଟା ତ ଅଛୁ ଅଉ ମୁଁ ମିଛ କହିଲି କେତେବେଳେ ।
ଚନ୍ଦ୍ର — ଠିକ୍ ଅଛୁ , ମୁଁ ପ୍ରମାଣ କରି ଦେଉଛୁ ତୁ କେମିତି ମିଛ କହୁଛୁ । ଆଚ୍ଛା ଚନ୍ଦ୍ରକଳା ଯେଉଁଠିକି ପଠାନ୍ତି ତୁ ଯାଉ କି ନାହିଁ ?
ଭୂରକୁଟି — ( ଲାଜେଇ ମୁଣ୍ଡ ଆଉଁସିବା )
ଚନ୍ଦ୍ର — କଅଣ ? ଦେ ଉତ୍ତର ଏଥର ।
ଭୂରକୁଟି — ( ଲାଜୁଆ ହସ ହସି ) ମତେ ଗୃହକର କ'ଣ ପିତା ଲଗିଲଣି ବାବୁ ? ତୁମର ଅଫିସକାମରେ ଯେଉଁ ଲୋକମାନେ ଆସନ୍ତି ସେମାନେ ପରା ଆଗଯାଇ ମା'ଙ୍କୁ ସଲାମୀ ଦଅନ୍ତି । ହେଁ ହେଁ .... ... ।
ଚନ୍ଦ୍ର — ମୁଁ ଯାହା କହିବି ଅଉ ମା' ଯାହା କହିବେ ଏକା କଥା ? ଶୁଣିରଖ ଭୂରକୁଟି ଭବିଷ୍ୟତରେ ଆଉ ଥରେ ଯଦି ମିଛ କହିଛୁ ଘରୁ ବାହାର କରିଦେବି । ମୁଁ ମିଛକୁ ଘୃଣା କରେ ।
ଭୂରକୁଟି — ( କ'ଣ ଟିକଏ ଭାବି ଏଇ ପାଇଗଲି ପାଇଗଲି ମୁରୁକି ହସଟାଏ ହସି ) ବାବୁ ତମେ ମା'ଙ୍କୁ ଯେଉଁ କଥା କହ ?
ଚନ୍ଦ୍ର — ( ଲାଜେଇଯାଇ ) ଧେତ୍ ଭକୁଆ ... ଆରେ ବେଙ୍ଗା ମୁଁ କ'ଣ ତାଙ୍କୁ ମିଛ କହେ !
ଭୂରକୁଟି — ( ବିଶ୍ୱାସ କରି ନ ପାରି ଆଁ କରି ଅନାଇ ରହିଲା )
ଚନ୍ଦ୍ର — ( ହସି ) ମୁ ଜାଣେ ପରା ତୁ ଏକଦମ୍ ଭକୁଆ ଟାଏ । ଆରେ ବେଙ୍ଗା ସ୍ତ୍ରୀ ପାଖରେ ମିଛ କହିବାଟା କଣ ମିଛ ବୋଲି ଧରାଯାଏ ? ସେଇଟା ହେଲା କୂଟନୈତିକ ସତ । ମାନେ ହଁ ଟା ନାଇଁ ନାଇଁଟା ହଁ । ଆଚ୍ଛା ଭୂରକୁଟି , ତୁ ତୋର ସ୍ତ୍ରୀ ପାଖରେ ମିଛ କହୁ କି ନାହିଁ ?
ଭୂରକୁଟି — ନାଇଁ ତ ବାବୁ ।
ଚନ୍ଦ୍ର — ( ଚଢ଼ିଯାଇ ) ଫେଏର୍ ମିଛ କହିଲୁ ? ମାରିବି ଥାପଡ଼

ଯେ ...... । ଘରୁ ବାହାର କରିଦେବ କହୁଛ !!

ଭୂରକୁଟି — ମିଛ କେତେ ବେଳେ କହିଲି ?

ଚନ୍ଦ୍ର — ପୃଥିବୀରେ ଏମିତି ଗୋଟିଏ ସ୍ୱାମୀ ନାହିଁ ଯେ ତାର ସ୍ତ୍ରୀ ପାଖରେ ମିଛ କହି ନାହିଁ , ମିଛ ନ କହି କି କେହି କେବେ ଉପଯୁକ୍ତ ସ୍ୱାମୀ ହୋଇପାରେ ?

ଭୂରକୁଟି — ଠିକ କହୁଛ ବାବୁ ।

ଚନ୍ଦ୍ର — ଦେଖିଲୁ ତତେ କେମିତି ପକଡ଼ଉ କରିଦେଲି । ଏଇ ଟିକେ ଆଗରୁ କହିଲୁ ତୁ ତୋର ସ୍ତ୍ରୀ ଅଗରେ ମିଛ କହୁ ନାହୁଁ , ଏବେ ମାନିଗଲୁ । ହିଁ ହିଁ ।

ଭୂରକୁଟି — ( ଆଶ୍ଚର୍ଯ୍ୟ ହୋଇ ) ମାନିଲି କେତେବେଳେ ? ଯେଉଁ କଥା କହି ନାହିଁ, କହୁଛ ବୋଲି କେମିତି ମାନିବି ?

ଚନ୍ଦ୍ର — ( ଆଖି ବଡ ବଡ଼ କରି ) ଫେରେ ମିଛ କହିଲୁ ··· ଏମିତି ମିଛ କହିବୁ ଯଦି ଘରୁ ବାହାର କରିଦେବି କହୁଛି ।

ଭୂରକୁଟି — ( ଡରିଯାଇ ) ବଡ଼ ଅଡ଼ୁଆରେ ପକେଇଲ ବାବୁ ।

ଚନ୍ଦ୍ର — (ଖତେଇ ହୋଇ) କଣ ଅଡ଼ୁଆଟା ହୋଇଗଲା ଶୁଣେ ।

ଭୂରକୁଟି — ମୂଳରୁ ତ ମାଇପୋ ନାହିଁ, ମିଛ କହିବି କାହାକୁ ?

ଚନ୍ଦ୍ର — (ବିସ୍ମୟରେ) ଏଁ !! ତୁ ସତ କହୁଛୁ ଭୂରକୁଟି ତୁ ଏ ଯାଏ ବାହା ହୋଇ ନାହୁଁ ?

ଭୂରକୁଟି — ବାହା ଆଉ ହେଲି କେତେବେଳେ ? ଛୁଟି ନା ଧଇଲେ ତ··

ଚନ୍ଦ୍ରମୋହନ — ତୋଇବାରୁ ନେଇଁ । ତୋର ଛୁଟିନେବା ଦରକାର ନାହିଁ

ଭୂରକୁଟି — (ଡରିଯାଇ) ତେବେ କଣ ବାବୁ ଏମିତି ଅଭିଆଡ଼ା ହୋଇ ରହିଯିବି ?

ଚନ୍ଦ୍ରମୋହନ — (ଆନନ୍ଦରେ) ଅଭିଆଡ଼ା ରହିବୁ କାହିଁକି ? ଏଇଠି ତୋର ବାହାଘର କରିବା । ମୁଁ ତୋ ଲାଗି କନିଆ ଖୋଜିବି ।

ଭୂରକୁଟି — (ଭୟ ଓ ସନ୍ଦେହ ମିଶା ଗଳାରେ) ବାବୁ ତମେ ମୋ ପାଇଁ କନିଆ ଖୋଜିଦେବ ?

ଚନ୍ଦ୍ରମୋହନ — (ଗର୍ବରେ ହସି) କଣ ହେଲା ? ପାରିବି ନାହିଁ ବୋଲି ଭାବୁଛୁ ? ଆରେ ଭୂରକୁଟି ମୋ ପାଇଁ କିଏ ଖୋଜିଥିଲା କି ? ମୁଁ ସବୁ ନିଜେ ଖୋଜିଛି । ହେ ହେ······ ।

ଭୂରକୁଟି — ସେଇଥି ପାଇଁ ତ ଡର ଲାଗୁଛି ବାବୁ , ନିଜେ ଖୋଜିଲା ପରି ଗୋଟାଏ ....... ।

ଚନ୍ଦ୍ରମୋହନ — ଆରେ ଆରେ ଆରେ ତୁ ମଣିଷ ନା' ପାଇଜାମା ? ବାହ୍ୟା ହେବାକୁ ଡରୁଛୁ ?

ଭୃରକୁଟି — (ହସି ପାଇଜାମା ହୋଇଥିଲେ ତ ବାବୁ ଗୋଟେ କଥା-ଥିଲା, ସ୍ୱୀକାର ହେବାକୁ ପଡ଼ ନଥାନ୍ତା । (ତୁଣ୍ଡେଇ ବାକୁ ଚେଷ୍ଟାକରି) ମୁଁ କଣ କହୁଥିଲି କି ବାବୁ ତମେ ନନିଆ ଖାଂକିବ କହିଲ ତ ...... ।

ଚନ୍ଦ୍ରମୋହନ — କଣ ହୋଇଗଲା ସେଇଠୁ ? ମୋ ନିଜ ପାଇଁ ମୁଁ ନିଜେ ଖାଂକୁଛି କି ନାହିଁ ତୁ ମୋଁକୁ ପଚାରି ବୁଝ୍ ?

ଭୃରକୁଟି — (ଭୟରେ କାନ୍ଦ କାନ୍ଦ ହୋଇ) ନାଇଁ ବାବୁ ତମେ ମୋ ପାଇଁ କନିଆ ଖାଂକ ନାହିଁ । ଖୁବ ଡ଼ର ଲାଗୁଛି । ତମେ ନିଜ ପାଇଁ ଖାଂକିଲା ପରେ ଯଦି ଗୋଟାଏ ମୋ ବେକରେ ଝୁଲେଇ ଦିଅ ।

ଚନ୍ଦ୍ରମୋହନ — ଆରେ ବେଡ଼ା, ମୁଁ ନିଜେ ଖାଂକିଲେ କଣ ହେଲା ନୂଆ ନୂଆ ମୁଁ ବି ଡ଼ରୁଥିଲି । କିନ୍ତୁ ଏବେ ଦେଖ୍ କେମିତି ସବୁ ବେଳେ ତୋର ମା'କୁ ଡ଼ରେଇ କରି ରଖିଛି । ତୁ ବି ଡ଼ରେଇ କରି ରଖିବୁ ।

ଚନ୍ଦ୍ରକଳା — (ପଶି ଆସୁ ଆସୁ) କଣ ହେଲା କଣ ହେଲା, ଆଉ ଥରେ କହିଲଟି କଣ କହୁଥିଲ ?

ଚନ୍ଦ୍ରମୋହନ — (ଭୟରେ ବରଡ଼ା ପତ୍ର ପରି ଥରି ଯାଇ) ନାଇଁ ନାଇଁ ଚନ୍ଦ୍ରକଳା, ମୁଁ ଏଇ ଭୃରକୁଟିର ବାହାଘର କଥା କହୁଥିଲି ।

ଚନ୍ଦ୍ରକଳା — ଆଗେ ନିଜ କଥା ବୁଝ ତା ପରେ ଭୃରକୁଟି କଥା ଚିନ୍ତା କରିବ ।

ଚନ୍ଦ୍ରମୋହନ — ମୁଁ କଣ କହୁଥିଲି କି ଚନ୍ଦ୍ରକଳା, ଏବେ ଭୃରକୁଟି ମୋର କାମ କରୁଛି, ସେ ବାହାହେଲେ ତାର କନିଆ ତୁମର କାମ କରିବ, ହୁକୁମକୁ ହାଜର । ହା ହା... ।

ଚନ୍ଦ୍ରକଳା — (ବିରକ୍ତ ହୋଇ) କହିଲି ପରା ନିଜ କଥା ଆଗେ ଚିନ୍ତା କର ।

ଭୃରକୁଟି — ମା' ମୁଁ ବି ସେଇ କଥା କହୁଥିଲି ।

ଚନ୍ଦ୍ରମୋହନ — ଚୁପ୍, ଯା ପଳା ଏଠୁ ।

ଭୃରକୁଟି — (ଯିବାକୁ ପାଦ ବଢ଼େଇ) ଏଇ ଗଲି ।

ଚନ୍ଦ୍ରମୋହନ — ଆରେ ଆରେ ଏ ଭୃରକୁଟି ।

ଭୁରକୁଟି — (ଫେରି ଆସି) ଫେର ଡ଼ାକଲ ଯେ ବାବୁ ।
ଚନ୍ଦ୍ରକଳା — ଯା ଗ୍ରେଷେଇ ଆରମ୍ଭ କର ।
ଚନ୍ଦ୍ରମୋହନ -- ସେ ପଙ୍ଖା କଣ ହେଲା ?
ଭୁରକୁଟି — ପଙ୍ଖାବାଲା ବଦେଲେଇବାକୁ ମନାକଲା, ମତେ ଗାଳିଦେଲା ।
ଚନ୍ଦ୍ରକଳା — ତେବେ ଏହା ଭିତରେ ନୂଆ ପଙ୍ଖାବି କଣା ସରିଲଣି, ଆଣିବୁ ଦେଖିବା ।
ଚନ୍ଦ୍ରମୋହନ — ଓଃ ଏଯେଉଁ ଗରମ ମଣିଷକୁ ପାଗଳ କରିଦେବେ ଏମାନେ । ଠିକ୍ ଗରମ ହେଲା ବେଳକୁ କରେଣ୍ଟ ନାହିଁ, ରାତିରେ ଉଠି ବାଥରୁମ ଗଲା ବେଳେ ଦେଖିବ କରେଣ୍ଟ ନାହିଁ ।
ଚନ୍ଦ୍ରକଳା — ତମ ମୁଣ୍ଡର କରେଣ୍ଟ ଠିକ ଅଛି ତ ? ହୁଁ ସେ ଧ୍ୱସ୍ତ ପୁଡା ପିଇଲେ ଦେହ ଗରମ ହେବ ନାହିଁ ।
( ବାହାରେ କବାଟରେ ଧଡ଼ ଧଡ ଶବ୍ଦ )
ଚନ୍ଦ୍ରମୋହନ — ହେଇ ସେମାନେ ଆସି ଗଲେଣି । ଏଇ ଗରମରେ କେଉଁଠି କେମିତି ବସେଇବ କହିଲ ? ସମସ୍ତେ ପାଗଳ ହୋଇଯିବେ । (ଡ଼ାକିବା) ଅରେ ଏ ଭୁରକୁଟି । ମନା କରିଦେ ସେମାନଙ୍କୁ । କହ ବାବୁ ଘରେ ନାହାଁନ୍ତି ।
( ପଶି ଆସିଲେ ମନ୍ଦରଧର । ପଛେ ପଛେ ଭୁରକୁଟି )
ମନ୍ଦରଧର — ଆଉ ମନା କରିବା ଦରକାର ନାହିଁ ଭେଣୋଇ.. ମୁଁ ଆସିଗଲିଣି । (ହସିବା)
ଚନ୍ଦ୍ରମୋହନ — (ଧିରସ୍ବରେ ହୁଁ .... ଧନ୍ଦୁଙ୍କର ... ତାପରେ ମନ୍ଦରଧର । ସ୍ୱାଗତମ ଧର୍ମଶାଳା !!
ଚନ୍ଦ୍ରକଳା — ଚୁପ୍ କର । ଆରେ ମନ୍ଦର ତୁ .... ହେଇ ଦେଖ ତୋର ଭେଣେଇ କେମିତି ବଢିଆ ତାଳପତ୍ର ପଙ୍ଖାଟେ କରିଛନ୍ତି ।
( ଭୁରକୁଟି ତାଳପତ୍ର ପଙ୍ଖାଟି ଧରି ଠିଆ ହୋଇଥିଲା )
ମନ୍ଦରଧର — ହଠାତ୍ ଏଇ ତାଳପତ୍ର ପଙ୍ଖା ଉପରେ ଭେଣୋଇ ବାବୁଙ୍କର ମାୟା ଲଗିଗଲା କେମିତି ? ଏଇ ଗଲା ଖରା ଛୁଟିରେ ଯାଇ-ଥିଲେ ଯେ ପରା କହିଲେ ସିଲିଂ ଫେନ ଚଳେଇ ଶୋଇଲେ ହାଇଡ଼ୁ ମଶା ଘୁରୁଛନ୍ତି ବୋଲି । ଆମ ଘରୁ ଗୋଟେ ପଙ୍ଖା ଆଣିଥିଲେ !!
ଚନ୍ଦ୍ରମୋହନ — ସେଇ ପଙ୍ଖାକୁ ଟଙ୍କାଏ ନେଇଛୁ ଅଥଚ ହନେବ କାମ

ଦେଲ ନାହିଁ । ସବୁଙ୍କି ଚଲ ବଦଳେଇବାକୁ କହୁଲେ ମନା କରୁଛୁ । ନହ୍ଵାଣ ବଦମାସ ଗୁଣ୍ଡା ।

ମନ୍ଦରଧର — ଆଗୁ ଭୂରକୁଟି ସେ ନଆ ପଙ୍ଖାଟା ସବୁଙ୍କିଲ କେମିତ ?

ଭୂରକୁଟି — (ଲଜେଇ) କଥା କଣକ ମାମୁଁ ବାବୁ , କାଲି ପଙ୍ଖାଟା ଯେମିତ ଆଣିଛୁ ବାବୁ ଧୂକ ହେବାକୁ ଆରମ୍ଭ କଲେ । ଝାଳୁଆ ଦେହରେ ଯେମିତ ଶୀତଳ ବାଆ ବାଜିଲ ଆଖିକୁ ତ ନଦ ଆସିଗଲ । ବାବୁ ଶୋଇ ପଡ଼ିଲେ । ( ଦୁଃଖରେ ସବୁଙ୍କି ପଡ଼ିଲା ପରି ) ଏବେ ମୋର ଦୋଷ ଦେଉଛନ୍ତି ।

ଚନ୍ଦ୍ରମୋହନ — ଶୁଣ ଭୂରକୁଟି , ତୁ ସେ ପଙ୍ଖାଟା ନେଇ ନୂଆ ପଙ୍ଖାଟେ ବଦଳେଇ ନ ଆଣିବା ଯାଏ ତୋର କଛୁ କଥା ଶୁଣାଯିବ ନାହିଁ । ବଦମାସ କାହିଁକା ।

ଭୂରକୁଟି — (କାନ୍ଦ କାନ୍ଦ ହୋଇ) ବାବୁ ସେ ପଙ୍ଖାବାଲା ତ କହୁଛୁ ତୁମ ବାବୁ ଧୂକହୋଇ ନ ଜାଣି ପଙ୍ଖାର ଦୋଷ ଦେଉଛନ୍ତି । ମୁଁ କଣ କରିବ ଯେ !

ଚନ୍ଦ୍ରମୋହନ — ( ଖଚେଇ ହୋଇ ) ତାକୁ ପଗ୍ଚରିଲୁ ନାହିଁ କେମିତ ଧୂକ ହେବାକୁ ପଡ଼ିବ ।

ଭୂରକୁଟି — ( ଖୁସିହୋଇ ) ମୁଁ କଣ ସେ କଥା ପଗ୍ଚରିବାକୁ ଗ୍ରୁଡ଼ିଛୁ ସବୁଛନ୍ତି ...... ହିଁ ହିଁ ।

ମନ୍ଦରଧର — କେମିତ ଧୂକ ହେବାକୁ ଶିଖେଇଛୁ ବତେଇବୁ ଅରେ ।

ଭୂରକୁଟି — ଏକଦମ ସହଜ ଉପାୟ ବାବୁ , ଆମ ବାବୁ ଗ୍ରୁହିଁଲେ କରି ପାରିବେ ।

ମନ୍ଦରଧର — [ହସି ହସି] ଆରେ ଅରେ ସେ କଳା ପ୍ରଦର୍ଶନ କର ।

ଭୂରକୁଟି — ଏଇ ଦେଖନ୍ତୁ ମାମୁଁ ବାବୁ, ଏଇ ଏମିତ ମୁହଁ ଆଡ଼େ ମୁହାଁଇ ପଙ୍ଖାଟାକୁ ଗ୍ରୁଟକରି ଧରିବ । ପଙ୍ଖା ଏଦଦମ ହଲଚଲ ହେବ ନାହିଁ । ମୁହଁଟା ମାନେ ବେକ ଉପରୁ ମୁଣ୍ଡଟା [ନଜର ମୁଣ୍ଡ ହଲେଇ] ବାମ ଡ଼ାହାଣ , ବାମ ଡ଼ାହାଣ ହେଉଥିବ । ତା ହେଲେ ଆପେ ଆପେ ପବନ ବାଜିବ ମୁହଁରେ ।

ମନ୍ଦରଧର — ତା ମାନେ ପଙ୍ଖା ହଲବ ନାହିଁ ମୁଣ୍ଡ ହଲୁଥିବ ?

ଭୂରକୁଟି — ହଁ ମାମୁଁ ବାବୁ । କେତେ ସହଜ କାମ ।

[ ସମସ୍ତେ ହୋ ହୋଇ କରି ହସିବା ]

ମନ୍ଦରଧର — ବୁଝିଲୁ ଭୂରକୁଟି ସେ ପଙ୍ଖାବାଲା ଖାସା ବୁଦ୍ଧିଟାଏ ବତେ-

ଇଚ୍ଛା ତମ ବାବୁଙ୍କ ଶୀତଳ ହେବାକୁ ।

ଚନ୍ଦ୍ରମୋହନ — [ବିରକ୍ତରେ] ଓଃ......ଏଇ ଗରମ ପାଗକୁ ତମ ମାନଙ୍କର ହାସ୍ୟରୋଳ , ଲୋକ ଲୋକ ମଣିଷ ପାଗଳ ହୋଇଯିବ ।

ମନ୍ଦରଧର — ତମେ ଯେତ ଭେଣେଇ ପଣ୍ଡିଙ୍କ ନଗନ୍ଥ ପାଗଳ ହେବାକୁ ତେବେ ଚନ୍ଦ୍ରକଳା ନାମୀ ବି ତାକୁ ବନ୍ଦ କରି ପାରିବ ନାହିଁ ।

ଚନ୍ଦ୍ରମୋହନ — କହେ। ମୁଁ ଗୃହିଣୀ କରି ? ଏଇ ବିଜୁଳି ବାଲା ଯେଉଁ ଠିକ୍ ଗରମ ବେଳେ ବିଜୁଳି ବନ୍ଦ କରୁଛନ୍ତି, ପୁଣି ଏଇ ପଙ୍ଖାବାଲା ହକ ଟଙ୍କାଏ ନେଇ ପଙ୍ଖା ବିକୁଛି, ଅଥଚ ଘନଟେ ସ୍ୱର୍ଗ ଯାଉଛି । ଖାସ ଏଇଥିରେ ହିମାଳୟ ବାସୀ ମୁନୀ ଋଷି ମାନେ ବି ପାଗଳ ହୋଇଯିବେ । ମୁଁ ତ ଅତି ଛାର ।

ନନ୍ଦରଧର — ଜନ୍ମ ଭେଣେଇ, ଆମେ ଆଖିରେ ଜଳଜଳ କରି ଦେଖି ପାରୁଛୁଁ ଯେ ତୁମେ ଜାଣି ଶୁଣି ଗରମରେ ପଡ଼ି ପାଗଳ ହେବାକୁ ଇଚ୍ଛା କରୁଛ ।

ଭୂରକୁଟି — ( ପାହାସ ପାଇ ) ହଁ ମାମୁଁ ବାବୁ, ଧୁକହୋଇ ନ ଜାଣି ପଙ୍ଖାର ଦୋଷ ଦେଉଛନ୍ତି ।

ଚନ୍ଦ୍ରମୋହନ — (ରାଗିଯାଇ) ଚୁପ୍ କର ବାତୁଳ । ଆଜ୍ଞା ବାବୁ ମନ୍ଦରଧର । ତୁମକୁ କିଣ ତୁମର ନାମୀ ଆମଦାନୀ କରି ଆଣିଛନ୍ତି ମତେ ପାଗଳ କରିବାକୁ ?

ଚନ୍ଦ୍ରକଳା — ମଲ୍ଲ ମଲ୍ଲ ମଲ୍ଲ , କହେ। କିଏ କାହିଁକି ତୁମକୁ ପାଗଳ କରିବ , ତମେ ପଗ୍ର ଝଳେ ମାଗି ଗରମ ପହୁଜ ।

ଚନ୍ଦ୍ରମୋହନ — ମାନେ ?

ଚନ୍ଦ୍ରକଳା — ମାନେ ? ଯିବୁ ଭୂରକୁଟି ପୁଇଚଟା ଅନ କରି ତୋର ବାବୁଙ୍କ ମୁଣ୍ଡକୁ କରେଣ୍ଟ ଗୁଣ୍ଡ ଦେବୁ ।

ଚନ୍ଦ୍ରମୋହନ — ଏଁ !! କରେଣ୍ଟ ଅଛୁ ଆଉ ଏଇ ଭୂରକୁଟି ମତେ ଗରମରେ ବସେଇଛୁ ।

ଚନ୍ଦ୍ରକଳା — ଭୂରକୁଟି ଯା ମାମୁଁ ବାବୁଙ୍କ ଲାଗି ଚା କପେ ଆଣିବୁ ।

ଚନ୍ଦ୍ରମୋହନ — ଦୁଇ କପ ଆଣିବୁ ।

ଚନ୍ଦ୍ରକଳା — ନା ନା ; ସେମିତ ପଙ୍ଖା ନ ଚଳେଇ ମୁଣ୍ଡ ଖରାପ କରିଛ , ପୁଣି ଚା ପିଇ କାହିଁକି ଅଧିକ ମୁଣ୍ଡ ଖରାପ କରିବ ।

ଚନ୍ଦ୍ରମୋହନ — (ହସି) ମୁଁ କଣ ଚା ମୋ ପାଇଁ କହୁଥିଲି । ତମେ ଏବେ ବାପ ଘରୁ ଫେରିଲ ତ , ଚା କପେ ପିଇବ ବୋଲି

କହୁଥିଲ ।

ଚନ୍ଦ୍ରକଳା — ଆହା: ହଁ ମଣ ଯାଏଁ ନି । ମୋ ପାଇଁ କେତେ ଝିଅଲ ଉମର ।

ମନ୍ଦରଧର — ତୁ ଯାହା କହୁ ନାନି, ଭେଣେଇଙ୍କ ମୁଣ୍ଡ କେତେବେଳେ ଅରେ ଅଧେ କାମ ନ କଲେବ ଠିକ୍ ଅଛୁ ।

ଚନ୍ଦ୍ରକଳା — ଆଉ ସେଇ ଅରେ ଅଧେ ମୁଣ୍ଡ ଖରାପ ଥିଲ ବେଳେ ଅନ୍ୟଙ୍କୁ ପାଗଳ ଭାବନ୍ତ । ହିଁ ହିଁ ...... ।

ମନ୍ଦରଧର — ଏ କଥା ସତ ଭେଣେଇ ?

ଚନ୍ଦ୍ରକଳା — ହେଇ ଭୂରକୁଟି ଆସିଲଣି, ତାକୁ ପଚାର ସେଥର ତାକୁ ପାଗଳା ଗାରଦକୁ ଡାକ ନେଇ ଥିଲେ କି ନାହିଁ ।

ମନ୍ଦରଧର — ଭେଣେଇ ଏ କଥା ସତ ? ନାନି, ମୁଁ ଆଉ ତୁମ ଘରକୁ ଆସିବ ନାହିଁରେ ବାବା, ଭେଣେଇ ଯଦି କେତେବେଳେ ମତେ ନେଇ ପାଗଳ ଖାନା ଭିତରେ ଭରିଦେବେ !

ଚନ୍ଦ୍ରକଳା — ନା ସ୍ୱଇ ଆଉ ସେ ଭୟ ନାହିଁ । ଏବେ ସବୁ ବନ୍ଦ ।

ମନ୍ଦରଧର — ମୁଁ ପରଶୁ ସେଇ କଥା ତ ଲକ୍ଷ୍ୟ କରୁଥିଲି ।

ଚନ୍ଦ୍ରମୋହନ — ପୁଣି ଗୋଇନ୍ଦାଗିରି ଆରମ୍ଭ କରିଦେଲ ?

ମନ୍ଦରଧର — (ହସି) କଣ କରିବ ଭେଣେଇ ଅଭ୍ୟାସଟା ଛାଡ଼ି ହେଉ ନାହିଁ । ଏଇ ଯେମିତି ତୁମେ ନଶ ଖାଇବା ଛାଡ଼ିଲେ କଣ ହେବ ଆନୁସଙ୍ଗିକ ଅଭ୍ୟାସ ରହିଯାଇଛି । ଘରେ ଆଲୁଅ ଜଳୁଛି ଅଥଚ କରେଣ୍ଟ ନାହିଁ ବୋଲି ପଙ୍ଖାର ସୁଇଚ ଅନ କରୁ ନାହିଁ ।

ଚନ୍ଦ୍ରକଳା — ଏ ଭୂରକୁଟି ମାମୁଁ ବାବୁଙ୍କୁ ତମର ସେ ଡାକ୍ତର ଖାନାକୁ ଯିବା କଥାଟା କହୁ ଦେବୁ ।

ଭୂରକୁଟି — ଡାକ୍ତର ଖାନା ନୁହେଁ ମାଁ ପାଗଳଖାନା ।

ଚନ୍ଦ୍ରମୋହନ — (ରାଗି) ତୁ ପଳାଏଠୁ ଭୂରକୁଟି ।

ମନ୍ଦରଧର — ଆରେ ତାକୁ ତଡ଼ୁଛ କାହିଁକି ସେତ ଅସଲ ସାକ୍ଷୀ ।

ଚନ୍ଦ୍ରକଳା — ତା ହେଲେ ମୁଁ ଘଟଣାଟି ଠିକେ ଠିକେ କହୁ ଦେଉଛୁ । କଥା କଣ କି ଗଲ ଦଶରା ବେଳେ ମୁଁ ଯେଉଁ ଘରକୁ ଯାଇଥିଲି, ତେବେ ତୋର ଭେଣେଇ ଏଇ ଭୂରକୁଟିକୁ ସାଙ୍ଗରେ ନେଇ ଡାକ୍ତର ପାଖକୁ ଗଲେ ।

ଚନ୍ଦ୍ରମୋହନ — ଏ ମନ୍ଦରଧର, ତମେ ସେ ଗୁଲଖଟି ଶପ କାହିଁକି ଶୁଣୁଛ ?

ମନ୍ଦରଧର — (ହସି) ଗୁଲ୍‌ଝଟି ଗପ ହେଲେବ ଶୁଣିନେଲେ ଛଡ଼ କଣ ? ତୁମେ କହ ଜାଣ ।

ଚନ୍ଦ୍ରକଳା — ହଁ ଭୁରକୁଟିକୁ ଡାକ୍ତରବାବୁ ସାମନାରେ ଠିଆ କରାଇ କହିଲେ , ଏହାର ମୁଣ୍ଡ ଖରାପ ହୋଇ ଯାଇଛି । ଡାକ୍ତର ବାବୁ ତ ପଣ୍ଡିତ ଲୋକ । ସଙ୍ଗେ ସଙ୍ଗେ ଡାକ୍ତରବାବୁ ଭୁର-କୁଟିକୁ ଗୋଟିଏ ପରେ ଗୋଟିଏ ପ୍ରଶ୍ନ ପଚାରିଲେ । ଏବ ବାହାଦୂର କହିବ ତୁମର ଭେଣୋଇଙ୍କୁ , ଭୁରକୁଟିକୁ ମୁହଁ ଖୋଲିବାକୁ ନ ଦେଇ ସବୁ ପ୍ରଶ୍ନର ଉତ୍ତର କହେଇଦେଲେ ।

ମନ୍ଦରଧର — ଏଁ ସବୁ ପ୍ରଶ୍ନର ଉତ୍ତର ଭେଣେଇ ଦେଇ ଦେଲେ ? କେମିତି ହେବ ନାହିଁ । ଏକା ରୋଗକୁ ଏକା ପ୍ରଶ୍ନ (ହସିବା)

ଚନ୍ଦ୍ରମୋହନ — ଏ ଏ ମନ୍ଦରଧର

ଚନ୍ଦ୍ରକଳା — ( ସ୍ୱାମୀଙ୍କୁ କହିବାକୁ ନ ଦେଇ ) ତୁ ତାଙ୍କ କଥା ଶୁଣ ନାହିଁ ଭ ମନ୍ଦର , ମୁଁ କଥାଟା ଶେଷ କରିଦେଲେ ପୁଣି ଗନ୍ଧା ଆରମ୍ଭ କରିବ ।

ମନ୍ଦରଧର — ହଁ ତୁମେ ଆଗ ଶେଷ କରିଦଅ କଥାଟା । ଡ଼ାକ୍ତରବାବୁଙ୍କ ସବୁ ପ୍ରଶ୍ନର ଉତ୍ତର ଭେଣେଇ ଦେଲେ । ତା ପରେ କଣ ହେଲା କହ ।

ଚନ୍ଦ୍ରକଳା — ହଁ ସବୁ ଶୁଣି ସାରିଲା ପରେ କଣ ଟିକଏ ଭାବି କହିଲେ- ଠିକ୍ ଅଛି, ଭର୍ତ୍ତି କରିଦେବା । ସଙ୍ଗେ ସଙ୍ଗେ ତୋର ଭେଣୋଇ କହିଲେ , ମୁଁ ଠିକ ଜାଣିଥିଲି ଏହାର ମୁଣ୍ଡ ଖରାପ ହୋଇ ଯାଇଛି । ଯା ଭୁରକୁଟି , ଡ଼ାକ୍ତରବାବୁ ଭର୍ତ୍ତି କରିଦେବେ । ଏ କଥା ଶୁଣି ଭୁରକୁଟି ଡରିଯାଇ କହିଲା , ନାଇଁ ଡାକ୍ତରବାବୁ ମୋର କିଛି ହୋଇନାହିଁ , ବାବୁଙ୍କର ... । ମୁରୁକି ହସି ଡାକ୍ତରବାବୁ କହିଲେ , ଗୁଲ ଚନ୍ଦ୍ରମୋହନ , ବେଶି ଦିନ ରହିବାକୁ ପଡ଼ିବ ନାହିଁ । ସାତ ଆଠ ଦିନ ପରେ ଛାଡ଼ି ଦେବ ଘରକୁ । ତା ପରେ ଘରେ ଚିକିତ୍ସା କରିହେବ ।

ମନ୍ଦରଧର ଏଁ ଭେଣେଇ ...... !!

ଚନ୍ଦ୍ରକଳା — (ହସି) ହଁ ।

ଚନ୍ଦ୍ରମୋହନ — ସବୁ ମିଛ । [ରାଗି ] ଥାବେ ଭୁରକୁଟି ଏ କଥା ସତ ?

ଭୁରକୁଟି — ତୁହିଁଲ ମାମୁଁ ବାବୁ , ଡ଼ାକ୍ତରବାବୁ ଆମ ବାବୁଙ୍କୁ ଡାକ୍ତର

ଖାନାରେ ଭର୍ତ୍ତି ହେବାକୁ କହିବା ଆଗରୁ ମତେ ଡକୁଥିଲେ । କାଲୁ ସେ କଥା ଶୁଣି ଆମ ବାବୁ ଯେଉଁ ଭାଷଣ ଝାଡ଼ିଲେ ଷ୍ଟାଫ ଭର ସାମ୍ନା ବାବୁ , ସେମିତ ଭାଷଣ ମୁଁ ଶୁଣିନାହିଁ କେଉଁଠି ।

ଚନ୍ଦ୍ରମୋହନ — [ଗମ୍ଭୀର ହୋଇ] ପ୍ରିନ୍ସ ସୁନ୍ଦରଟାଙ୍କୁ ପାଗଳାଗାରଦରେ ଭର୍ତ୍ତି କଲେ ଖରାପ ଲାଗିବ ନାହିଁ ?

ଭୁରକୁଟି — ବାପୁଙ୍କ ଭାଷଣ ଶୁଣି ଡାକ୍ତରବାବୁ ମତେ ଗୁଣ୍ଡ ବାବୁଙ୍କ ଭର୍ତ୍ତି କରିଦେଲେ । [ହସିବା]

ଚନ୍ଦ୍ରମୋହନ — ସେ ଉରନ୍ତୁ ଡାକ୍ତର ପାଗଳ ଟାଏ ।

ମନ୍ଦରଧର — [ହସି] ନାଜ , ଏଠି ଯାହା ଦେଖୁଛୁ କଏ ସତ କଏ ମିଛ ଜାଣିବା ମୁସ୍କିଲ । ମୁଁ ଚଳିଲି । [ଯେଉଁ ଅଟାର ଧଣ ପ୍ରବେଶ କରିଥିଲେ ତାଙ୍କୁ ଧରି ଟିଏ ହେଲେ ଯିବାକୁ ]

[ ଧୀରେ ଧୀରେ ସମସ୍ତେ ଫ୍ରିଜ ହୋଇଗଲେ । ପରଦା ପଡ଼ିବା ଦୃଷ୍ଟ ଭ ଅନ୍ଧାରରେ ସମସ୍ତେ ଖାଲି ଛୁଇ ପଣ ଦେଖାଇଲେ । ]

ମଣିପୁରୀ ଗଳ୍ପ ଲେଖିକା ଶ୍ରୀମତୀ ବିନୋଦିନୀ ଦେବୀ ୧୯୨୨ ମସିହାରେ ଇଂଫାଲରେ ଜନ୍ମ ହୋଇଥିଲେ । ପ୍ରତିଦିନ ଆଖିରେ ପଡୁଥିବା ଛୋଟ ଛୋଟ ଦୃଶ୍ୟ ଯାହାକୁ ସମସ୍ତେ ଏଡ଼ାଇ ଦିଅନ୍ତି, ତାହାର ଉପରେ ରଚିତ ସଫଳ କାହାଣୀ ଗୁଡ଼ିକ ତାଙ୍କ ରଚନାର ବିଶେଷତ୍ୱ । ଇଂରେଜୀ ଗଳ୍ପ ଲେଖିକା କାଥେରିନ୍ ମ୍ୟାନସଫିଲ୍ଡଙ୍କ ଶିଳ୍ପକାରିତା ତାଙ୍କ ଗଳ୍ପରେ ଠାଏ ଠାଏ ଉତ୍ତୀର୍ଣ୍ଣ ହୋଇଛି । ୧୯୭୯ ମସିହାରେ ତାଙ୍କର ଏକ ଉପନ୍ୟାସ ସାହିତ୍ୟ ଆକାଦେମୀର ପୁରସ୍କାର ଲାଭ କରିଥିଲା । ............

# ମରୁଭୂମିର ଫୁଲ

## ଏମ୍. କେ. ବିନୋଦିନୀ ଦେବୀ

---

ସକାଳର ପ୍ରାର୍ଥନା ସରିଯାଇଥାଏ । ସଦ୍ୟ ଜଳରୁ ଉଠିଥାଏ । ସ୍ୱିବଲ ସାଫ୍ ହୋଇ ଗାଧୋଇ ନେବ । ବାଥ୍ ରୁମରେ ପଶି ମୁଣ୍ଡ ଧୋଇଛୁ କି ନାହିଁ ସେଇ ଚିରପରିଚିତ, ସବୁଦିନିଆଁ ଡ଼ାକ ଶୁଭିଲା "ଇଚେଇମ୍ ଇ ବେବୋ, ( ଭାଉଜ ଘରେ ଅଛନ୍ତି କି ? )" ସେଇ ସଇତାନ୍ ଛଡ଼ା ଆଉ କିଏ ହୋଇପାରେ ? ତମେ ଗାଧୋଉଥିବ କି ଖାଇବା ପାଇଁ ବସିଥିବ ଆସି ହାଜର ହୋଇଯିବ । ତା'କୁ ତ ମୁଁ ଅନେକ ଦିନ ହେଲା ଜାଣିଛି । ପଡ଼ୋଶୀ ଘରେ ରୁହେ । ଏବେ ତ ମୁଁ ବିବାହିତା, ତଥାପି ସେ ତା' କାଜକାମରେ ମୋତେ ବିରକ୍ତ କରିବା ଛାଡ଼ିନାହିଁ । ବିଜୁଳି, ଘଡ଼ଘଡ଼ି ଭଳି କେତେବେଳେ ଆସିବ, କେଉଁବେଳେ ଯିବ ଜାଣିବା ମୁସ୍କିଲ୍ ।

ଘରର ଚାକରାଣୀ ତା'କୁ କହୁଥିବା ମୋତେ ଶୁଭିଲା, "ମା', ଗାଧୁଆଘରେ ଅଛନ୍ତି ।"

'କେତେବେଳେ ଆସିବେ ? ତାଙ୍କୁ କୁହ ଶୀଘ୍ର ସାରନ୍ତୁ ।

ମୁଁ ଚରଚରରେ ଅଛୁ ।"

ତା' କଥାର ଅଳ୍ପ ଅଳ୍ପ ମୋ' କାନରେ ପଡ଼ୁଥାଏ । ମୋତେ ବି କୌତୁକଆ ଲାଗୁଥାଏ । ଦେଖନା କେମିତି ଚଳନ୍ତ । ଅଶ୍ଚର୍ଯ୍ୟ ବି ହେଉଥାଏ ଜଣେ ମଣିଷ ଆଉ ଜଣକ ଉପରେ କେମିତି ଏତେ ଜୁଲୁମ୍ କରିପାରେ ! ପୁଣି ଭାବିଲି ଏକା ସ୍ଥିତି ଓ ଚନ୍ତାଧାରାରେ ଥିଲେ ହିଁ ଜଣେ ଅନ୍ୟ ଜଣକ ପାଖରେ ମିଶି ପାରିବ । ତେବେ ଏ ଲୋକଟି ସହିତ ମୋ'ର କି ସାମଂଜସ୍ୟ ଅଛି ? ଦେଖିଲି କେବଳ ସେ ସମାଜର କେଉଁଠି . ଅଉ ମୁଁ କେଉଁଠି । ଆମ ଭିତରେ କେତେ ତାରତମ୍ୟ ! ଅଥଚ ସେ ମୋତେ ବାରଂବାର ବ୍ୟସ୍ତ କରୁଛି ତା' ନିଜର ସମସ୍ୟାକୁ ନେଇ । କଳନା କରି ହୁଏ ନାହିଁ ତା' କାଣ୍ଡ କାରଖାନା କଥା । ଆମ୍ଭାକୁ ଜୋର୍ ବାଧୁଛି ବୋଧେ ।

ପିଲାଟିବେଳୁ ମୁଁ ତାକୁ ସାନଭାଇ ଭାବି ଆସିଛି । ସେତେବେଳେ ସେ ମୋତେ ଡ଼ାକୁଥିଲା , 'ଇଡେ' ( ବଡଭଉଣୀ ) । କେତେବେଳେ ଯେ ଏ' ଡ଼ାକ ଅପାରୁ ଭଉଜ ହୋଇଗଲା ଜାଣି ହୁଏନାହିଁ । ମନେ-ପଡୁନାହିଁ ଏ ଜୀବନର କେଉଁ ଅଧ୍ୟାୟରେ ସେ ଆସିଥିଲା । ସେ ସବୁତ ଇତିହାସ । ଆଜି କିନ୍ତୁ ସେ ମୋ' ଆଗରେ , ପୁଣିଥରେ , ବି ଯେମିତି ବାକିଆ ପାଉଣା ଆଦାୟ କରିନେବ ।

ମୁଁ ଆସିଲି ତା'ପାଖକୁ । ମୁଣ୍ଡବାଳ ଅଳୁଗ ବାଳୁଗ ହୋଇ ପଡ଼ି-ଥାଏ । ଆଖି ଦୁ'ଟା ଲାଲ ଦେଖାଯାଉଥାଏ । ସେ କ'ଣ କାନ୍ଦୁଛି ନା ଅନେକ ଦିନ ହେଲା ଶୋଇନାହିଁ ? ଝପ୍‌କରି ମୋ' ହାତକୁ ଧରି-ପକାଇ କହିଲା ,—"ଭଉଜ ମୋ' ଝିଅ ଦେହ ଖୁବ୍ . ଖରାପ । ମୁଁ ଜାଣିଛି ତମ ସ୍ୱାମୀ ଜଣେ ଡ଼ାକ୍ତର । ତାଙ୍କୁ ଟିକେ ଯିବାପାଇଁ କହିପାରିବ ? ଏତିକି ଦୟାକର ।"

ଅନେକ ଦିନର ପରିଚିତ , ଅନେକ ଘନିଷ୍ଠତା । ତଥାପି ଏ' ହୃଦୟ-ବିଦାରକ ଶବ୍ଦ ଯେ ସେଠୁ ଆସିପାରେ କାହିଁକି ବିଶ୍ୱାସ ହେଲା ନାହିଁ । କି ଯେ ଜୀବନ— ମରୁଭୂମିରେ ଯୁଇଁ ଫୁଲ !!

" ସେ ତ ନିଶ୍ଚିତ ଘରରେ ଯିବେ । ଟିକେ ଅପେକ୍ଷାକର । କିନ୍ତୁ ତୋ'ର ଯେ ଗୋଟେ ଝିଅ ଅଛି ଆମେ ତ କେହି ଜାଣିନୁ ।" — ମୁଁ କହିଲି ।

ସେ ସାମାନ୍ୟ ଅମିଯାଇ କହିଲା , " ସେ କଥା ପରେ , ଭଉଜ । ଏବେ ଡାକ୍ତରଙ୍କ ଯିବାର ବ୍ୟବସ୍ଥା କର ।"

ମୁଁ କହିଲି, "ଭୂତ ଜାଣିଛୁ, ଏ' ସମୟରେ ସେ କେବେ ଘରେ ନଥାନ୍ତି, ଆସିଯାନ୍ତୁ, ଆସିଲା ମାତ୍ରେ ହିଁ ଯିବେ ।"

ଏ କଥା ପଦକରେ ହିଁ ସେ ମୁଣ୍ଡକୁ ଟପିଧରି କହିଉଠିଲି, "ହେ ଭଗବାନ୍ ! ସେ କେତେବେଳେ ଆସିବେ ?" ଭୂତ ସେତକ ଅପୃଥାଏ ଦୟା ବ ସେତକ ହେଉଥାଏ । ମୁଁ ଜବାବ୍ ଦେଲି, "ଘଣ୍ଟାଏ କ ଦ' ଘଣ୍ଟା ଭିତରେ ଆସିଯିବେ । ଟିକେ ଛୁଡ଼ିକରି ଆସ । ସେ ଆସିଲେ ମୁଁ ତାଙ୍କୁ ବୁଝାଇ ଦେବ ।"

"ତା' ହେଲେ ମୁଁ ଆସୁଛୁ" କହି ସେ ଲମ୍ବା ଲମ୍ବା ପାଦ ପକାଇ ଚ୍ଛଲିଗଲା । ଗଲାବେଳେ ଭୂଲକରି ଅନାଇଲା ନାହିଁ ମଧ୍ୟ ।

ମୋ' ସ୍ୱାମୀ ଯେତେବେଳେ ଘରକୁ ଆସିଲେ ମୁଁ ତାଙ୍କୁ ସବୁକଥା କହିଲି । ସେ ତ ଏକ୍‌ବାର୍ ଜାବା ହୋଇଗଲେ । "କାହାକଥା କହୁଛ ? ସେ ଲୋକର ସ୍ତ୍ରୀ ଅଛି ?" ମୁଁ ଉତ୍ତର ଦେଲି, "ମୁଁ ବ ଜାଣିନ, ପାଗଲଙ୍କ ଭଳି କେତେବେଳେ କ'ଣ ସେ କହୁଛୁ କଏ ଜାଣିବ ?" ଆମେ ଖାଇବା ପିଇବା ସାରି ବସିଚୁ କ ନାହିଁ ଆସି ପହଞ୍ଚିଗଲା । ସିଧା ଆମ ଶୋଇଲା ଘର ଭିତରକୁ ପଶିଆସି କହିଲା, 'ଡାକ୍ତର୍‌ବାବୁ, ( ବଡ଼ଲୋକ ), ଚ୍ଛଲିଯିବା ।" ମୋ' ସ୍ୱାମୀ କହିଲେ, —"ଟିକେ ରୁହ । ମୁଁ ଆଗ ତମ ଠୁଁ ସବୁକଥା ବୁଝିନିଏ । ପିଲାଟିର କେତେଦିନ ହେଲା ଦେହ ଖରାପ ହୋଇଛି, କ'ଣ ହୋଇଛି ତାଙ୍କୁ ? ତମେ ଆସି କହିବ ଚ୍ଛଲ ଯିବା, ଆଉ ମୁଁ ଚ୍ଛଲିଯିବ ?"

ମୁଁ ଲକ୍ଷ୍ୟ କଲି ତା'ର ବ୍ୟଗ୍ରତା ଟିକେ କମିଯାଇଛି । ନରମ ଗଳାରେ ଜବାବ୍ ଦେଲା—"ଡାକ୍ତର୍‌ବାବୁ, ମୁଁ ବ ପରିଷ୍କାର ଜାଣିନ । ଜଣେ ମତେ ଖବର ଦେଲା,— ନଅ, ଦଶଦିନ ଧରି ତା'ର ଦେହ ଖରାପ । ମରିବ କ ବଂଚିବ । ତା' ମା' ପାଙ୍ଗରେ ସେବ୍‌ମାଇରେ ରହୁଛି ।"

"ତା ହେଲେ ତ ସେ ଭଲ ହୋଇଯିବଣି ।" — "ନାଁ, ନାଁ, ଡାକ୍ତର୍‌ବାବୁ, ତା ଦେହ ଖୁବ୍ ସାଂଘାତିକ ।"

ମୋ' ସ୍ୱାମୀ ମୋ' ଆଡ଼କୁ ଅନାଇ କହିଲେ, "କେମିତିକା କୌତୁକଥା କଥା କହୁଛି ଦେଖୁଛ । ସିଏ ପାଖରେ ନାହିଁ ଅଥଚ ଯେମିତି ରୋଗ ବର୍ଣ୍ଣନା କରୁଛି ଜଣା ପଡ଼ୁଛି ନିଜ ଆଖିରେ ଦେଖିଛି । ଠିକଅଛି, ଅଧଘଣ୍ଟାଏ ଭିତରେ ବାହାରି ଯିବା ।"

"ଠିକ୍ ଅଛୁ ତଇବୁଂଗୋ" — ସେ କହିଲା ଓ ଦୀର୍ଘଶ୍ୱାସ ମାରି ବସି ପଡ଼ିଲା । ମୋ ଲାଗି ପଡ଼ିଥାଏ, ଅନ୍ତତଃ ତାକୁ ଦେଖିଲେ ହିଁ ଜଣା ପଡୁଥାଏ । କ'ଣ ଭାବି ଖୁବ୍ ଶୀଘ୍ର ଉଠିପଡ଼ିଲା : ମୁଁ ଠିକେ ଅାସୁଛି କହି, ସାଇକେଲ୍ ମାରି ଚାଲିଗଲା ।

ମୁଁ ମୋ ସ୍ୱାମୀଙ୍କୁ ପଚାରିଲି : ସେ କ'ଣ କିଛି ଭାବିଲା କି ?' ଅତି ମନ୍ଦ ମନ୍ଦ ମୋ' ସ୍ୱାମୀ କହିଲେ, "କାହିଁକି ଭାବିବ ? ପୁଣି ଚିନ୍ତା କରି କହିଲେ, ସତକୁ ମତ ତା'କୁ କ'ଣ ବାଧୁଛି ? ଆଚ୍ଛା, ଅସ୍ତୁ, ଠିକ୍ ଅଛି । ମୋ' କନିଷ୍ଠପଣ କାର ଭିତରେ ରଖି ଦିଅ ତ । ଆରେ ହଁ ସେତ ଅମର ସାଙ୍ଗରେ ଯିବ ।"

ଆମେ ତା'କୁ ହିଁ ଅପେକ୍ଷା କଲୁ । ବିଚଳିତ ହୋଇଯାଇଥିଲୁ ଆମେ ଦୁହେଁ । ଯେମିତି ରାଜ୍ୟର ରାଜାଙ୍କୁ ଅପମାନିତ କରିଛୁ । ତା'ର କ୍ରୋଧର ଶୀକାର ହୋଇଛୁ । ଅପେକ୍ଷାର ପ୍ରତିଟି ମୁହୂର୍ତ୍ତ ଥାଏ ଦୀର୍ଘ-ସ୍ଥାୟୀ । ଆଶା, ନିରାଶା ଭିତରେ ପଡ଼ିଥାଏ । ଦୂରରୁ ଦେଖିଲୁ ସେ ଆସୁଛି । ପହଂଚିଲା ମାତ୍ରେ ବିନା ସଂକୋଚରେ, ମୁଁ କହି ପକାଇଲି — "ଆମେତ ଭାବିଲୁ ତମେ ଆମକୁ ଖରାପ ଭାବିଛ । ସେଥିପାଇଁ ଚାଲିଗଲ କି ?"
"ନାଁ ନାଁ, ଭାଉଜ" - ସେ କହିଲା ।

ହାତରେ ଧରିଥାଏ ଝୁଲାଟିଏ । କମଳା ଦିଓଟି ବାହାର କରି ମୋତେ ଦେଲା, "ସ୍ୱାଙ୍କୁ ଦିଅନ୍ତୁ ।"

ସେ କ' ଣ ଘରୁ ବାହାରିଛନ୍ତି କି ନାହିଁ, ମୋ' ଆଡ଼କୁ ଅନାଇ କହିଲା, "ଭାଉଜ, ତମେ ଦୟାକରି ଚାଲ ନାଁ," । ମୁଁ ଯେମିତି ଆକାଶରୁ ଖସିପଡ଼ିଲି । କାହିଁକି ? କେଉଁଥିପାଇଁ ? ତା' ଆଖିରେ ସେତେବେଳେ ମାଗିବାର ସଙ୍କେତ । "ମୁଁ ଜାଣିଛି ଏଇଟା ଠିକ୍ ବେଳ ନୁହେଁ । ମୋତେ ତୁମର ସାନଭାଇ ବୋଲି ଭାବ । ମୁଁ କହୁଛି ଯିବାପାଇଁ, ଦୟାକରି ଚାଲ ।"
ମୁଁ ଦ୍ୱିଧାରେ ପଡ଼ିଗଲି । "ମୁଁ ତ କାହାକୁ ଜାଣିନାହିଁ ସେଠି ।" ଠିକେ ପଛକୁ ଚାଲି ଆସିଲା ସେ । "ମୋତେ ତ ତମେ ଜାଣିଛ । ତମର ଦୟା, କରୁଣା କ'ଣ ମୁଁ ଜୀବନରେ ଭୁଲି ପାରିବି ?" ତା' କଣ୍ଠରୁଦ୍ଧ ହୋଇ ଯାଉଥାଏ ଏତିକି କହିଲା ବେଳକୁ । — "ତେବେ ତମେ ଯାହା ଭାବୁଛ ।" — ମୁଁ ଆଉ କ'ଣ ଚିନ୍ତା କରିଥାନ୍ତି କି ନାହିଁ ମୋ' ସ୍ୱାମୀ କହି ଉଠିଲେ, "ଆରେ ଚାଲନା, ସୁନ୍ଦର ଗୋଟେ ବୁଲା ହୋଇଯିବ ।"

ବାଟସାରା ପଦେବି କଥାବାର୍ତ୍ତା ନାହିଁ । ସେମାନେ କ'ଣ ଭାବୁଥାନ୍ତି କେଜାଣି । ମୁଁ କେଉଁ କଥା ଭାବୁଥିଲି ? କହିହୁଏ ନାହିଁ ସବୁକଥା । ହଁ, ସବୁଯାକ କଥା ହିଁ ତା'ର ବିଷୟରେ । ଉଠାପଡ଼ା ରାସ୍ତାରେ ଗାଡ଼ିରେ ଚଳ-

ବେଳେ ଭଲ ଲାଗେ । ଗାଡ଼ିର ଗତି ସହିତ ତମର ଭାବନା ମଧ୍ୟ ଗଡ଼ି ଚାଲି-ଥିବ । ମଜା ଲାଗୁଥାଏ ଭାବିବାକୁ । ଆଜି ପର୍ଯ୍ୟନ୍ତ ତା'ର ଝିଅ କଥା ମୋତେ କହିନି । ବୃଦ୍ଧିଆଣୀ ଜାଲପରି ଛନ୍ଦା ଛନ୍ଦି ତା' ଜୀବନରେ କେତେ ଘଟଣା ଆସିଛି, ଯାଇଛି, ମୁଁ ବା କେମିତି ଜାଣିବି ?

ନିର୍ଦ୍ଦିଷ୍ଟ ଜାଗାରେ ପହଞ୍ଚିଲାପରେ ମୁଁ କହିଲି — "ତମେ ସବୁ ଯାଅ ମୁଁ ଗାଡ଼ି ଭିତରେ ଅପେକ୍ଷା କରୁଛି ।" କିନ୍ତୁ ସେ ସାଙ୍ଗେ ସାଙ୍ଗେ କହିଲା, "ନାଁ, ନାଁ, ତମେ ଯଦି ସେମିତି ଭାବୁଥିଲ ଆସୁଥିଲ କାହିଁକି ?" ତା' ପ୍ରତିବାଦର ସ୍ୱର ଏତେ ତୀବ୍ର ଥିଲା ଯେ ସେମାନଙ୍କୁ ଅନୁସରଣ କରିବାଛଡ଼ା ଅନ୍ୟ କୌଣସି ଉପାୟ ନଥିଲା । ଘଞ୍ଚ ବୁଦା ଭିତରେ ଅଙ୍କାବଙ୍କା ଚାଲିଗଲା ପାରିହୋଇ ଯେଉଁ ଜାଗାରେ ଆମେ ପହଞ୍ଚିଲୁ ସେଠିଥିଲା ଛୋଟ ମାଟି ଖଣ୍ଡେ ଚାଳଘର । ଆଖ ପାଖରେ ଅନ୍ୟ କୌଣସି ଘରନଥିଲା । ଘର ବୋଇଲେ ବଖରାଏ । ଗୁହାଳଟିଏ ବି ନାହିଁ । ବାହାରୁ ସ୍ପଷ୍ଟ ଜାଣି ହେଉଥାଏ : ଭିତରେ ଯେଉଁମାନେ ଅଛନ୍ତି ସେମାନଙ୍କର ଆର୍ଥିକ ସ୍ଥିତି ଦୁର୍ବଳ ।

ବୟସ୍କ ଲୋକ ଜଣେ ଘରଭିତରୁ ବାହାରି ଆସିଲେ । ଆମ ପାଟି ବୋଧେ ସେ ଶୁଣିପାରିଥିଲେ । ତାଙ୍କ ଖୁଦେଇ ( ହାତବୁଣା ଆଣ୍ଠୁ ନ ଲୁଚୁଥିବା ଲୁଗା ) କୁ ଧରି ପଛେ ପଛେ ଝିଅ ଆସିଲା, ସେ ଥିଲା ଛଅ, ସାତବର୍ଷର ପତଳା ଝିଅଟିଏ । ଓସାରିଆ ଆଖିଦି'ଟାରେ ତା'ର ମେଞ୍ଚା ମେଞ୍ଚା ଆଶ୍ଚର୍ଯ୍ୟ । ଆମକୁ ଦେଖି ସମ୍ଭାଷଣ କରିବା ପରିବର୍ତ୍ତେ ବୟସ୍କ ବ୍ୟକ୍ତି ଜଣକ ମୁହଁ ବୁଲେଇ ଭିତରକୁ ଚାଲିଗଲେ । ଖାଲି ଯାହା ଆମକୁ ଅନାଇ ଛିଡ଼ାହୋଇଥାଏ ଛୋଟ ଝିଅଟି ।

ମିନିଟିଏ ହେବ ବାପ ଝିଅ ପରସ୍ପରକୁ ଅନାଇଛନ୍ତି କି ନାହିଁ ଲୋକଟି ଝେ' କନା କାଢ଼ି ପକେଇ ଝିଅଟିକୁ ହାତରେ ଉଠେଇ ନେଲା, ଓ ସକ୍ ସକ୍ ହୋଇ "ମା 'ରେ, ମା ' ମୋର " କହୁଥାଏ ଓ ଚୁମା ଦେଉଥାଏ । ଝିଅଟା ବି ବାପ ଛାତିରେ ମୁହଁ ଗୁଂଜୁଥାଏ ଯେମିତି ଅନେକ ଦିନ ହେଲା — ଦେଖିନି । ଲୋକଟା ହଠାତ୍ ଅପ୍ରତିଭ ହେଲାଭଳି ମୋ' ଆଡ଼େ ବୁଲି ପଡ଼ିଲା । "ମୋତେ ଭୁଲ୍ ବୁଝନାହିଁ, ବାବୁ । ତା' ଦେହ ଭଲଅଛି ।"

— "ମୁଁ କହୁଥିଲି ନାଁ ତା' ଦେହ ଭଲଥିବ ବୋଲି । ଖରାପ ଥିଲେ ତମକୁ ସାଙ୍ଗେ ସାଙ୍ଗେ ଖବର ଦିଆ ଯାଇଥାଆନ୍ତା ।" — 'ମୋ ସ୍ୱାମୀ କହୁଥାନ୍ତି ଆଉ ମୁଁ ଲୁହ ରୋକିବାକୁ ଚେଷ୍ଟା କରୁଥାଏ । କଷ୍ଟ ହେଉଥାଏ ମୋତେ ।

ଛୁଣ୍ଡା ସପ ଉପରେ ବସିପଡ଼ିଲୁ ଆମେ । ସେ ବନ୍ଧୁଆମ ଉପସ୍ଥିତି ସଂପୂର୍ଣ୍ଣ ଭୁଲିଯାଇଥାଏ । ଆଣିଥିବା ଝୁଲାରୁ ହଳେ ରବର ଜୋତା ବାହାର କରି ଝିଅର କୁନି କୁନି ପାଦରେ ପିନ୍ଧେଇ ଦେଉଥାଏ । ମୁଁ ବସିଥାଏ ପଥର ମୂର୍ତ୍ତିଭଳି । ନାଲି ଶାଲଟିଏ ଘୋଡ଼େଇ ଦେଉଥାଏ ତା'କୁ । ତା' କଥାସବୁ ଗିଁ ଗିଁ ଶୁଭୁଥାଏ । ଶହେବର୍ଷ ମୋ' ମା'କୁ ନ ଦେଖିଲେ, କ'ଣ ତା'ର ପାଦମାପ ଜାଣିପାରିବ ନାହିଁ ? ଉଠୁଥାଏ ଓ ତା'କୁ କାଖେଇ ନେଉଥାଏ । ବିସ୍କୁଟ୍ ପ୍ୟାକେଟ୍‌ଟାକୁ ବାହାର କରି ଝିଅକୁ ଖୁଆଇବା ଆରମ୍ଭକଲା । କେତେ ଚମତ୍କାର ଲାଗୁଥାଏ ଏ ଦୃଶ୍ୟ । ଦୁଃଖରେ, ସୁଖରେ, ଲୁହରେ ତା' ସହିତ ବିଚଳିତ ହୋଇ ଯାଉଥାଉ ଆମେ ଦୁହେଁ । ଆନନ୍ଦର ଆତିଶଯ୍ୟରେ ଆମର ମନ ଉଡ଼ିବୁଲୁଥାଏ ।

କେତେ ସମୟ ଏମିତି ରହିଗଲା ମୁଁ କହିପାରିବି ନାହିଁ । ହଁ ଗୋଟିଏ କଥା ଜାଣିଛୁ, ଅନୁଭବ ବି କରିଛୁ । ମାତୃ-ସ୍ନେହର ପ୍ରଥମ ଶୀତ୍କାରରେ ଉଲ୍ଲସିତ ହୋଇଗଲା ମୋ'ର ଶରୀର, ଅନ୍ତଃସ୍ଥଳ । ମୁଁ କ'ଣ ଏମିତି ଏକ ଅନୁଭୂତି ପାଇଁଥିଲି ? ସେତେବେଳେ ଜାଣିପାରିନଥିଲି । ଆଜି ବି ଜାଣି ହେଉନାହିଁ ।

ବାପ, ଝିଅ ହସୁଥାନ୍ତି । ଲୋକଟା ଗୁନି ଗୁନି କଣ କହୁଥାଏ କେଜାଣି ଝିଅଟା ହସରେ ଫାଟି ପଡ଼ୁଥାଏ । ତା'ହସରେ ଗ୍ରେଟ ବାରଣ୍ଡାଟା ପ୍ରତିଧ୍ୱନିତ ହୋଇ ଉଠୁଥାଏ । ଠିକ୍ ସେତିକବେଳକୁ ଚାଳିଶ, ପଚାଶ ବର୍ଷର ସ୍ତ୍ରୀ ଲୋକଟିଏ ଘରୁ ବାହାରି ଆସି ଝିଅଟିର ଫ୍ରକ୍ ଧରି ଘର ଭିତରକୁ ଭିଡ଼ିନେବାକୁ ଚେଷ୍ଟା କଲା । ଅବାକ୍ ହୋଇଗଲା ଲୋକଟା । "ଆରେ, ଆରେ, ଏଇଟା ପାଗଳ ହୋଇଗଲା ନାଁ କ'ଣ । ଡ଼ାକ୍ତରବାବୁ ଆସିଛନ୍ତି ତାକୁ ଦେଖିବାପାଇଁ ।" କହିଲା ଓ ଉଠିଚାଲି ଝିଅଟିକୁ ପାଖକୁ ଆଣିବାକୁ । ପ୍ଲାଷ୍ଟିକ୍ କଣେଇ ଭଳି ହଲୁଥାଏ ଗ୍ରେଟ ଝିଅଟି ଏ' ଭିଡ଼ା ଓଟରାରେ । କିନ୍ତୁ ସମସ୍ତ ପୂର୍ବର ହସ ତାର ମରି-ଯାଇଥାଏ ।

ସ୍ତ୍ରୀଲୋକଟି ଚଲେଇ ଉଠିଲା : "କିଏ ତୁମକୁ କହିଲା ଏଠିକୁ ଆସିବାକୁ ? ଆଉ ପାଟି ବନ୍ଦ କରୁଛୁ, ନହେଲେ ସମସ୍ତଙ୍କ ସାମ୍ନାରେ ବେଇଜ୍ଜତ କରିଦେବି ।" ଝିଅଟାକୁ ଭିଡ଼ିନେଲାବେଳେ ତା' ଅଣ୍ଟିରେ ଥିଅ

ବିସ୍କୁଟ ଘରସାରା ବିଛୁଡ଼ି ହୋଇ ପଡ଼ିଚି । ଲୋକଟାର ମୁହଁ ଶୁଖିଯାଇ-ଥାଏ । ଖିଲ ମାରିଯାଇଥାଏ ପାଟି ।"ଦେଖିଲ ସାହେବ, ତମେ ନଥିଲେ, ମୁଁ — ମୁଁ ତାକୁ ହାଣି ଦେଇଥାନ୍ତି" । —ସେ ଆଉ କ'ଣ କହିବାକୁ ଚାହୁଁଥିଲା । କହିପାରିଲା ନାହିଁ, କାନ୍ଦି ଉଠିଲା ।

ସେ ଖଣ୍ଡ ଖଣ୍ଡ ବିସ୍କୁଟ୍ ଗୋଟି ଗୋଟି କରି ଗୋଟାଇ କାଠବେଞ୍ଚ ଉପରେ ରଖିଲା । କାହାକୁ କିଛି କହିଲା ନାହିଁ ଚାଲିଗଲା । ଆମେ ବି ତା' ପରେ ଚାଲି ଆସିଲୁ । ଏ ଘଟଣାପରେ ଆଉ କାହାର କିଛି କହିବାର ଥିଲା କି ? କିନ୍ତୁ ଯାହାକୁ ମୁଁ ଜାଣିବାକୁ ଚାହୁଁଥିଲି ଆଜି ପର୍ଯ୍ୟନ୍ତ ଦିବାଲୋକପରି ପରିଷ୍କାର ହୋଇଗଲା । ଜୀବନର ଓ୍ୱାଟରଲୁରୁ ବିଜୟ-ପତାକା ଧରି ଫେରି ଆସୁଛି ସେ । ସେଇ ଦୃପ୍ତ ଚାଲି । କେଡେ ସତେଜ, କେଡେ ମନୋହର ଏ ଦୃଶ୍ୟ !

---

● ପୃଥିବୀର ସମସ୍ତ ଲେଖକଙ୍କର ଏକ ବିଶେଷ ଦୃଷ୍ଟିଭଂଗୀ ଅଛି । ଦୃଷ୍ଟିର ଗଭୀରତା ଦେଇ ସାହିତ୍ୟର ଗଭୀରତା ବିଚାର କରାଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଅଭିଜ୍ଞତା ବଳରେ ଜୀବନର ଏକ ସଠିକ ଚେହେରା ଲେଖକ ଚକ୍ଷୁରେ ଧରାପଡ଼େ । ସେତେବେଳେ ସେଇ ଆଖିରେ ସେ ଜୀବନକୁ ଖୋଜେ । ନ ଖୋଜିବା ଅବସ୍ଥାରେ ବେଳେ ବେଳେ ଖୋଜି ଖୋଜି ହଇରାଣ ହୋଇ ଗଲେ ବି ଏହା ଧରା ପଡ଼େନା । ହୁଏତ ବହୁବାର ବହୁ ବର୍ଷ ଧରି ଦେଖିଥିବା ନିଜ ଘର ସାମନାର ଲାଂପ ପୋଷ୍ଟ ହଠାତ୍ ଏକ ନୂତନ ରୂପରେ ଗଳ୍ପ ହୋଇ ଆଖି ଆଗରେ ଠିଆ ହୋଇ ଗଲା । କାସ୍ପିୟାନ ସାଗର ମୁଁ କେବେ ଦେଖି ନାହିଁ, କିନ୍ତୁ ଏହା ବି ହୋଇପାରେ ଯେ ଆମ ଘର ପଛ ଘଟ କ୍ଷୁଦ୍ର ପୋଖରୀଟି ହୁଏତ ପ୍ରଶାନ୍ତ ମହାସାଗର ଠାରୁ ଆହୁରି ରହସ୍ୟମୟ ହୋଇ ଆଖି ଆଗରେ ଭାସିଗଲା ।

ସାରା ଜୀବନ ଧରି ଏପରି ଅନେକ ଘଟଣା ଆଖି ଆଗରେ ପଡ଼ିଛି, ସେଥିରୁ କିଛି ଲେଖିଛି, ପୁଣି କିଛି ଲେଖି ନାହିଁ । କିଛିଟା ସମୟର ଅଭାବରୁ ଲେଖିନାହିଁ । କିଛିଟା ଲେଖିବା ପରି ନୁହେଁ ବୋଲି ଲେଖିନାହିଁ । କେଉଁଟା ଲେଖିବା ପରି ଏବଂ କେଉଁଟା ଲେଖିବା ପରି ନୁହେଁ, ତା'ର ବିଚାର କରିବ ଲେଖକ । ସେଇ ବିଚାର ବେଳବେଳେ ସମୟ ସାପେକ୍ଷ । ବେଳେବେଳେ ତାହାକୁ ମନ ଭିତରେ ପୋଷି ପାଳି ପରିବେଷଣ କରେ । ବେଳେବେଳେ ତାହା ଭୁଲି ବି ଯାଏ । ତା'ପରେ ହଠାତ୍ ଦିନେ ସ୍ମୃତିର ସିଂଦୁକ ଖୋଲି ତାକୁ ଖେଳାଉ ଖେଳାଉ ସେମାନେ ଜୀବନ୍ତ ହୋଇ ଉଠନ୍ତି, ଆଖିପତା ଖୋଲନ୍ତି ଏବଂ କହନ୍ତି । ତା'ପରେ ସେମାନେ ଖାତା ପୃଷ୍ଠାରେ ବିରାଜମାନ କରି ଲୋକଚକ୍ଷୁ ସାମନାରେ ବିଚରଣ କରନ୍ତି, ଛାପା ଅକ୍ଷରରେ ବନ୍ଦ ହୋଇ ବାହାରି ପଡ଼ନ୍ତି । ● ( ଔପନ୍ୟାସିକ ବିମଳ ମିତ୍ର )